ତରୁଣ ଭାରତୀ

# ଆମ ପରିବେଶ

ଲଇକ୍ ଫତେହଲୀ

ଅନୁବାଦ

ପ୍ରମୋଦ କୁମାର ମହାପାତ୍ର



ନ୍ୟାସନାଲ୍ ବୁକ୍ ଟ୍ରଷ୍ଟ, ଇଣ୍ଡିଆ

ପ୍ରଚ୍ଛଦ : ରୋମୁଲସ୍ ହ୍ୱିଟେକରଙ୍କ ସାଇଲେଣ୍ଟ ଭ୍ୟାଲିର ଟ୍ରାନ୍ସପାରେନ୍ସି

ISBN-81-237-1005-4

1994 (ଶକାବ୍ଦ 1916)

Our Environment *(Oriya)*
**ଟ 34.00**
ନିର୍ଦ୍ଦେଶକ, ନ୍ୟାସନାଲ୍ ବୁକ୍ ଟ୍ରଷ୍ଟ, ଇଣ୍ଡିଆ, ଏ-5, ଗ୍ରୀନ୍ ପାର୍କ, ନୂଆଦିଲ୍ଲୀ-110 116 କର୍ତ୍ତୃକ ପ୍ରକାଶିତ ।

# ସୂଚୀପତ୍ର

# କୃତଜ୍ଞତା

ମୁଁ ଡ: ମାଧବ ଗାଡଗିଲ୍‌ଙ୍କ ନିକଟରେ ମୋର ଏହି ପୁସ୍ତକର ପାଣ୍ଡୁଲିପି ପଢ଼ି ଉଚିତ ମତାମତ ଦେଇଥିବାରୁ କୃତଜ୍ଞ। ଗ୍ରାମାଞ୍ଚଳ ଓ ସାଗର ବିଷୟ ଉପରେ ସମାଲୋଚକୀୟ ଉପଦେଶ ଦେଇଥିବାରୁ ମୁଁ ଯଥାକ୍ରମେ ଶ୍ରୀ ବଙ୍କର ରାୟ ଓ ଶ୍ରୀ ସତୀଶ ଭାସ୍କରଙ୍କ ନିକଟରେ କୃତଜ୍ଞତା ପ୍ରକାଶ କରୁଛି। ଶ୍ରୀ ରୋମୁଲସ ହ୍ୱିଟେକର ଏବଂ ମୋର ସ୍ୱାମୀ ଶ୍ରୀ ଜାଫର ଫତେହଲୀଙ୍କ ସହଯୋଗ ଓ ପରାମର୍ଶ ତଥା ଶ୍ରୀ ରୋମୁଲସ୍ ହ୍ୱିଟେକରଙ୍କ ପ୍ରଦତ୍ତ ନୂତନ ଫଟୋଚିତ୍ର ଓ ପ୍ରଚ୍ଛଦ ଗ୍ରାଫିକ୍ସପାଇଁ ନିମନ୍ତେ ମୁଁ ସେମାନଙ୍କ ନିକଟରେ ମଧ୍ୟ କୃତଜ୍ଞ।

# ପର୍ବତ ମାଳା

## I

### ସବୁଜ ପାହାଡ଼

ଭାରତର ପ୍ରାକୃତିକ ମାନଚିତ୍ରରେ ପର୍ବତମାଳାର ଅବସ୍ଥିତି ଏପରି ସ୍ୱତନ୍ତ୍ର ଢଙ୍ଗରେ ରହିଛି, ସତେ ଯେପରି ପରସ୍ପର ମଧ୍ୟରେ ଭାରସାମ୍ୟ ରକ୍ଷାକରି କେହି ଜଣେ ସେମାନଙ୍କୁ ସ୍ୱେଚ୍ଛାକୃତ ଭାବେ ସୁସଜ୍ଜିତ କରି ଅବସ୍ଥାପିତ କରିଛି। ତମ୍ବୁ ପରି ସୁଦୃଶ୍ୟମାନ ହିମାଳୟ ପର୍ବତମାଳା ଶ୍ରେଣୀବଦ୍ଧ ଭାବେ ରହି ଦେଶ ପାଇଁ ପ୍ରାଚୀର ସୃଷ୍ଟି କରିଛି। ଏହାର ଉଚ୍ଚତମ ଅଞ୍ଚଳ ପ୍ରାୟ ମଧ୍ୟବର୍ତ୍ତୀ ସ୍ଥାନରେ ରହିଛି। ପର୍ବତମାଳାର ପଶ୍ଚିମାଞ୍ଚଳ ଛୋଟ ଏବଂ ଏହା ପାକିସ୍ଥାନ ଯାଏଁ ବ୍ୟାପି ରହିଥିବା ବେଳେ ଏହାର ଡ଼ାହାଣ ପଟରେ ବିସ୍ତୃତ ପୂର୍ବାଞ୍ଚଳ ବକ୍ରାକାରରେ ବଙ୍ଗୋପସାଗରର ଖୁବ୍ ନିକଟ ଯାଏଁ ଲମ୍ବି ରହିଛି।

ଏହି ପର୍ବତମାଳାର କେନ୍ଦ୍ରାଞ୍ଚଳ ପୃଥିବୀର ସର୍ବୋଚ୍ଚ ପର୍ବତାଞ୍ଚଳ ରୂପେ ପରିଗଣିତ ହୋଇଥାଏ। ଏହାର ଉଚ୍ଚତା ପ୍ରାୟ କୋଡ଼ିଏ ହଜାର ଫୁଟରୁ ଅଧିକ ଓ ଏଥିରେ ବହୁ ଉଚ୍ଚ ଶୃଙ୍ଗ ରହିଛି। ଏହାର ନିମ୍ନ ଭାଗରେ ସମଗ୍ର ହିମାଳୟ ପର୍ବତମାଳାକୁ ବ୍ୟାପି ରହିଥିବା ସମତଳ ଅଞ୍ଚଳ ରହିଛି ଯାହାର ନାମ ଗାଙ୍ଗେୟ ସମତଳ ଭୂମି। ଏହା ଏପରି ସୁନିୟନ୍ତ୍ରିତ ଭାବେ ରହିଛି, ମନେ ହୁଏ ସତେ ଯେପରି କୌଣସି ବଳିଷ୍ଠ ହାତ ଏହାକୁ ସଜାଇ ରଖିଛି। ପର୍ବତରୁ ତରଳି ବହି ଆସୁଥିବା ବରଫ ସମତଳ ଅଞ୍ଚଳକୁ ଧୀରେ ଧୀରେ ପ୍ଳାବିତ କରି ଏହାକୁ ଶସ୍ୟ ଶ୍ୟାମଳା କରି ଆମ ଦେଶକୁ ଏକ ଉନ୍ନତ କୃଷିପ୍ରଧାନ ଦେଶ ରୂପେ ପରିଗଣିତ କରିଅଛି।

ଦାକ୍ଷିଣାତ୍ୟର ନୀଳଗିରି ଓ ଆନ୍ନାମଲାଇ ପର୍ବତ ଶ୍ରେଣୀରେ ଦେଶର ଦ୍ୱିତୀୟ ଉଚ୍ଚତମ ଅଞ୍ଚଳ ରହିଛି। ଭାରତର ହୃତପିଣ୍ଡ ଓ ପାକସ୍ଥଳୀ ସଦୃଶ ଅଂଶର ମଧ୍ୟବର୍ତ୍ତୀ ଅଧିକାଂଶ ଅଞ୍ଚଳର ଉଚ୍ଚତା ପ୍ରାୟ ଦୁଇ ହଜାର ଫୁଟ। ଏହି ଅଞ୍ଚଳରେ ଉଚ୍ଚ ପର୍ବତମାଳା ଓ ସମତଳ ଉପତ୍ୟକା କ୍ରମାନ୍ୱୟରେ ରହି ଏକ ସୁନ୍ଦର ମୃତ୍ତିକାଞ୍ଚଳ ସୃଷ୍ଟି କରିଛି। ଏହା ବ୍ୟତୀତ ପଶ୍ଚିମଘାଟ ପର୍ବତମାଳା ନାଟକୀୟ ଭାବେ ସୃଷ୍ଟି ହୋଇ ବମ୍ବେର କିଛି ଦକ୍ଷିଣରୁ ବାହାରି ଲମ୍ବ ଭାବରେ ପଶ୍ଚିମ ଉପକୂଳ ସହ ସମାନ୍ତରାଳ ଭାବେ ଗତି କରି ଦକ୍ଷିଣରେ କନ୍ୟାକୁମାରୀ ଉପକୂଳ ପାଏଁ ଲମ୍ବି ରହିଛି।

ବିଭିନ୍ନ ଶ୍ରେଣୀର ପାହାଡ଼, ପର୍ବତଶ୍ରେଣୀ, ଉଚ୍ଚ ଅଞ୍ଚଳ ପାଇ ଆମେ ଭାଗ୍ୟବାନ। କାରଣ ପାହାଡ଼ ପର୍ବତ କେବଳ ଯେ ସୌନ୍ଦର୍ଯ୍ୟର ଗନ୍ତାଘର ତାହା ନୁହେଁ, ଏହା ଦେଶକୁ ଉର୍ବର ଓ ଶସ୍ୟଶ୍ୟାମଳା କରିବାର ମୁଖ୍ୟ କର୍ଣ୍ଣଧାର। ଯଦି ଆମ ଦେଶରେ କୌଣସି ପାହାଡ଼ ପର୍ବତ ନ ଥାନ୍ତା ବା ଅଳ୍ପ କେତୋଟି ଥାନ୍ତା, ତେବେ ଏହା ସମତଳ ହୋଇଥାନ୍ତା ଓ ହୁଏତ ସାଇବେରିଆ ଅଞ୍ଚଳ ପରି ଏକ ବିରାଟ ମରୁଭୂମିରେ ପରିଣତ ହୋଇଥାଆନ୍ତା। ତେଣୁ ତାଙ୍କୁ କୃତଜ୍ଞତାର ସହ ପର୍ବତମାଳା ନିକଟରେ ଆମେ କିଭଳି ଭାବେ ଋଣୀ ସେ ବିଷୟରେ ବିଶ୍ଳେଷଣ କରିବା।

ଉଦାହରଣ ସ୍ୱରୂପ ବିଚାର କଲେ, ହିମାଳୟ ପର୍ବତମାଳା ଆମ ଦେଶର ଉତ୍ତର ପଟେ ଲମ୍ବି ରହି ସୌନ୍ଦର୍ଯ୍ୟ ବୃଦ୍ଧି କରିବା ସଙ୍ଗେ ସଙ୍ଗେ ପୃଥିବୀର ସର୍ବୋଚ୍ଚ ଶୃଙ୍ଗ ଧାରଣ କରିବାର ମାନ୍ୟତା ଆମକୁ ଦେବା ବ୍ୟତୀତ ଆଉ କଣ ଦେଇଛି? ଅତି ସହଜରେ ଚିନ୍ତା କଲେ ଆମେ ଜାଣିପାରିବା ଯେ ଏହି ପର୍ବତମାଳା ଉତ୍ତର ଦିଗରୁ ଆସୁଥିବା ସାଇବେରିଆର ଥଣ୍ଡା ପବନକୁ ଦେଶ ଭିତରକୁ ଆସିବାକୁ ଦିଏ ନାହିଁ ଓ ଅନ୍ୟ ପକ୍ଷରେ ଗରମ ଜଳକଣାବାହୀ ମୌସୁମୀ ବାୟୁକୁ ଦେଶ ଭିତରେ ଧରି ରଖେ। ଯଦି ଏଠାରେ ଉଚ୍ଚ ପର୍ବତମାଳା ନ ଥାନ୍ତା, ଆମ ଦେଶର ଜଳବାୟୁ ଓ ଉତ୍ପାଦିକା ଶକ୍ତି ହୁଏତ ଭିନ୍ନ ହୋଇଥାନ୍ତା। ହିମାଳୟ ନ ଥିଲେ ଏହାର ଆଖ ପାଖରେ ସାଇବେରିଆରୁ ପ୍ରବାହିତ ହୋଇ ଆସୁଥିବା ଥଣ୍ଡାପବନ ସିଧା ସଳଖ ଭାବରେ ଉତ୍ତର ଭାରତକୁ ଏକ ଶୁଷ୍କ ଓ ଥଣ୍ଡା ଅଞ୍ଚଳରେ ପରିଣତ କରିଥାନ୍ତା। ତେଣୁ ହିମାଳୟ ପର୍ବତମାଳା ବର୍ତ୍ତମାନର ଜଳବାୟୁ ସ୍ଥିତାବସ୍ଥା ରକ୍ଷା କରିବା ପାଇଁ ବହୁ ପରିମାଣରେ ଦାୟୀ।

ଜଳବାୟୁ ନିୟନ୍ତ୍ରଣ ଓ ବର୍ଷା ବ୍ୟତୀତ ଆମେ ହିମାଳୟ ପାଖରେ କିଭଳି ଭାବେ ଋଣୀ ? ହିମାଳୟ ପାଦ ଦେଶର ବିସ୍ତୀର୍ଣ୍ଣ ସମତଳ ଅଞ୍ଚଳରୁ ବାହାରିଥିବା ବହୁ ଚିରସ୍ରୋତା ନଦୀ ପାଇଁ ଆମେ ଏହା ନିକଟରେ କୃତଜ୍ଞ। ଏହା ହିମାଳୟ ପାଦ ଦେଶକୁ ଜୀବନ୍ତ ଓ ଉର୍ବର କରିଥାଏ। ପର୍ବତର ଶିଖର ଅଞ୍ଚଳରେ କ୍ରମାଗତ ତୁଷାର ଓ ବରଫଗଦା ହେଉଥିବା ବେଳେ ଏହାର ପାଦ ଦେଶର ବରଫ ତରଳୁଥାଏ ଏବଂ ତରଳୁଥିବା ଏହି ବରଫ ଏଠାରୁ ବାହାରିଥିବା ଚିରସ୍ରୋତା ନଦୀଗୁଡ଼ିକୁ କ୍ରମାଗତ ଜଳଯୋଗାଇ ଉତ୍ତର ଭାରତର ସମତଳ ଅଞ୍ଚଳକୁ ଜଳପ୍ଲାବିତ କରିଥାଏ। ହିମାଳୟରୁ ବାହାରିଥିବା ନଦୀ ବ୍ୟତୀତ ଅନ୍ୟଗୁଡ଼ିକ ପ୍ରାୟ ଋତୁକାଳୀନ। ବର୍ଷାଜଳ ପ୍ଲାବିତ ଭାରତର ଅଧିକାଂଶ ନଦୀ ମଧ୍ୟରୁ କୃଷ୍ଣା, ଗୋଦାବରୀ ପ୍ରଭୃତି କେତେକକୁ ବାଦ ଦେଲେ ଅନ୍ୟଗୁଡ଼ିକ ବର୍ଷା ଋତୁ ପରେ ଶୁଖି ଯାଆନ୍ତି କିମ୍ବା ଅଳ୍ପକ୍ଷଣ ପାଇଁ ଜଳଧାରଣ କରିଥାନ୍ତି। କିନ୍ତୁ ହିମାଳୟରୁ ବାହାରିଥିବା ଗଙ୍ଗା, ସିନ୍ଧୁ, ବ୍ରହ୍ମପୁତ୍ର ଓ ଏହାର ଅନେକ ଶାଖା ନଦୀ ବର୍ଷ ସାରା ଚିରସ୍ରୋତା ରହିଥାନ୍ତି। ବର୍ଷ ସାରା ଆମକୁ ଜଳ ଯୋଗାଉଥିବାରୁ ଆମେ ହିମାଳୟ ପର୍ବତମାଳା ନିକଟରେ ଋଣୀ। ଏହା ବ୍ୟତୀତ ହୁଏତ ଉତ୍ତର ଭାରତ ଏକ ମରୁଭୂମିରେ ପରିଣତ ହୋଇଥାନ୍ତା।

ଉତ୍ତର ଭୂଖଣ୍ଡରେ ଦେଖାଯାଉଥିବା ଉଦ୍ଭିଦରାଜି ହିମାଳୟ ପର୍ବତରେ ସାଧାରଣତଃ ଦେଖାଯାଇଥାନ୍ତି। ଏମାନଙ୍କୁ କେତେ ମାଇଲ ଦୂରରୁ ସହଜରେ ଦେଖିହୁଏ। ବିଭିନ୍ନ ଉଚ୍ଚତାରେ ଭିନ୍ନ ଭିନ୍ନ ପ୍ରକାରର ଗଛ, ଲତା, ଘାସ ସମାନ୍ତରାଳ ଭାବେ ଦେଖିବାକୁ ମିଳିଥାଏ। ନିମ୍ନ ଭାଗରେ *"ସୋରିଆ ରୋବୁଷ୍ଟା"* ଜାତୀୟ ଉଷ୍ଣ ଓ ଅର୍ଦ୍ଧ ଉଷ୍ଣ ଜଳବାୟୁରେ ଦେଖାଯାଉଥିବା ଗଛ ଦେଖାଯାଇଥାଏ। ଏହାଠାରୁ ଅଳ୍ପ ଉଚ୍ଚତାରେ ଓକ୍ ଓ ରୋହେଡ୍ରୋଡେଣ୍ଡ୍ରନ ପରି ଉଷ୍ଣ ଜଳବାୟୁ ମଣ୍ଡଳୀୟ ବୃକ୍ଷ ଦେଖାଯାଇଥାନ୍ତି। ଏହି ଅଞ୍ଚଳରେ ସେଓ, ପିଚୁଳି, ଅଙ୍ଗୁର ଜାତୀୟ କୋଳି ଓ ଅନ୍ୟ ଉଷ୍ଣ ଜଳବାୟୁ ଜାତୀୟ ଫଳ ଚାଷ କରାଯାଇପାରେ। ଭାରତୀୟ ବଜାରରେ ମିଳୁଥିବା ଅଧିକାଂଶ ଜାତିର ସେଓ ଓ ପିଚୁଳି ଏହି ସ୍ଥାନରେ ଦେଖିବାକୁ ମିଳେ। ଶେଷ ତଥା ସର୍ବୋଚ୍ଚ ଉଚ୍ଚତାର ଅଞ୍ଚଳରେ ସରୁ ପତ୍ର ଯୁକ୍ତ ନଗ୍ନବୀଜୀ ବା 'କୋନିଫର' ଜାତୀୟ ଉଦ୍ଭିଦ ଦେଖାଯାନ୍ତି। ଏମାନଙ୍କର ଛୁଞ୍ଚି ପ୍ରାୟ ସରୁ ସବୁଜ ପତ୍ରରାଜି ସମସ୍ତ ପ୍ରକାର ଥଣ୍ଡା ଓ କଠିନ ଜଳବାୟୁକୁ ସହ୍ୟ କରିପାରେ। ବହୁ ଶତାବ୍ଦୀ ଧରି ସମତଳବାସୀମାନେ ଉତ୍କୃଷ୍ଟ କାଠ ଏହି ଅଞ୍ଚଳରୁ ପାଇ ଆସିଛନ୍ତି।

ହିମାଳୟର ପୂର୍ବାଞ୍ଚଳରେ ତ୍ୱରୀତ ପରିବର୍ତ୍ତନକାରୀ ଏହି ଜାତୀୟ ଉଦ୍ଭିଦଙ୍କର ଆବିର୍ଭାବ ନାଟକୀୟ ଅଟେ। ଏଠାରେ ପର୍ବତମାଳା ନିମ୍ନ ଅଞ୍ଚଳକୁ ବ୍ୟାପି ଥିବାରୁ ଏହାର ପାଦଦେଶର ଜଙ୍ଗଲ ଗ୍ରୀଷ୍ମମଣ୍ଡଳୀୟ ଓ ଘଞ୍ଚ। ଗୋଟିଏ ଓଳି ଜିପରେ ବସି ଯେ କେହି ଏହି ଅଞ୍ଚଳ ବୁଲିଲେ କେବଳ ଗ୍ରୀଷ୍ମ ମଣ୍ଡଳୀୟ ଜଙ୍ଗଲରେ ବରଫ ସୀମାରେଖା ଉପରେ ଥିବା ବୃକ୍ଷରାଜିକୁ ହିଁ ଦେଖିପାରିବ। ଏପରିକି ଏକ ନିର୍ଦ୍ଦିଷ୍ଟ ଉଚ୍ଚତାରେ ଥିବା ନଗ୍ନବୀଜୀ ଉଦ୍ଭିଦମାନେ ଥଣ୍ଡାସହି ଓ ପବନର ସମ୍ମୁଖୀନ ହୋଇ ତିଷ୍ଠି ରହିପାରନ୍ତି ନାହିଁ, କାରଣ ଏଠାରେ କେବଳ ପଥୁରିଆ ସ୍ଥାନ ରହିଥାଏ ଓ ସମସ୍ତ ମୃତ୍ତିକା ପ୍ରବଳ ବାୟୁ ଦ୍ୱାରା ସ୍ଥାନାନ୍ତରିତ ହୋଇ ଯାଇଥାଏ। ସେ ଯାହା ହେଉନା କାହିଁକି, ତୁମେ ଯଦି ହିମାଳୟ ପର୍ବତମାଳାର ଉତ୍ତରକୁ ଯାତ୍ରା କରିବ ତେବେ ବହୁ ସଂଖ୍ୟକ ସମାନ୍ତରାଳ ଖଣ୍ଡିତ ପର୍ବତଶ୍ରେଣୀ ଓ ଉପତ୍ୟକା ଦେଖିବାକୁ ମିଳିବ। ଏଠାରେ ଥିବା ଉଦ୍ଭିଦରାଜି ସମାନ୍ତରାଳଭାବେ କୌଣସି ନୀତି, ନିୟମରେ ବଢ଼ି ନଥାନ୍ତି। ବଡ଼ ବୃକ୍ଷ ନଥିବା ସଂକୀର୍ଣ୍ଣ ପର୍ବତ ଶିଖରର ମଧ୍ୟବର୍ତ୍ତୀ ସ୍ଥାନରେ କେତେକ ବାସୋପଯୋଗୀ ଉପତ୍ୟକା ଦେଖା ଯାଇଥାଏ, ଯାହାର ଉଚ୍ଚତା ବହୁତ କମ ଥିବାରୁ ସମତଳ ଅଞ୍ଚଳପରି ଏହା କୃଷିକାର୍ଯ୍ୟ ପାଇଁ ସହାୟକ ହୋଇଥାଏ। ଏଠାରେ ମେଣ୍ଢା ଓ ଗାଈ ମଇଁଷିକୁ ମଧ୍ୟ ରଖାଯାଇପାରେ।

ମୃତ୍ତିକାର ମାନ ନିର୍ଦ୍ଧାରଣ ଓ ବିଶୁଦ୍ଧ ଜଳର ପରିମାଣ ଦ୍ୱାରା ଦେଶର ମୁଖ୍ୟ ସମ୍ପଦକୁ କଳନା କରାଯାଇପାରେ। ମୃତ୍ତିକାର ଉପର କେତେ ଇଞ୍ଚକୁ ଆମେ ଉତ୍କୃଷ୍ଟ ମୃତ୍ତିକା ବୋଲି କହିଥାଉ। ଏହି ମାଟିରେ ମଞ୍ଜିରୁ ଗଛ ସୃଷ୍ଟି ହୁଏ ଏବଂ ନୂତନ ଗଛ ଖାଦ୍ୟ, ପୃଷ୍ଟି ଏବଂ ପରିପୋଷକ ପଦାର୍ଥ ପାଇଥାଏ।

ଯେଉଁଠାରେ ମୃତ୍ତିକା ଉପର ଗଡ଼ାଣିଆ ସ୍ଥାନ ସାଧାସିଧା ଓ ୩୦ ଡିଗ୍ରୀରୁ କମ ହୋଇଥାଏ ସେଠାରେ ମୋଟା ବହଳିଆ ଘାସ ମୃତ୍ତିକାକୁ ସହଜରେ ବାନ୍ଧି ରଖିପାରେ। ଏହି ସବୁ ଅଞ୍ଚଳ ମେଣ୍ଢା ଚାଷ ପାଇଁ ଉତ୍କୃଷ୍ଟ ସ୍ଥାନ। ମେଣ୍ଢାମାନେ ସାଧାରଣତଃ ଏକାକୀ ନୂତନ ଘାସକୁ ମୂଳରୁ ଖାଇ ଯାଆନ୍ତି ଓ ଏହାକୁ ଗୁଚ୍ଛ ଭାବରେ ବଢ଼ିବାରେ ସାହାଯ୍ୟ କରିଥାନ୍ତି, କିନ୍ତୁ ଛେଳିମାନେ ଏପରି ଚରିପାରନ୍ତି ନାହିଁ। ମେଣ୍ଢାମାନେ ଚରିବାବେଳେ ଘାସ ସହିତ ଚାରାଗଛକୁ ଖାଇଦେଇ ନୂତନ ଗଛ ସୃଷ୍ଟିରେ ବାଧା ଦେଇଥାନ୍ତି। ମାତ୍ର ଉଚ୍ଚ ସ୍ଥାନ ବୃକ୍ଷମାନଙ୍କ ଦ୍ୱାରା ପୂର୍ଣ୍ଣ ହୋଇଥିବାରୁ ପଶମ ବ୍ୟବସାୟୀ

ଓ ପଶମ ଶିଳ୍ପୀମାନେ ସାଧାରଣତଃ ନିମ୍ନ ଗଡ଼ାଣିଆ ସ୍ଥାନକୁ ମେଣ୍ଢାଚାଷ ପାଇଁ ପସନ୍ଦ କରିଥାନ୍ତି।

ମାତ୍ର ଯେଉଁଠାରେ ଗଡ଼ାଣିଆ ସ୍ଥାନ ତୀକ୍ଷ୍ଣ ହୋଇଥାଏ, ସେଠାରେ ମାଟି ଭିତରକୁ ଯାଇ ପାରୁଥିବା କଠିନ ପଦାର୍ଥର ଆବଶ୍ୟକତା ଥାଏ, ଯେ କି ମାଟିକୁ ପଶୁର ପଞ୍ଝାପରି ଦୃଢ଼ ଭାବରେ ଧରି ରଖେ। ଅନ୍ୟ ଭାଷାରେ କହିଲେ ଆମେ ଶାଖା-ପ୍ରଶାଖାପୂର୍ଣ୍ଣ ଗୁଚ୍ଛ ମୂଳଯୁକ୍ତ ଚେର ବହୁଳ ଗଛ ଏପରି ସ୍ଥାନରେ ଦରକାର କରିଥାଉ। ଏହା ବ୍ୟତୀତ ତୀକ୍ଷ୍ଣ ପର୍ବତାଞ୍ଚଳରେ ଅନ୍ୟ କୌଣସି ବସ୍ତୁ ମୃତ୍ତିକାକୁ ଧରି ରଖି ପାରେ ନାହିଁ। ଏ କ୍ଷେତ୍ରରେ ଗଛ ଗୁଡ଼ିକ ଲଗାଲଗି ହୋଇ ରହିବା ଆବଶ୍ୟକ ଯାହାଫଳରେ କି ସେମାନଙ୍କ ମୂଳଗୁଡ଼ିକ ନିଜ ନିଜ ଭିତରେ ଛନ୍ଦି ହୋଇ ଦୃଢ଼ ଭାବରେ ରହିପାରିବ। ବିଭିନ୍ନ ଆକାରର ଓ ଭିନ୍ନ ଭିନ୍ନ ପ୍ରକୃତିର ମୂଳ ନିଶ୍ଚିତଭାବେ ରହିବା ଆବଶ୍ୟକ। କେତେକ ସିଧାଭାବେ ମାଟି ତଳକୁ ଯାଇଥିବା ବେଳେ କେତେକ ବହୁ ଶାଖାରେ ବିଭକ୍ତ ହୋଇ ଛନ୍ଦି ହୋଇ ରହିଥାଏ ଯାହାଫଳରେ ମୃତ୍ତିକା ଦୃଢ଼ ଓ ନିରାପଦ ଭାବେ ବାନ୍ଧି ହୋଇ ରହିଥାଏ। ଏହି ଗଛ ଗୁଡ଼ିକର ଅଗ୍ରଭାଗ ଚାହୁଁଥାଉକି ନିଜ ନିଜ ଭିତରେ ଏପରିଭାବେ ଲାଗି ରହିବା ଆବଶ୍ୟକ ଯେପରିକି ପ୍ରବଳ ବର୍ଷା ଏହାକୁ ଭେଦକରି ମାଟି ଉପରେ ପଡ଼ି ଏହାର ଉର୍ବର ମୃତ୍ତିକାକୁ ନଷ୍ଟ କରି ପାରିବ ନାହିଁ। ବେଗଗାମୀ ଜଳକଣା ପ୍ରଥମେ ପତ୍ର ଉପରେ ପଡ଼ିଥାଏ ଏବଂ ପତ୍ରରୁ ଭୂମି ଉପରେ ଆସ୍ତେ ଖସି ପଡ଼ିଥାଏ। ଗହଳିଆ ବୃକ୍ଷରାଜି ମୃତ୍ତିକା ସଂରକ୍ଷଣ କରିବା ସଙ୍ଗେ ସଙ୍ଗେ ବର୍ଷା ଜଳକୁ ଧରି ରଖି ଭୂମିତଳ ଜଳ ବୃଦ୍ଧି କରିଥାଏ।

ମୃତ୍ତିକା ସଂରକ୍ଷଣ ଓ ଭୂତଳ ଜଳଭଣ୍ଡାର ବୃଦ୍ଧିପାଇଁ ବର୍ଷାଜଳ ବହୁ ସମୟ ଧରି ମୃତ୍ତିକା ଉପରେ ପଡ଼ି ରହିବାର ଆବଶ୍ୟକତା ରହିଛି। ମାତ୍ର ନିମ୍ନ ପାର୍ବତ୍ୟାଞ୍ଚଳରେ ଏହା ଆଦୌ ସମ୍ଭବ ନୁହେଁ। ଜଳର ବେଗ ଏଠାରେ ଥିବା ଛୋଟ ଛୋଟ ପଥର ଓ ଭୂମିରେ ଥିବା ଆବଡ଼ାଖାବଡ଼ା ଅଞ୍ଚଳଦ୍ୱାରା କ୍ରମେ କମିଯାଇଥାଏ, ଫଳରେ ଜଳ ଆଉ ଆଗକୁ ନ ଗଡ଼ି ମାଟି ଭିତରକୁ ଭେଦି ଯାଇ ଖୁବ୍ ଶୀଘ୍ର ଏକ ମାଟିତଳ ଜଳାଶୟରେ ମିଶିଯାଏ। ଇତ୍ୟବସରରେ ପ୍ରବଳ ବର୍ଷା କିଛି ପରିମାଣର ମୃତ୍ତିକା ଧୋଇନେଇପାରେ ତଥାପି କେତେକ କ୍ଷେତ୍ରରେ ଗଛର ଚେର ମାଟିକୁ ଏପରି ଦୃଢ଼ଭାବେ ଧରି ରଖେ ଯେ ଏଠାରୁ ଜଳାଶୟକୁ ବୋହି ଯାଉଥିବା ଜଳ ପରିଷ୍କାର ଓ ପଙ୍କହୀନ ରହିଥାଏ।

ସମ୍ଭବତଃ ଏହି ଜଳ ଏକ ଝରଣା ଆକାରରେ ତଳକୁ ଗଡ଼ି ଚାଲେ ।

ଯଦି ଗୋଟିଏ ପର୍ବତାଞ୍ଚଳର ବୃକ୍ଷରାଜି ଓ ଘାସ ପଡ଼ିଆ ବଢ଼ିଥିବା ଥାଏ ତେବେ ସେ ଅଞ୍ଚଳର ପ୍ରତ୍ୟେକ କ୍ଷେତ୍ର ମଧ୍ୟ ଭଲ ଅବସ୍ଥାରେ ରହିଥିବାର ଆମେ ଲକ୍ଷ୍ୟ କରିପାରିବା । ଏହି ଅଞ୍ଚଳର ଝରଣା ଓ ନଦୀଜଳ ଗୋଳିଆ, ଲଷଟ୍ ନାଲିଆ, ଅପରିଷ୍କାର ନ ହୋଇ ସ୍ୱଚ୍ଛ, ନିର୍ମଳ ଜଳଯୁକ୍ତ ହୋଇଥାଏ ଏବଂ ଏହି ଜଳ ଉପତ୍ୟକା ଓ ସମତଳ ଅଞ୍ଚଳର ଲୋକଙ୍କ ଦ୍ୱାରା କୃଷି ଉତ୍ପାଦନ ପାଇଁ ବ୍ୟବହୃତ ହୋଇଥାଏ ।

ପାର୍ବତ୍ୟାଞ୍ଚଳକୁ ଦୃଢ଼ ରଖିବାର ମୁଖ୍ୟ ଆଧାର ହେଲେ ମିଶ୍ରିତ ଜାତିର ଗହଳିଆ ଚିର ହରିତ୍ ବୃକ୍ଷରାଜି । ବହୁ ଶତାବ୍ଦୀ ଧରି ପ୍ରାକୃତିକ ଭାବେ ଅଧିକାଂଶ ପର୍ବତାଞ୍ଚଳରେ ଏହି ପ୍ରକାର ଅରଣ୍ୟ ଗଢ଼ିଉଠିଛି ।

ଏହା ବ୍ୟତୀତ ପର୍ବତାଞ୍ଚଳ ହିଁ କାଷ୍ଠ ଉତ୍ପାଦନର ପ୍ରକୃଷ୍ଟ କ୍ଷେତ୍ର । ପର୍ବତରେ ଗଡ଼ାଣିଆ ଅଞ୍ଚଳରୁ ଆମେ ଯେ ପର୍ଯ୍ୟନ୍ତ ସଙ୍ଗତ ଭାବେ ବାଛି ବାଛି ଗଛ କାଟୁଥିବା ସେ ଯାଏ ଏହା ଆମକୁ ପ୍ରଚୁର ପରିମାଣର କାଠ ଯୋଗାଇ ପାରିବ । ହିମାଳୟ ବିଷୟରେ ବହୁ ଲୋକ ଯେତେବେଳେ ଯାହା ଚିନ୍ତା କରନ୍ତି, ତାହାହେଲା, ଏହା କେବଳ ଏକ ଫଳ ଉତ୍ପାଦନ କ୍ଷେତ୍ର ନୁହେଁ କି କାଠ ଉତ୍ପାଦନ କେନ୍ଦ୍ର ନୁହେଁ କିମ୍ବା ପଶମ ଓ କୃଷି ଉତ୍ପାଦନ କ୍ଷେତ୍ର ନୁହେଁ ବରଂ ଆମେ ସେତେବେଳେ ଚିନ୍ତା କରୁ ଯେ ଏହା ଏକ ପର୍ବତଶ୍ରେଣୀ ଯାହା କି ବିସ୍ମୟକର ଭାବେ ସୁଦୃଶ୍ୟ ଏବଂ ପ୍ରେରଣାଦାୟକ । ଏହା ଆମର ସାଧାରଣ କାର୍ଯ୍ୟକ୍ଷେତ୍ରର ପରିସରଠାରୁ ଏଭଳି ଭାବେ ପୃଥକ ଯେ ଏହା ଆମକୁ ମାନସିକ ଓ ଆଧ୍ୟାତ୍ମିକ ଶାନ୍ତି ପ୍ରଦାନ କରିବାରେ କ୍ଷମ ହୋଇଥାଏ । ଏହା ଏପରି ଏକ ସ୍ଥାନ ଯେଉଁଠାକୁ ଲୋକେ ନିଜର ଉତ୍ସାହ ବୃଦ୍ଧିପାଇଁ ଓ ଶାରୀରିକ କ୍ଷମତାର ପୁନର୍ବିନ୍ୟାସ ପାଇଁ ଯାଇଥାନ୍ତି । ସେଥିପାଇଁ ଏହାକୁ ଈଶ୍ୱରଙ୍କ ବାସସ୍ଥାନ ବୋଲି କୁହାଯାଇଥାଏ । ଭାଷାନ୍ତରରେ ଅମଲାତନ୍ତ୍ରୀଙ୍କ ମତରେ, ଏହା ଏକ ପର୍ଯ୍ୟଟନ କ୍ଷେତ୍ର ।

ପଶ୍ଚିମରେ ଶ୍ରୀନଗରଠାରୁ ପୂର୍ବରେ ଦାର୍ଜିଲିଂଯାଏ ହିମାଳୟ ପାଦଦେଶ ପର୍ବତାଞ୍ଚଳର ବହୁ ସୁନ୍ଦର ସ୍ଥାନରେ ଅନେକ ଜନବସତି ପୂର୍ଣ୍ଣ ସହର ରହିଛି । ପ୍ରତ୍ୟେକ ବର୍ଷ ଗ୍ରୀଷ୍ମ ଋତୁରେ ଏଠାରେ ପର୍ଯ୍ୟଟକମାନଙ୍କର ପ୍ରବଳ ଭିଡ଼ ହୁଏ । ଏହା ବର୍ତ୍ତମାନ ଯାଏଁ ସେହିପରି ସୁନ୍ଦର ରହିଛି । ଆମେ ଭାରତବାସୀ ଆମ ସୀମା ଭିତରେ ଏ ପ୍ରକାର ସୌନ୍ଦର୍ଯ୍ୟପୂର୍ଣ୍ଣ ସ୍ଥାନ ପାଇ ଗର୍ବିତ ଯାହାକି

ସାରା ବିଶ୍ୱରେ ଯୁକ୍ତିଯୁକ୍ତ ଭାବେ ଅଦ୍ୱିତୀୟ ସୌନ୍ଦର୍ଯ୍ୟସ୍ଥଳୀ। ପର୍ଯ୍ୟଟକମାନେ ହିଁ ସ୍ଥାନୀୟ ଅଧିବାସୀଙ୍କର ଆର୍ଥିକ ଅବସ୍ଥା ଉନ୍ନତିର ମାନଦଣ୍ଡ। ପର୍ଯ୍ୟଟକମାନେ ସେମାନଙ୍କର ସମୟ ଆନନ୍ଦରେ ଏଠାରେ ବିତାଉଥିବାବେଳେ ସ୍ଥାନୀୟ ଲୋକେ ସେମାନଙ୍କୁ ପଦାର୍ଥ ବିକ୍ରୀକରି ସେ ସେବା ଯୋଗାଇଦେଇ ଭଲ ଉପାର୍ଜନ କରିଥାନ୍ତି। ମାତ୍ର ପ୍ରତ୍ୟେକ ପର୍ଯ୍ୟଟନ କେନ୍ଦ୍ରର ଉନ୍ନତି ଓ ମାନବୃଦ୍ଧି ପାଇଁ ସ୍ୱତନ୍ତ୍ରଭାବେ ନିର୍ଦ୍ଦିଷ୍ଟ ପ୍ରବୃତ୍ତିର ଲୋକ, ଯାନବାହାନ ନିୟନ୍ତ୍ରଣ ପାଇଁ ବ୍ୟବସ୍ଥା ଓ ଜିନିଷପତ୍ର ନେବା ଆଣିବା ବ୍ୟବସ୍ଥା ସଠିକଭାବେ ହେବା ଦରକାର। ଏ ବିଷୟରେ ପରବର୍ତ୍ତୀ ଅଧ୍ୟାୟରେ ଆମେ ଆଲୋଚନା କରିବା।

ଗତ କେତେବର୍ଷ ଭିତରେ ଏହି ସହରକୁ ଆସୁଥିବା ପର୍ଯ୍ୟଟକଙ୍କ ସଂଖ୍ୟା ବୃଦ୍ଧି ପାଇଛି ଏବଂ ସହର ବାହାରକୁ ଯାଇ ଓ କେତେ ଉଚ୍ଚସ୍ଥାନକୁ ବୁଲିଯାଉଥିବା ପର୍ଯ୍ୟଟକ କେତେକ ଅସୁବିଧାର ସମ୍ମୁଖୀନ ହୋଇଛନ୍ତି। ହିମାଳୟର ପ୍ରାକୃତିକ ପରିବେଶ ସବୁବେଳେ ହେଉଛି ଭଙ୍ଗୁର, ତୀକ୍ଷ୍ଣ ଓ ଦୁର୍ବଳ। ଏଠାରେ ଥିବା ବିଭିନ୍ନ ଉଦ୍ଭିଦରାଜି, ମୃତ୍ତିକା ଓ ଜଳ ଏପରି ନିବିଡ଼ ଭାବେ ପରସ୍ପର ମଧ୍ୟରେ ସୌହାର୍ଦ୍ଦ୍ୟ ରକ୍ଷାକରି ବଢ଼ିଛନ୍ତି ଯେ ଏଥିମଧ୍ୟରୁ ଯେ କୌଣସି ଗୋଟିକରେ କୌଣସି ପ୍ରକାର ଆଘାତ ଲାଗିଲେ ଅନ୍ୟଟି କ୍ଷତିଗ୍ରସ୍ତ ହୋଇଥାଏ। ଏଠାକାର କୌଣସି ଉଦ୍ଭିଦ ବା ପ୍ରାଣୀ ଦେହରେ କୌଣସି ପ୍ରକାର ଆଘାତ ଲାଗିଲେ ଏହାର କୁପ୍ରଭାବ ଜଳଯୋଗାଣ ଉପରେ ପଡ଼ିଥାଏ। ଏପରିକି ଜାଳେଣୀକାଠ ସଂଗ୍ରହ ବେଳେ ଉଚ୍ଚ ପର୍ବତାଞ୍ଚଳକୁ ଚଢ଼ିବାଦ୍ୱାରା ସୃଷ୍ଟି ହେଉଥିବା କ୍ଷତି ଯୋଗୁଁ ହିମାଳୟ ପର୍ବତମାଳାର ବହୁ ଘଞ୍ଚ ଅଞ୍ଚଳ ନଷ୍ଟ ହୋଇଥାଏ।

ହିମାଳୟ ପର୍ବତମାଳା ନିଜ ପାଇଁ ଏକ ସ୍ୱତନ୍ତ୍ରତା ସୃଷ୍ଟି କରିଛି। ଉଚ୍ଚତା ଓ ନାଟକୀୟତା ସୃଷ୍ଟି ଦିଗରେ ଦ୍ୱିତୀୟ ପର୍ବତମାଳା ଏହାଠାରୁ ବହୁ ତଳେ ରହିଛି। ପଶ୍ଚିମଘାଟ ପର୍ବତମାଳା ସମଗ୍ର ଭାରତୀୟ ଉପଦ୍ୱୀପ ଅଞ୍ଚଳରେ ପ୍ରଭାବ ବିସ୍ତାର କରିଛି ଏବଂ ପ୍ରାକୃତିକ ବିଭବ ଓ ସୌନ୍ଦର୍ଯ୍ୟରେ ଏହା ପୃଥିବୀର ଅନେକ ପର୍ବତମାଳାଠାରୁ ସ୍ୱାତନ୍ତ୍ର୍ୟ ପରିପ୍ରକାଶ କରିଛି।

ହିମାଳୟ ପରି ପଶ୍ଚିମଘାଟ ପର୍ବତମାଳା ମୌସୁମୀବାୟୁକୁ ନିୟନ୍ତ୍ରଣ ଓ ଦିଗଦର୍ଶନ ଦେବାରେ ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥାଏ। ଯଦି ପ୍ରଥମାବସ୍ଥାରୁ ଆମ ସହିତ ପରାମର୍ଶ କରାଯାଇଥାନ୍ତା ତେବେ ହୁଏତ ଆମେ ମତ ଦେଇଥାନ୍ତେ, ଏହି ପର୍ବତମାଳା ସମୁଦ୍ରର ଏତେ ନିକଟରେ ନ ରହି

ସ୍ଥଳଭାଗ ଆଡ଼କୁ କେତେଶହ ମାଇଲ ଭିତରକୁ ରହିଥିଲେ ଭଲ ହୋଇଥାନ୍ତା। କାରଣ, ଯେତେବେଳେ ଜଳକଣାପୂର୍ଣ୍ଣ ମୌସୁମୀବାୟୁ ପଶ୍ଚିମ ସମୁଦ୍ରରୁ ଆସି ଏହି ପର୍ବତମାଳା ଦେହରେ ମାଡ଼ ହୁଏ, ସେତେବେଳେ ପଶ୍ଚିମାଞ୍ଚଳରେ ବର୍ଷା ହୁଏ ଏବଂ ପର୍ବତମାଳାର ବିସ୍ତୀର୍ଣ୍ଣ ଅପରପାର୍ଶ୍ୱ ପାଇଁ ଖୁବ କମ ଜଳକଣା ରହିଯାଇଥାଏ। ତେଣୁ ସେଇଥିପାଇଁ ବମ୍ବେରେ ୧୦୦ ଇଞ୍ଚ ବର୍ଷା ହେଉଥିବା ବେଳେ ଏଠାରୁ ୧୦୦ ମାଇଲରୁ କିଛି ଦୂରରେ ଥିବା ପୁନା ସହର ପଶ୍ଚିମଘାଟ ପର୍ବତମାଳାର ଅପରପାର୍ଶ୍ୱରେ ରହିଯାଇଥିବାରୁ ସେଠାରେ ମାତ୍ର ୩୦ ଇଞ୍ଚ ବର୍ଷା ହୋଇଥାଏ। ଏହି ପର୍ବତମାଳାର ପଶ୍ଚିମ ପାର୍ଶ୍ୱ ବା ସମୁଦ୍ର ପଟକୁ ଥିବା ଗଡ଼ାଣିଆ ଅଞ୍ଚଳ ସରସ, ସତେଜ ଉଦ୍ଭିଦରାଜିରେ ଭରପୂର। ମାତ୍ର ଏଠାରୁ ବାହାରିଥିବା ନଦୀମାନେ ଆମକୁ ବୋକା ବନାଇ ଖୁବ ଶୀଘ୍ର କ୍ଷୀଣ ସ୍ଥଳଭାଗ ବେଳାଭୂମିକୁ ଅତିକ୍ରମ କରି ସମୁଦ୍ରରେ ମିଶିଛନ୍ତି। ପର୍ବତମାଳାର ପୂର୍ବପଟରେ ଚାଷୀ ଉଦବେଗଜନକଭାବେ ଜଳପାଇଁ ନିରାଶ ହେଉଥିବାବେଳେ ପଶ୍ଚିମ ପାର୍ଶ୍ୱର ନିର୍ମଳଜଳ ବିନା କାରଣରେ ସମୁଦ୍ରରେ ମିଶିଥାଏ। ଏହା ସତ୍ୟ ଯେ ପୂର୍ବପାର୍ଶ୍ୱସ୍ଥ ଉପତ୍ୟକାରୁ ମଧ୍ୟ କେତେକ ନଦୀ ସୃଷ୍ଟି ହୋଇଛନ୍ତି। କୃଷ୍ଣା ନଦୀ ଏଠାରୁ ବାହାରି କେତେକ ସ୍ଥଳଭାଗ ଅତିକ୍ରମ କଲାପରେ ଅନ୍ୟ ପାର୍ଶ୍ୱରେ ବେଳାଭୂମି ସ୍ପର୍ଶ କରିବାବେଳକୁ ଶୁଷ୍କ ହୋଇଯାଇଥାଏ। ମାତ୍ର ବର୍ଷା ଉପରେ ନିର୍ଭର କରୁଥିବା ଏହି ନଦୀଗୁଡ଼ିକ ଆବଶ୍ୟକତା ପୂରଣ କରେ ନାହିଁ। ମୌସୁମୀସିକ୍ତ ନଦୀ ଶୁଷ୍କ ଏବଂ କ୍ଷୁଦ୍ର ଜଳଧାରାଯୁକ୍ତ, ଏପରିକି ବର୍ଷା ପୂର୍ବରୁ ଖରାଦିନେ କେତେକ ସମୟରେ ଏଗୁଡ଼ିକର ଶଯ୍ୟା ସମ୍ପୂର୍ଣ୍ଣ ଶୁଷ୍କ ଓ ପଥୁରିଆ ହୋଇଯାଇଥାଏ।

ଅନ୍ୟାନ୍ୟ ବଡ଼ ପର୍ବତମାଳା ସାତପୁରା, ବିନ୍ଧ୍ୟ, ଆରାବଲୀ, ପୂର୍ବର ଖାସି ଓ ଗାରୋ ମଧ୍ୟ ଉଣା ଅଧିକେ ଏହି ପ୍ରକାର କାର୍ଯ୍ୟ କରିଥାନ୍ତି। ସମତଳ ଭୂମି ବ୍ୟତୀତ ଆନ୍ଦୋଳିତ ଅବସ୍ଥାରେ ଥିବା କେତେ କ୍ଷୁଦ୍ର ଅଞ୍ଚଳ ବିଷୟରେ ଜାଣିବା ଲାଭଦାୟକ ହୋଇଥାଏ। ଏକ କ୍ଷୁଦ୍ର ଫମ୍ପା ସ୍ଥାନ ମଧ୍ୟ ଜଳକଣାକୁ ଖୁବ୍ ଭଲ ଭାବେ ଧରି ରଖି ବାତ୍ୟା ପବନରୁ ରକ୍ଷାକରିପାରେ। ଏହାର ପ୍ରକୃଷ୍ଟ ଉଦାହରଣ ହେଉଛି ଦକ୍ଷିଣ ଭାରତର ପର୍ବତ ଭାଗରେ ଦେଖାଯାଉଥିବା ସୁରକ୍ଷିତ ଜଙ୍ଗଲ ''ଷୋଲା''। ଏଠାରେ ଘଞ୍ଚ ବୃକ୍ଷରାଜି

ଓ ବୃକ୍ଷଶୂନ୍ୟ ଘାସ ପଡ଼ିଆ ପର୍ବତ କଡ଼ରେ ଦୃଷ୍ଟିଗୋଚର ହୋଇଥାଏ। କେତେକ ଅସମତଳ କ୍ଷୁଦ୍ର ଅଞ୍ଚଳର ଅବସ୍ଥିତି ଉତ୍ସାହପ୍ରଦ। ଏଠାରେ ସମତଳ ଭୂମିଠାରୁ ଅଧିକ ପ୍ରକାରର ପ୍ରାକୃତିକ ଜୀବ, ପକ୍ଷୀ, କୀଟପତଙ୍ଗ, କ୍ଷୁଦ୍ର ସ୍ତନ୍ୟପାୟୀ ପ୍ରଭୃତି ଦେଖାଯାନ୍ତି।

ପର୍ବତମାଳାଠାରୁ ଆମେ ପାଉଥିବା ଉପକାରକୁ ବିଚାରକୁ ନେଲେ ଏହା ସ୍ପଷ୍ଟ ହେବ ଯେ, ଯେପର୍ଯ୍ୟନ୍ତ ଆମେ ଆମର ପର୍ବତମାଳକୁ ସୁନ୍ଦର, ଅତୁଟ ନ ରଖିବା, ସେ ପର୍ଯ୍ୟନ୍ତ ସେମାନେ ହୁଏତ ଆମର ସେବାରେ ଠିକ ଭାବେ ଲାଗି ପାରିବେ ନାହିଁ କିମ୍ୱା ଆମର ସେବା ଆଦୌ କରିପାରିବେ ନାହିଁ।

# ପର୍ବତମାଳା

## II

### ଜଣ୍ଡା ପାହାଡ଼

ସୁସ୍ଥ ସବଳ ପର୍ବତମାଳା କିଏ, ଏବଂ ଗୋଟିଏ ସୁସ୍ଥ ପର୍ବତମାଳାକୁ ତୁମେ ଗୋଟିଏ ଦୁର୍ବଳ ପର୍ବତମାଳାଠାରୁ କିଭଳି ଭାବେ ପୃଥକ କରିବ ? ଆମେ ଏବେ ଦେଖିଲେ ଯେ ଗୋଟିଏ ସୁସ୍ଥ ପର୍ବତମାଳାର ମୃତ୍ତିକାଧାରଣ କରିପାରୁନଥିବା ଅତ୍ୟଧିକ ତୀକ୍ଷ୍ଣ ଶୃଙ୍ଗରାଜି ବ୍ୟତୀତ ଶିଖର ଯାଏଁ ଅନ୍ୟ ସବୁଆଡ଼େ ଉର୍ବର ମୃତ୍ତିକାଯୁକ୍ତ ହୋଇଥାଏ । ବଢୁଥିବା ଚେରଦ୍ୱାରା ଏହି ଉର୍ବର ମୃତ୍ତିକାକୁ କେବଳ ଆବଦ୍ଧ କରି ରଖାଯାଇପାରିବ । ତୀଖ ଶିଖରରେ ଗଛର ଚେର ଶକ୍ତ ଓ ବୃହତ ହେବା ଆବଶ୍ୟକ । ଉଦାହରଣ ସ୍ୱରୂପ ସମତଳ ବା ଅନ୍ୟାନ୍ୟ କ୍ଷେତ୍ରରେ ଘାସର ଚେର ଉତ୍ତମ କିନ୍ତୁ ବୃକ୍ଷପୂର୍ଣ୍ଣ ସ୍ଥାନରେ ଜାଁ ଭାଁ ଗଛ ବ୍ୟତୀତ ଗହଳିଆ ଜଙ୍ଗଲ ରହିବା ଆବଶ୍ୟକ ।

ଯଦି ନିର୍ବିଚାର ଭାବେ ପର୍ବତ କନ୍ଦର ବୃକ୍ଷ କାଟି ଦିଆଯିବ ଆମେ ଭବିଷ୍ୟତରେ ଯେ କେବଳ ବୃକ୍ଷଠାରୁ ମିଳୁଥିବା ପଦାର୍ଥ ପାଇବା ନାହିଁ, ତାହା ନୁହେଁ, ବରଂ ଏହାଦ୍ୱାରା ମୃତ୍ତିକା କ୍ଷୟ ହୋଇ ସେଠାକାର ପତଳା ମାଟିରେ ଆଉ ନୂତନ ବୃକ୍ଷ ଉପୁଜାଇବା ସମ୍ଭବ ହେବ ନାହିଁ ।

ଏକ ପ୍ରାକୃତିକ, ଅବ୍ୟବହୃତ ଜଙ୍ଗଲ ସରସ, ସତେଜ ଗହଳିଆ ବୃକ୍ଷରାଜି ଠିକ୍ ସମୟରେ ବଢ଼ାଇବାକୁ ବାଧ୍ୟ । ମାତ୍ର ମଣିଷର ହସ୍ତକ୍ଷେପ ଫଳରେ ଗଛ ଓ ଡ଼ାଳପତ୍ର ହଣାଯାଉଛି, ଜଙ୍ଗଲରେ ନିଆଁ ଲଗାଇବାଠାରୁ ଆରମ୍ଭ କରି କ୍ଷୁଦ୍ର ଚାରାଗଛ ଓ ବିହନକୁ ଦଳିଚକଟି ଦେବା ଦ୍ୱାରା ଏହାର ଫଳ ସ୍ୱରୂପ ଜଙ୍ଗଲ କ୍ରମେ ପତଳା ଓ ଅଦରକାରୀ ହୋଇଯାଉଛି । ତେଣୁ

ଯେତେବେଳେ ମଣିଷ ଗୋଟିଏ ଜଙ୍ଗଲରୁ କାଠ ଆଣୁଛି, ସେତେବେଳେ ସେ ଯେ କୌଣସି ପ୍ରକାରେ ନିଶ୍ଚିତ ହେବା ଆବଶ୍ୟକ ଯେ ସେ କେବଳ ବଳକାକାଠ ଆଣୁଛି କିମ୍ବା ଖୁବଶୀଘ୍ର ଯେତେ ପୁନଃଜନ୍ମ ହୋଇପାରିବ, ସେଇଥିରୁ ହିଁ ସଂଗ୍ରହ କରୁଛି।

ଏକ ଲଣ୍ଡା ପର୍ବତ ପାର୍ଶ୍ୱରୁ ମୃତ୍ତିକାକ୍ଷୟ ହୋଇ ପର୍ବତର ପାଦଦେଶକୁ ଆସିଥାଏ ଏବଂ ନଦୀ ସେପାଖକୁ ପୋତି ପକାଇଥାଏ। (ଯେହେତୁ ସେମାନେ ନିମ୍ନ ଅଞ୍ଚଳରେ ଥାନ୍ତି) ଚଳାପାଣିରେ ବାଲିକଣା, ସୂକ୍ଷ୍ମ ମୃତ୍ତିକା ଇତ୍ୟାଦି ମିଶିବାଦ୍ୱାରା ଜଳସ୍ତର ବୃଦ୍ଧିପାଏ ଓ ଅନେକ ସମୟରେ କୂଳକୁ ଅତିକ୍ରମ କରି ପାର୍ଶ୍ୱବର୍ତ୍ତୀ ଭୂମିକୁ ବନ୍ୟାପ୍ଲାବିତ କରିଥାଏ। ତେଣୁ ତୀକ୍ଷ୍ଣ ପର୍ବତକୁ ବୃକ୍ଷଦ୍ୱାରା ଆଚ୍ଛାଦିତ ନ କରିବାର ସୁଦୂରପ୍ରସାରୀ ଅପକାର ରହୁଛି। ଏହାଦ୍ୱାରା ପର୍ବତ ଦ୍ୱାରା ସମ୍ପୃକ୍ତ ନ ଥିବା ବହୁ ଅଞ୍ଚଳ କ୍ଷତିଗ୍ରସ୍ତ ହୋଇଥାଏ।

ତୃଣାଚ୍ଛାଦିତ କ୍ଷେତ୍ରରେ ମଧ୍ୟ ଏହା ସତ୍ୟ। ଏହି କ୍ଷେତ୍ର ସାଧାରଣତଃ ତୃଣଭୋଜୀ ଗୃହପାଳିତ ଓ ଜଙ୍ଗଲ ଜନ୍ତୁଙ୍କ ଚରାଭୂଇଁ ରୂପେ ବିବେଚିତ ହୋଇଥାଏ। ହରିଣ, କୃଷ୍ଣସାର ମୃଗ ଭଳି ଖୁରାଯୁକ୍ତ ପଶୁ ଏହି ଅଞ୍ଚଳର ଖୁବ୍ କମ୍ କ୍ଷତି କରିଥାନ୍ତି। କାରଣ ଏମାନେ ସାଧାରଣତଃ ଚଞ୍ଚଳ ଏବଂ ଗୋଟିଏ ସ୍ଥାନରେ ବହୁ ଦିନ ଯାଏଁ ରହନ୍ତି ନାହିଁ। ମାତ୍ର ଗାଈ ଗୋରୁ ଭଳି ଗୃହପାଳିତ ପଶୁମାନେ ଗୋଟିଏ ସ୍ଥାନରେ ଦିନପରେ ଦିନ କ୍ରମାଗତ ଚରିବାଦ୍ୱାରା ନୂତନ ଘାସ ଗଛ ସୃଷ୍ଟି କରିବାରେ ପ୍ରତିବନ୍ଧକ ସୃଷ୍ଟି କରିଥାନ୍ତି। କେତେଦିନ ପରେ ଏହି ସ୍ଥାନର ମାଟି ସିମେଣ୍ଟ ପରି କଠିନ ହୋଇଯାଏ ଓ ନୂଆଗଛ ଏହି କଠିନ ମାଟି ମଧ୍ୟ ଦେଇ ସୃଷ୍ଟି ହୋଇପାରେ ନାହିଁ।

ଯେପରି ଜଣେ ଅସୁସ୍ଥ ମଣିଷ କେତେକ୍ଷଣ ପାଇଁ ତାର ଅସୁସ୍ଥତା ତ୍ୟାଗକରି ଭଲ ମଣିଷ ପରି ବ୍ୟବହାର କରିଥାଏ, ଠିକ ସେହିପରି କେତେକ ପର୍ବତମାଳା ଦୁର୍ବଳ ଥାଇ ମଧ୍ୟ ନିଜକୁ ସୁନ୍ଦର ଓ ସବଳ ପରି ଦେଖେଇଥାନ୍ତି। ଉଦାହରଣ ସ୍ୱରୂପ ବର୍ଷାଦିନେ ସବୁପ୍ରକାର ଘାସଗଛ ଓ ଗଛ ବଢ଼ିଯିବାରୁ ପର୍ବତ ସବୁଜ, ସୁନ୍ଦର ଓ ଆଚ୍ଛାଦିତ ଦେଖାଯାଏ। କମ ସଂଖ୍ୟକ ଗଛ ଥିଲେ ମଧ୍ୟ ଏହାର ବହୁ ପତ୍ର ଥିବାରୁ ଆମେ କିଛି ଦୂରରୁ ଏହାର ସବୁଜ ପତ୍ରରାଜିକୁ ଦେଖି ଅନୁମାନ କରିନେଇଥାଉ ଯେ ଏଠାରେ ଘଞ୍ଚ ବୃକ୍ଷରାଜି ରହିଛି, ଏଣୁ ସେଠାରେ ମୃତ୍ତିକା କ୍ଷୟର କୌଣସି ସମ୍ଭାବନା ନାହିଁ।

ମାତ୍ର ଏହା ସବୁ ବର୍ଷା ଋତୁର ଏକ ଲକ୍ଷଣ, ଯଦ୍ୱାରା ଆମେ ପର୍ବତର ଶରୀର ବିଷୟରେ ଜାଣିପାରୁ। ଝରଣା ଜଳର ରଙ୍ଗ ହିଁ ଆମକୁ ପର୍ବତ ଶରୀରର ତଥ୍ୟ ଦେଇଥାଏ। ଯଦି ଏହି ଜଳ ପରିଷ୍କାର ତେବେ ମୃତ୍ତିକା ସଂରକ୍ଷିତ ହୋଇ ରହିଛି ଓ ଏହା ଶୁଭସୂଚକ, ମାତ୍ର ଯଦି ଏହି ପାଣି ଗୋଳିଆ ତେବେ ଆମକୁ ଦେଖାଯାଉଥିବା ସବୁଜ ବୃକ୍ଷରାଜି ନିରାପଦ ନୁହେଁ। କାରଣ ଆମେ ଜାଣୁ ଯେ ଏହି ବୃକ୍ଷରାଜି ଯେତେ ଅଧିକ ସବୁଜ ଦିଶିଲେ ମଧ ଏହା ମୃତ୍ତିକା ସଂରକ୍ଷଣ ପାଇଁ ସେତେ ଉପଯୋଗୀ ନୁହେଁ।

ସେ ଯାହା ହେଉନା କାହିଁକି, ଏହି ସମୟ ଭିତରେ ଯେତେବେଳେ ଶୁଷ୍କ ଗ୍ରୀଷ୍ମଋତୁ ଆସିଯାଏ, ସେତେବେଳେ କ୍ଷଣସ୍ଥାୟୀ ସବୁଜିମା ଉଭେଇଯାଇ ପ୍ରକୃତ ସତ୍ୟ ପଦାକୁ ଆସିଯାଏ। ଖୁବ ଶୀଘ୍ର ବଢୁଥିବା ଋତୁକାଳୀନ ଘାସଗଛ, କ୍ଷଣସ୍ଥାୟୀ ଅନେକ ଗଛ, ବିରାଟକାୟ ସବୁଜପତ୍ର ଦ୍ୱାରା ଘୋଡ଼ାଇ ହୋଇ ରହିଥିବା ବହୁ ଲଟା ମରିଯାଏ। ଦୂର ଓ ନିକଟରେ ଥିବା ବୃକ୍ଷର ଗଣ୍ଡି ପଦାରେ ପଡ଼ିଯାଏ, ରୋଗାକ୍ରାନ୍ତ ଓ ଦୁର୍ବଳ ହୋଇଯାଏ। ସ୍ଥାୟୀ ଘାସଗଛ ସବୁ ଉଭେଇ ଯାଆନ୍ତି। ବର୍ଷାଦିନେ ସରସ ଦୃଶ୍ୟ ସୃଷ୍ଟି କରିଥିବା ଋତୁକାଳୀନ ଗଛ ମଧ ଝାଉଁଳି ପଡ଼ି ନିସ୍ତେଜ ହୋଇଯାଆନ୍ତି।

କିପରି ଭାବେ ଏକ ସୁସ୍ଥ ପର୍ବତ ଦୁର୍ବଳ ହୋଇପଡ଼େ ସେ ବିଷୟରେ ଏବେ ବିଶ୍ଳେଷଣ କରିବା। ସୃଷ୍ଟିର ପ୍ରାକ୍ କାଳରୁ ମଣିଷ ପର୍ବତ ନିକଟରେ, ଉପରେ ଓ ପର୍ବତ ସହିତ ବାସ କରି ଆସିଛି। ସେମାନେ କେତେକ କ୍ଷୁଦ୍ର ଭୂମି ଖଣ୍ଡରେ ଚାଷବାସ କରନ୍ତି କିମ୍ବା ଆଦିବାସୀମାନେ ଜଙ୍ଗଲରୁ ପ୍ରାକୃତିକ ଖାଦ୍ୟ ଯଥା: ଫଳ, ମୂଳ, ପତ୍ର ଓ ଚେର ଇତ୍ୟାଦି ସଂଗ୍ରହ କରି ଖାଇ ଜୀବିକା ନିର୍ବାହ କରିଥାନ୍ତି। ଜିନିଷପତ୍ର ପରିବହନ କରିବାକୁ ପାଦରେ ଚାଲି ହେଉ କିମ୍ବା ଶଗଡ଼ଗାଡ଼ି, ଅଶ୍ୱପୃଷ୍ଠ ବ୍ୟବହାର କରିଥାନ୍ତି। ସେମାନେ ରାସ୍ତା ଆବଶ୍ୟକ କରନ୍ତି ନାହିଁ। ଉଚ୍ଚ ଖାଲ ସବୁ ରାସ୍ତା, ଯାହାକି ପର୍ବତ ମଧରେ ସୃଷ୍ଟି ହୋଇଥାଏ ସେମାନଙ୍କ ଯାତାୟତ ପାଇଁ ସୁବିଧାଜନକ ହୋଇଥାଏ ଓ ଏହା ସାଧାରଣତଃ ବୃକ୍ଷରାଜି ଓ ସବୁଜ ବଳୟ ମଧରେ ହିଁ ରହିଥାଏ। ତାହା ହିଁ ସେମାନଙ୍କ ପାଇଁ ଯଥେଷ୍ଟ ହୋଇଥାଏ। ଏଗୁଡ଼ିକ ମଧରୁ ଅନେକ ଗୋରୁଚରା ରାସ୍ତା ଓ ପରେ ଏହା ସାମାନ୍ୟ ବଡ଼ ହୋଇ *'କଚା'* ରାସ୍ତାରେ ପରିଣତ ହୋଇଥାଏ। ମାତ୍ର ଯେତେବେଳେ ହାତୀ ପିଠିର ପରିବହନ ବ୍ୟବସ୍ଥା ଉଠିଯାଇ ଲରୀ ଓ ଜିପ୍ ଗାଡ଼ିର ପ୍ରଚଳନ

ହେଲା, ସେତେବେଳେ ସଠିକ କଠିନ ପୃଷ୍ଠ ଯୁକ୍ତ ରାସ୍ତା ନିର୍ମାଣର ଆବଶ୍ୟକତା ପଡ଼ିଲା। ଆମେ ଯଦି ଗୋଟିଏ ମୁହୂର୍ତ୍ତ ଚିନ୍ତା କରିବା, ତେବେ ଆମେ ଜାଣିପାରିବା ଯେ ଯେଉଁ ଦେଶରେ ପର୍ବତମାଳା ଉପର ଦେଇ ଏକ ରାସ୍ତା ନିର୍ମାଣ କରାଯାଇଛି, ସେଠାରେ ଆଶାତୀତ ଭାବେ ବଡ଼ ଧରଣର ପରିବର୍ତ୍ତନ ଦେଖାଦେଇଛି।

ଆରମ୍ଭରୁ ଦେଖିଲେ ପ୍ରଥମତଃ ରାସ୍ତାର ପ୍ରାକୃତିକ ପ୍ରସ୍ତୁତିର ଆବଶ୍ୟକତା ରହିଛି। ଏଥିପାଇଁ ବହୁ ସଂଖ୍ୟକ ଶ୍ରମିକ ଏଠାରେ ଶିବିର ପକାଇ ବହୁ ଦିନ ରହିଥାନ୍ତି। ଯେହେତୁ ସେମାନେ ସେହି ସ୍ଥାନରେ ଅଳ୍ପ କିଛି ଦିନ ପାଇଁ ବସତିଠାରୁ ଦୂରରେ ରହିଥାନ୍ତି, ତେଣୁ ସେମାନେ ନିର୍ବିକାର ଭାବରେ ପରିପାର୍ଶ୍ୱରେ ମହଜୁଦ ଥିବା ସ୍ଥାନୀୟ ବନ୍ୟସମ୍ପଦ ନଷ୍ଟ କରିଥାନ୍ତି। ଗଛଗୁଡ଼ିକୁ କାଟି ଆଣି ଆଶ୍ରୟସ୍ଥଳ ନିର୍ମାଣ କରନ୍ତି ଓ ରୋଷେଇ ପାଇଁ ଜାଳେଣୀ ରୂପେ ବ୍ୟବହାର କରନ୍ତି। ଅତି ପ୍ରାଚୀନ କାଳରୁ ଭାରତୀୟ ସଂସ୍କୃତି ଅନୁସାରେ ପ୍ରତ୍ୟେକ ବ୍ୟକ୍ତି ଜଙ୍ଗଲକୁ ଯାଇ ଜାଳେଣୀକାଠର ସଂଗ୍ରହ କରିବା ପାଇଁ ସ୍ୱାଧୀନତା ପାଇଛି। କମ ଲୋକସଂଖ୍ୟା ଥିବାବେଳେ ଲୋକେ ଜାଳେଣୀକାଠ ରୂପେ ମୃତ ଓ ଶୁଖିଲା ଗଛ ଡ଼ାଳକୁ ସଂଗ୍ରହ କରୁଥିଲେ। ଏହା ଯଥାର୍ଥ ଥିଲା, ମାତ୍ର ଗତ ତିରିଶ ବର୍ଷ ମଧ୍ୟରେ ଲୋକସଂଖ୍ୟା ଦ୍ୱିଗୁଣିତ ହୋଇଯିବା ଦ୍ୱାରା ଦେଶରେ ଆବଶ୍ୟକତା ଅନୁସାରେ ଜାଳେଣୀକାଠର ଅଭାବ ପଡ଼ୁଛି। ଯାହା ଫଳରେ ଲୋକେ ଜୀବନ୍ତ ଗଛର ଡ଼ାଳକୁ ସମ୍ପୂର୍ଣ୍ଣ ଭାବେ କାଟି ଆଣି ଗଛର ଗଣ୍ଡିକୁ ଛାଡ଼ି ଦେଉଛନ୍ତି, ଯାହାଦ୍ୱାରା ଗଛଟି କିଛି ଦିନ ଭିତରେ ମରିଯିବ ଓ ସେମାନେ ସୁବିଧାରେ ସମ୍ପୂର୍ଣ୍ଣ ଗଛକୁ ହାଣି ଆଣି ପାରିବେ। ଏପରିକି ସେମାନେ କାଠ ସଂଗ୍ରହ କରିବାପାଇଁ ଗଛକୁ ମାରିଦେବାକୁ ଏହା ଦେହରେ ନିଆଁ ଲଗାଇ ଦେଉଛନ୍ତି। ତେଣୁ ଯେତେବେଳେ ଦଳେ ରାସ୍ତା ନିର୍ମାଣକାରୀ ଏକ ପାର୍ବତ୍ୟ ଅଞ୍ଚଳରେ ପ୍ରବେଶ କରୁଛନ୍ତି, ସେତେବେଳେ ତୁମକୁ ଦୃଢ଼ ନିଶ୍ଚିତ ହେବାକୁ ହେବ ଯେ ସେ ଅଞ୍ଚଳର ଗଛଗୁଡ଼ିକ ନିଶ୍ଚିତରୂପେ ନଷ୍ଟ ହେବ। ଯଦି ଠିକାଦାରମାନେ ଜାଳେଣୀର ବିକଳ୍ପ ବ୍ୟବସ୍ଥା କରିପାରିବେ, ତେବେ ଏହି ବୃକ୍ଷଗୁଡ଼ିକ ରକ୍ଷା କରାଯାଇ ପାରିବ। ଯଥାର୍ଥ କାରଣ ଦର୍ଶାଇବାକୁ ଗଲେ ଏହି ଲୋକମାନଙ୍କୁ ଜାଳେଣୀ ଯୋଗାଇ ଦିଆଯିବା ଆବଶ୍ୟକ। କିନ୍ତୁ ତା ପରିବର୍ତ୍ତେ ବସ୍ତୁତଃ ସେମାନଙ୍କୁ ମନଇଚ୍ଛା ଅମୂଲ୍ୟ ଜାତୀୟ ସମ୍ପତ୍ତିକୁ ନଷ୍ଟ କରିବା ଲାଗି ସ୍ୱାଧୀନତା ଦିଆଯାଉଛି।

ଏହିପରି ପର୍ବତପୃଷ୍ଠ ଧ୍ୱଂସକାରୀ ଜାଳେଣୀକାଠ ସଂଗ୍ରହ ପ୍ରକ୍ରିୟା ଦ୍ୱାରା ନଷ୍ଟ ହୋଇଥାଏ। ପ୍ରକୃତ ରାସ୍ତା ନିର୍ମାଣର ଗୁରୁକାର୍ଯ୍ୟ ଆରମ୍ଭ ହେବାର ବହୁ ପୂର୍ବରୁ ଏହି ପ୍ରକ୍ରିୟା ଆରମ୍ଭ ହୋଇ ରାସ୍ତା ନିର୍ମାଣ କାର୍ଯ୍ୟ ଶେଷ ହେବାଯାଏଁ ବହୁଦିନ ଧରି ଚାଲିଥାଏ।

ଏହା ଧ୍ୱଂସର ଗୋଟିଏ ଦିଗ। ଯାହାର ଫଳ ନଷ୍ଟକାରୀ ବୋଲି ରାସ୍ତା ନିର୍ମାଣକାରୀମାନେ ମଧ୍ୟ ମାନିଥାନ୍ତି। ଏହା ବ୍ୟତୀତ ରାସ୍ତା ନିର୍ମାଣ ମଧ୍ୟ ଧ୍ୱଂସକାରୀ ହୋଇଥାଏ। ଏହି ସମୟରେ ବିସ୍ତୀର୍ଣ୍ଣ ଅଞ୍ଚଳର ମାଟି ଓ ପଥରକୁ ସ୍ଥାନାନ୍ତରିତ କରିବାକୁ ହୋଇଥାଏ। ପର୍ବତ ପାର୍ଶ୍ୱରେ ବିସ୍ଫୋରଣ କରାଯାଇଥାଏ ଓ ବହୁ ଗଛ ମରିଥାନ୍ତି। ଅନେକ ଗଛର ଚେର ଉପୁଡ଼ିପଡ଼ି ଉପରକୁ ଦିଶୁଥାଏ ଓ ବିରାଟକାୟ ଗର୍ତ୍ତ ସୃଷ୍ଟି ହୋଇଥାଏ। ଉପରେ ପଡ଼ିଥିବା ମୃତ୍ତିକା ବର୍ଷା ଜଳରେ ଧୋଇ ହୋଇଯାଏ ଏବଂ ପ୍ରବଳ ବର୍ଷା ହେଲେ ବାରମ୍ବାର ମାଟି ଧସିଥାଏ। ବର୍ଷା ଋତୁରେ ସମ୍ବାଦପତ୍ରମାନେ ବହୁସଂଖ୍ୟାରେ ମାଟି ଧସି ଲୋକଙ୍କ ମୃତ୍ୟୁ, ବସ ଓଲଟିପଡ଼ିବା, ଯୋଗାଯୋଗ ଓ ଯାନବାହାନ ଚଳାଚଳ ବନ୍ଦ ବିଷୟରେ ସମ୍ବାଦ ପ୍ରକାଶ କରିଥାନ୍ତି। ଏପରିକି ଯେଉଁଠାରେ ମାଟି ଧସିବାଦ୍ୱାରା କୌଣସି ଲୋକକ୍ଷୟ ଘଟେ ନାହିଁ କିମ୍ବା ବସ ଓଲଟେ ନାହିଁ, ସେପରିସ୍ଥଳେ ମଧ୍ୟ ଏହା ଦେଶ ପକ୍ଷେ ଘୋର କ୍ଷତିକାରକ ହୋଇଥାଏ। ଏହାଦ୍ୱାରା ମୂଲ୍ୟବାନ ମୃତ୍ତିକା ଓ ବୃକ୍ଷରାଜି ଖସିଯାଇ ନଷ୍ଟ ହୋଇଯାଇଥାନ୍ତି।

ଯେଉଁଠାରେ ଉପରିସ୍ଥ ମୃତ୍ତିକା ନଷ୍ଟ ହୋଇଯାଇଥାଏ, ସେଠାରେ କୌଣସି ବୃକ୍ଷରାଜି ନ ଥାନ୍ତି। ଏହାର ଉଦାହରଣ ହେଉଛି ଅଧିକାଂଶ ମରୁଭୂମି, ଯେଉଁଠାରୁ ପବନଦ୍ୱାରା ଉପରିସ୍ଥ ଉର୍ବର ମୃତ୍ତିକା ଉଡ଼ିଯାଇଥାଏ ଓ ସେଠାରେ ଭବିଷ୍ୟତରେ ଆଉ କୌଣସି ଗଛ ସୃଷ୍ଟି ହୋଇପାରେ ନାହିଁ। ଉପରିସ୍ଥ ଉର୍ବର ମୃତ୍ତିକାକୁ ନୂତନଭାବେ ଏକ ଅନୁର୍ବର ଅଞ୍ଚଳରେ ସ୍ଥାପନ କରିବାକୁ ହେଲେ ଏହାକୁ ଉର୍ବର ଅଞ୍ଚଳରୁ ସାବଧାନତାର ସହ ନେଇ ଅନୁର୍ବର ଅଞ୍ଚଳରେ ସ୍ଥାପନ କରିବା ହିଁ ଏକମାତ୍ର ପନ୍ଥା। ଆମେ ପ୍ରକୃତରେ ଉପରିସ୍ଥ ମାଟିକୁ ତିଆରି କରିପାରିବା ନାହିଁ, କାରଣ ଏହି ମାଟି ହେଉଛି ଅସଂଖ୍ୟ ପତ୍ରରାଜି, ମୃତ ପଳିପରିବାର ଅଂଶ ଯାହାକି ବର୍ଷ ବର୍ଷ ଧରି ମାଟିରେ ମିଶିରହିବା ପରେ ଏହାକୁ ସୃଷ୍ଟି କରିଥାଏ। ବିଶେଷଜ୍ଞମାନେ ମତ ଦେଇଛନ୍ତି ଯେ ପୃଥିବୀପୃଷ୍ଠରେ ଏକ ଇଞ୍ଚ ବହଳର ଉର୍ବର ଉପରିସ୍ଥ ମୃତ୍ତିକା ସୃଷ୍ଟି ହେବାକୁ ପ୍ରାୟ ପାଞ୍ଚଶହରୁ ଏକ ହଜାର ବର୍ଷ ଯାଏଁ ଲାଗିଥାଏ। ତେଣୁ ଆମେ ଯେତେବେଳେ ଜାଣୁଛେ

ଯେ ଯେତେକୋଟି ଟଙ୍କା ଖର୍ଚ୍ଚ କଲେ ମଧ୍ୟ ଆମେ ଆମପାଇଁ ଉର୍ବର ମୃତ୍ତିକା କିଣିପାରିବା ନାହିଁ, ସେତେବେଳେ ଆମ ନିକଟରେ ଯେତିକି ଅଛି, ସେଗୁଡ଼ିକୁ ଆମେ ବ୍ୟବହାର ଓ ପୁନଃବ୍ୟବହାର କରିବା ଦରକାର ଏବଂ ଏହାର ସୁରକ୍ଷା ପାଇଁ, ଏପରିକି ଏଥିରୁ ଏକ କ୍ଷୁଦ୍ର ଶସ୍ୟ ଆକାରର ଅଂଶକୁ ନଷ୍ଟ କରିବାରୁ ସର୍ବଦା ନିବୃତ୍ତ ରହିବା ଆବଶ୍ୟକ।

ସେଇଥିପାଇଁ କୁହାଯାଇଥାଏ ଯେ ଆମେ ମୃତ୍ତିକାକୁ କ'ଣ ହରାଇପାରିବା ? ମୋଟ ଉପରେ ଯେତେବେଳେ କୌଣସି ପର୍ବତ ପାର୍ଶ୍ୱରୁ ଏକ ବଡ଼ ଖଣ୍ଡ ମୃତ୍ତିକା ଖସି ଆସେ, ଏହା ନିମ୍ନ ଅଞ୍ଚଳର ଯେ କୌଣସି ସ୍ଥାନରେ ଅଟକି ରହିଯାଏ। ଏହା ସେହି ପର୍ବତରେ ଥିଲେ ମଧ୍ୟ କେବଳ ସ୍ଥାନ ପରିବର୍ତ୍ତନ କରିଥାଏ। ଏହି ମୃତ୍ତିକା ଯଦି ଦେଶ ଭିତରର କୌଣସି ଅଞ୍ଚଳକୁ ସ୍ଥାନାନ୍ତରିତ ହୁଏ, ତେବେ କଣ ଏହା ଉପରେ କିଛି ପ୍ରଭାବ ପଡ଼େ ? ଏହାଦ୍ୱାରା ଗୋଟିଏ ସ୍ଥାନ କ୍ଷତିଗ୍ରସ୍ତ ହୋଇଥିବାବେଳେ ଅନ୍ୟ ସ୍ଥାନଟି ଲାଭବାନ୍ ହୁଏ।

ଯେ ପର୍ଯ୍ୟନ୍ତ ଆମର ମୃତ୍ତିକା ଖଣ୍ଡ ସମତଳ ଅଞ୍ଚଳରେ ରହି ବ୍ୟବହୃତ ହେଉଥାଏ (ବୃକ୍ଷରୋପଣ ପାଇଁ), ଏଥିପାଇଁ କୌଣସି ଚିନ୍ତା ନ ଥାଏ। ମାତ୍ର ଘଟଣା ହେଉଛି ଯେ ମୃତ୍ତିକା ଖଣ୍ଡ କେବେ ହେଲେ ଉପରକୁ ଯାଇପାରେ ନାହିଁ। ତେଣୁ ପଟ୍ଟାମାଟି ସବୁ ବେଳେ ଉପରୁ ନିମ୍ନ ଅଞ୍ଚଳକୁ ଆସିଥାଏ, ଯେ ପର୍ଯ୍ୟନ୍ତ ଏହା ସର୍ବନିମ୍ନ ସ୍ଥାନରେ ନ ପହଞ୍ଚିଛି, ଏହା ହୁଏତ ଏକ ନଦୀ ଶଯ୍ୟା ହୋଇପାରେ। ଯଦି ମୃତ୍ତିକା ନଦୀର ନିମ୍ନ ଅଞ୍ଚଳକୁ ଆସିଯାଏ, ଏହାକୁ ହୁଏତ ଆମେ ସବୁ ଦିନ ପାଇଁ ହରାଇଥାଉ। ବାସ୍ତବିକ ପଟ୍ଟାମାଟି ଅତିଶୀଘ୍ର ନଦୀ ଶଯ୍ୟାରେ ପହଞ୍ଚିଥାଏ। ପ୍ରବଳ ବର୍ଷା ସମୟରେ ଏହି ମାଟି ବର୍ଷା ଜଳରେ ମିଶି ଝରଣା ଦେହରେ ମିଶିଥାଏ ଓ ଝରଣାଜଳ ସେଠାରୁ ଆସି ନିକଟସ୍ଥ ନଦୀରେ ମିଶିଥାଏ। ନଦୀ ବା ଝରଣା ଜଳ ଯେତେ ବେଗଗାମୀ ହୋଇ ଗତି କରେ, ଏଥିରେ ମୃତ୍ତିକା ସେହି ଅନୁପାତରେ ଜୋରରେ ଗତି କରି ଏହାର ଜଳକୁ ଗୋଳିଆ କରିଥାଏ। ଯେତେବେଳେ ଏହା ଏକ ପ୍ରସାରିତ ସ୍ଥଳଭାଗ ପାଏ ଏବଂ ଏହାର ବେଗ କମିଯାଏ, ସେତେବେଳେ ମୃତ୍ତିକା ତଳକୁ ବସିଯିବାକୁ ସୁଯୋଗ ପାଏ ଏବଂ ଏହାଦ୍ୱାରା ନଦୀ ଶଯ୍ୟାକୁ ସାମାନ୍ୟ ଉଚ୍ଚା କରି ଦିଏ। ନଦୀ ଶଯ୍ୟାର ଏହି କ୍ରମ ଉଚ୍ଚତା ସୃଷ୍ଟି କରୁଥିବା ପଦାର୍ଥକୁ *ପଟୁମାଟି* କହନ୍ତି। ପ୍ରତିବର୍ଷ ଆମେ ସମ୍ମୁଖୀନ ହେଉଥିବା ବନ୍ୟାର ଏହା ହିଁ ମୁଖ୍ୟ କାରଣ। ଉତ୍ତର ଭାରତରେ 1978

ଓ 1980 ମସିହାରେ ଦେଖାଦେଇଥିବା ପ୍ରଳୟଙ୍କରୀ ବନ୍ୟା ହିଁ ନଦୀ ଶଯ୍ୟାରେ କ୍ରମାଗତ ପଟୁମାଟି ଜମିବା ଦ୍ୱାରା ହୋଇଥିଲା ଓ ପର୍ବତମାଳାରେ ମାଟିକୁ ବାନ୍ଧି ରଖୁଥିବା ଗଛର ଅଭାବ ଯୋଗୁଁ ପଟୁମାଟି ନଦୀ ଶଯ୍ୟାରେ ପଡ଼ିବା ବଢ଼ିଥିଲା ବୋଲି କୁହାଯାଇଛି। ଅସମୟରେ ପ୍ରବଳ ବର୍ଷା ଦ୍ୱାରା ବରଫାବୃତ ପର୍ବତମାଳାରୁ ବାହାରିଥିବା ବହୁ ନଦୀର ଜଳ କୂଳ ଲଘନ କରି ଗାଙ୍ଗେୟ ସମତଳ ଭୂମିର ଲମ୍ୱ ଓ ପ୍ରସ୍ଥରେ ଥିବା ବହୁ ଅଞ୍ଚଳକୁ ଜଳପ୍ଲାବିତ କରିଥାଏ।

ବନ୍ୟା ହିଁ କ୍ଷୟକ୍ଷତିର ଗୋଟିଏ ଦିଗ। ମାତ୍ର ଯେତେବେଳେ ନଦୀ ପଟୁମାଟି ଓ ପଙ୍କ ଦ୍ୱାରା ପୁଷ୍ଟ ହୋଇ ସମୁଦ୍ର ଆଡ଼କୁ ବହିଯାଏ, ସେତେବେଳେ ନଦୀକୂଳ ବନ୍ଦର ଗୁଡ଼ିକ ମଧ୍ୟ ପଟୁମାଟି ଓ ପଙ୍କରେ ଆକ୍ରାନ୍ତ ହୋଇଥାନ୍ତି ଯଦ୍ୱାରା ସବୁବେଳେ ବ୍ୟୟସାପେକ୍ଷ ଖନନ କାର୍ଯ୍ୟ କରିବାକୁ ହୋଇଥାଏ।

କ୍ରମାଗତ ମୂଲ୍ୟବାନ ଉପରିସ୍ଥ ମୃତ୍ତିକାକ୍ଷୟ, ନଦୀ ଶଯ୍ୟାରେ ପଟୁମାଟି ଜମିବା ଓ ପରିଣାମରେ ବନ୍ୟା ହେବା ଦ୍ୱାରା ଯେ କୌଣସି ଦେଶରେ ଅପବ୍ୟୟ ବୃଦ୍ଧି ପାଇଥାଏ। ମାତ୍ର ଗଭୀର ଭାବେ ଚିନ୍ତା କଲେ ଏହି ଚିତ୍ର ଯେ କେତେ ସର୍ବାଧିକ କ୍ଷତିକାରକ ତାହା ସହଜରେ ଜଣାପଡ଼େ। ଏହାକୁ ସଂରକ୍ଷଣ ନ କଲେ ଆମେ ଯେ କେବଳ ମୃତ୍ତିକା ହରାଉ ତାହା ନୁହେଁ, ବହୁ ପରିମାଣର ଭୂତଳ ଜଳ ମଧ୍ୟ ହରାଇଥାଉ। ଏହା କିପରି ଘଟେ ?

ଆଚ୍ଛା ! ଆମେ ଜାଣୁ ଯେ ଯେତେବେଳେ ଏକ ସମତଳ ଭୂଖଣ୍ଡରେ ବର୍ଷା ହୁଏ, ବର୍ଷାଜଳ ଏଠାରେ ଗଡ଼ାଣି ନ ଥିବାରୁ ଭୂତଳ ଏହାକୁ ଶୋଷି ନେବା ଯାଏଁ ଏହା ଭୂମି ଉପରେ ଜମି ରହେ। ଏହି ଜଳ ମାଟି ଭିତର ଦେଇ ତଳକୁ ତଳକୁ ଭେଦିଯାଇ ଏକ ଛୋଟ ବା ବଡ଼ ଭୂଗର୍ଭ ଜଳାଶୟ ବା ଜଳପୂର୍ଣ୍ଣ ସ୍ଥାନ ସହିତ ମିଶିବାଯାଏଁ ଗଡ଼ି ଚାଲେ। ଏହି ଭୂଗର୍ଭ ଜଳାଶ୍ରୟ ହିଁ ଆମର ମୁଖ୍ୟ ଜଳ ସମ୍ପଦ ସଂରକ୍ଷଣ କେନ୍ଦ୍ର। ଯେତେବେଳେ ଆମେ ଚାହୁଁ ଏକ କୂପ ଖୋଳି ଏହି ଜଳକୁ ଆଣି ବ୍ୟବହାରରେ ଲଗାଇ ଥାଉ। ଯାହା ହେଉ, ଏହିପରି ଅବସ୍ଥା ଗୋଟିଏ ଲଣ୍ଡା ପର୍ବତ ଅଞ୍ଚଳରେ ସମ୍ଭବ ହୁଏ ନାହିଁ କାରଣ ଏହି ସ୍ଥାନ ଗଡ଼ାଣିଆ ହୋଇଥିବାରୁ ପାଣି ଏଠାରେ ରହି ଭୂମି ତଳକୁ ଭେଦିପାରେ ନାହିଁ। ଏହା ପର୍ବତ ତଳକୁ ଖୁବ୍ ଜୋରରେ ନିଜ ସହିତ କିଛି ମୃତ୍ତିକା ଧରି ଗଡ଼ି ଆସେ।

ପର୍ବତ ତଳକୁ ଗଡ଼ି ଆସୁଥିବା ଜଳକୁ ଧରି ରଖି ଏହାକୁ ଭୂତଳକୁ

ଭେଦିଯିବା ପାଇଁ କେବଳ ଘଞ୍ଚ ବୃକ୍ଷରାଜି ହିଁ ସାହାଯ୍ୟ କରିପାରିବ। କିଛି ବର୍ଷ ଭିତରେ ବହୁ ପର୍ବତରୁ ବାହାରିଥିବା ଝରଣା ଶୁଖିଯିବାର କାରଣ ଦୁର୍ବୋଧ କିମ୍ୱା ଦୁର୍ଭାଗ୍ୟ ନୁହେଁ, ବରଂ ଏହା ସିଧା ସଳଖ ଭାବେ ପର୍ବତରୁ ଗଛ ସଂଖ୍ୟା କମିଯିବା ଯୋଗୁଁ ଘଟୁଛି।

ଅଶ୍ୱର ଖୁରାରୁ କଣ୍ଟା ଖସିଯିବାରୁ ଯୁଦ୍ଧରେ ପରାଜିତ ହେବା ଭଳି ଥିବା ଗଳ୍ପ ପରି ବହୁ ପ୍ରାକୃତିକ ବିଭୀଷିକା କ୍ଷୁଦ୍ର କାରଣ ଯୋଗୁଁ ସଂଗଠିତ ହୋଇଥାଏ। ପ୍ରକୃତି ହିଁ ଜଟିଳ, ଦୁର୍ବୋଧ ଯେଉଁଠାରେ ପ୍ରତ୍ୟେକ ଅନ୍ୟ ଉପରେ ନିର୍ଭରଶୀଳ। ଯଦି ଏକ କ୍ଷୁଦ୍ର ପଥରଖଣ୍ଡ କୌଣସି ଏକ ଆକୃତିରୁ ଖସିଯାଏ ତେବେ ସମଗ୍ର ପଦାର୍ଥର ଭାରସାମ୍ୟ ନଷ୍ଟ ହୁଏ ଓ ଏହା ଭୁଷୁଡ଼ିପଡ଼େ କିମ୍ୱା ଏହାର ଆକୃତିରେ ପରିବର୍ତ୍ତନ ଘଟେ। ଘଞ୍ଚ ବୃକ୍ଷରାଜି ଦ୍ୱାରା ଆବୃତ ପର୍ବତ ଆମକୁ ପ୍ରଚୁର ଜଳ ଯୋଗାଉଥିବାର ଆମେ ଦେଖିଥାଉ। ଏହା ହୁଏତ ଏକ ଝରଣା ଆକାରରେ କିମ୍ୱା ଭୂତଳ ଜଳ ଆକାରରେ ବା ଚିରସ୍ରୋତା ପରିଷ୍କାର ନଦୀ ଦ୍ୱାରା ଆମକୁ ଜଳ ଯୋଗାଇଥାଏ। ଗଛକୁ କାଟି ଦେଲେ ଝରଣା ବା ଭୂତଳ ଜଳ ଶୁଖିଯିବ, ନଦୀଗୁଡ଼ିକ ପଙ୍କୁଆ ହୋଇଯିବ ଓ ବନ୍ୟା ସୃଷ୍ଟି ହୋଇ ବନ୍ଦର ବା ପୋତାଶ୍ରୟରେ ପଟୁମାଟି ଜମିବା ସମସ୍ୟା ଦେଖାଦେବ। ସବୁଠାରୁ ବେଶୀ ମୂଲ୍ୟବାନ ଉପର ମାଟି ଉଭେଇଯିବ। ଆମେ ପରେ ଏହି ଭୁଲକୁ ସୁଧାରିବାକୁ ପର୍ବତରେ ବୃକ୍ଷରୋପଣ କରିବାକୁ ଚେଷ୍ଟାକରି ମଧ୍ୟ ବିଫଳ ହେବା। ଏହା ହେଉଛି ଏପରି ଏକ ଅବସ୍ଥା, ଯେତେବେଳେ ପ୍ରତ୍ୟେକ ବସ୍ତୁ ଅନ୍ୟକୁ ସଂକ୍ରମିତ କରିବ, ଯାହାକୁ ବି ପ୍ରକୃତିର ଭାରସାମ୍ୟ ବୋଲି କୁହାଯାଏ।

ଗତ ଚାଳିଶ ବର୍ଷ ଭିତରେ ସରକାର ବହୁ ଜଳବିଦ୍ୟୁତ ଯୋଜନା ନିର୍ମାଣ କରିଛନ୍ତି। ଏହାର ଅର୍ଥ ହେଉଛି ନଦୀଶଯ୍ୟାରେ ଏକ ବିରାଟ ନଦୀବନ୍ଧ ନିର୍ମାଣ କରି ଜଳ ସଂଗ୍ରହ କରି ଏକ କୃତ୍ରିମ ଜଳାଶୟ ବା ହ୍ରଦ ସୃଷ୍ଟି କରିବା। ଜଳ ଉଦ୍‌ଗୀରଣ ଜନିତ ଶକ୍ତିରୁ ବିଦ୍ୟୁତଶକ୍ତି ଉତ୍ପାଦନ କରାଯାଇଥାଏ। କାଗଜପତ୍ରରେ ଏହି ଯୋଜନା ସେହି ଅଞ୍ଚଳର ଉନ୍ନତି ତଥା ବିଦ୍ୟୁତଶକ୍ତି ଉତ୍ପାଦନ ଦିଗରେ ଭଲ କାମ କରିଥାଏ, ମାତ୍ର ଅଭିଜ୍ଞତାରୁ ଦେଖାଯାଇଛି ଯେ ଏହି ପ୍ରକାର ବିରାଟ ଯୋଜନା ଯୋଗୁଁ ସେ ଅଞ୍ଚଳରେ ପ୍ରାକୃତିକ ପରିବେଶ ଉପରେ ବହୁ ଅଦୃଶ୍ୟ କ୍ଷତିକାରକ ଅନିଷ୍ଟକର ଅବସ୍ଥା ସୃଷ୍ଟି ହୋଇଥାଏ। ଏହା ମଧ୍ୟ ସମ୍ଭବ ଯେ ଏହି ଯୋଜନାରୁ ରାତାରାତି ବା

ଖୁବ୍ ଶୀଘ୍ର ଆମେ ବହୁ ଆଶା କରିବା ଦ୍ୱାରା ପ୍ରକାରାନ୍ତରେ ଏହାର ବହୁ କ୍ଷତି କରିଥାଉ। ତେଣୁ ଆଶୁ ଫଳ ଆଶା ନ କରି ଆସ୍ତେ ଆସ୍ତେ କାମ କରିବା ଉଚିତ। ଏହି ସବୁ ଯୋଜନାର ପରବର୍ତ୍ତୀ ପର୍ଯ୍ୟାୟରେ ଦେଖାଯାଇଛି ଯେ କ୍ଷୁଦ୍ର, ସୁଚିନ୍ତିତ ଯୋଜନା ହିଁ ସବୁବେଳେ ସୁନ୍ଦର।

କ୍ଷୁଦ୍ର ଓ ବୃହତ୍ ନଦୀବନ୍ଧ ଯୋଜନାର ଅପକାର ଓ ଉପକାର ବିଷୟରେ ଏବେ ଆଲୋଚନା କରିବା। ଧରାଯାଉ ଏଥିରୁ ଉପକାର ମିଳେ ବୋଲି ଆମେ ଧରିନେବା। କେତେ ଘନଫୁଟ ଜଳରୁ ଆମେ ବହୁ କିଲୋୱାଟ ବିଦ୍ୟୁତଶକ୍ତି ପାଇଥାଉ। ମାତ୍ର ଏଥିରୁ ମିଳୁଥିବା ଅପକାର ସମଗ୍ର ଯୋଜନାକୁ ବ୍ୟର୍ଥ କରି ଦେଇପାରେ।

ଯୋଜନା କାର୍ଯ୍ୟର ପ୍ରଥମ ଚିହ୍ନ ହେଉଛି କାର୍ଯ୍ୟକ୍ଷେତ୍ର ଯାଏଁ ଏକ ରାସ୍ତା ନିର୍ମାଣ କରିବା। ଆମେ ଜାଣୁ ଯେ ରାସ୍ତା ନିର୍ମାଣ ସମୟରେ ଓ ପରେ କେତେ ବିପୁଳ କ୍ଷତି ସହିବାକୁ ହୋଇଥାଏ। ତେଣୁ ଏହା ଜାଣିବା ଯଥେଷ୍ଟ ସହଜ ହେବ ଯଦି ଆମେ ସେହି ଅଞ୍ଚଳ ଉପର ଦେଇ ଏକ ହେଲିକପଟର୍‌ରେ ଯିବା। ଆକାଶକୁ ରାସ୍ତା ଯାଇଥିବା ବାଟରେ ଜଙ୍ଗଲ କିପରି ଅପେକ୍ଷାକୃତ ପତଳା ହୋଇଯାଇଛି ତାହା ସହଜରେ ଦେଖିପାରିବା।

ପର୍ବତର ସବୁଠାରୁ ବହଳିଆ ବୃକ୍ଷରାଜି ସାଧାରଣତଃ ନିରାପଦାପୂର୍ଣ୍ଣ ଉପତ୍ୟକାରେ ହିଁ ରହିଥାଏ। ତେଣୁ ନଦୀବନ୍ଧ ନିର୍ମାଣ କରି ଏକ କୃତ୍ରିମ ହ୍ରଦ ସୃଷ୍ଟି କରିବା ଯୋଜନା କରିବାଦ୍ୱାରା ସେ ଅଞ୍ଚଳର ସବୁଠାରୁ ସୁନ୍ଦର ଜଙ୍ଗଲ ସମ୍ପଦକୁ ପାଣିରେ ବୁଡ଼ାଇ ନଷ୍ଟ କରି ଦିଆଯାଏ। ଏହାଦ୍ୱାରା ହଜାର ହଜାର ବୃକ୍ଷ, ଉଦ୍ଭିଦ ଓ ଲତା ନଷ୍ଟ ହୋଇଥାଏ। ସାଧାରଣତଃ ଏହି ହ୍ରଦରେ ପାଣି ଆସିବା ପୂର୍ବରୁ ଏହି ଗଛଗୁଡ଼ିକୁ କାଟିଦେଇ କାଠକୁ ବିକ୍ରୀ କରି ଦିଆଯାଏ। ମାତ୍ର ଏହାଦ୍ୱାରା ଥରକ ପାଇଁ ଆମେ ଏହି ବୃକ୍ଷରୁ ଲାଭବାନ ହୋଇଥାଉ, କିନ୍ତୁ ଯଦି ଏହି ଜଙ୍ଗଲକୁ ନଷ୍ଟ ନ କରି ଛାଡ଼ି ଦିଆଯାଏ, ତେବେ ଆମେ ଏଥିରୁ କ୍ରମାଗତ ପ୍ରଚୁର କାଠ ସହ ବହୁ ଜଙ୍ଗଲଜାତ ଦ୍ରବ୍ୟ ପାଇ ପାରିଥାନ୍ତେ।

ପ୍ରକୃତ ସତ୍ୟ ଘଟଣା ହେଉଛି, ଏହି ସ୍ଥାନରେ ଜଳ ପ୍ରବେଶ କରିବାର ବହୁ ପୂର୍ବରୁ ନଷ୍ଟ ହେବାକୁ ଥିବା ଏହି ଜଙ୍ଗଲକୁ ଲୁଟି ନିଆଯାଇଥାଏ। ଏହି ନଦୀବନ୍ଧ ତିଆରି କରିବାକୁ ବହୁ ବର୍ଷ ଲାଗେ ଓ କର୍ମଚାରୀମାନେ ଏଠାରେ ବହୁଦିନ ଶିବିର ପକାଇ ରହିଥାନ୍ତି। ଜାଳେଣୀ ପାଇବାକୁ କୌଣସି

ବ୍ୟବସ୍ଥା ଏଠାରେ ନ ଥିବାରୁ ସେମାନେ କଣ ସ୍ଥାନୀୟ ଗଛକୁ କାଟୁ ନ ଥିବେ ବୋଲି ଆମେ କହିପାରିବା ?

ଆମ ଯୁକ୍ତିର ସତ୍ୟତା ଜାଣିବାକୁ ପଶ୍ଚିମଘାଟ ପର୍ବତମାଳାର 'ସାଇଲେଣ୍ଟ ଭ୍ୟାଲି' ବିଷୟରେ ଆଲୋଚନା କରାଯାଉ। ଏଠାରେ ବହୁ ଅଞ୍ଚଳ ବୁଡ଼ିଯିବାର ଥିଲା ଓ ସଂରକ୍ଷଣକାରୀଙ୍କ ଦ୍ୱାରା ଏଥିପାଇଁ ବହୁ ଆନ୍ଦୋଳନ ମଧ୍ୟ ହୋଇଥିଲା। ଏହି ଯୋଜନାରେ ତିନିଶହ ନବେ ଫୁଟ ଉଚ୍ଚ ଓ ସାତଶହ କୋଡ଼ିଏ ଫୁଟ ଚଉଡ଼ାର ଏକ ବନ୍ଧ ନିର୍ମାଣ କରାଯାଇ ଏଥିରୁ ଶହେ କୋଡ଼ିଏ ମେଗାୱାଟ୍ ବିଦ୍ୟୁତ ଶକ୍ତି ଉତ୍ପାଦିତ ହେବା ସଙ୍ଗେ ସଙ୍ଗେ ପ୍ରାୟ ପାଞ୍ଚ ହଜାର ଏକର ଜମି ଜଳସେଚିତ ହେବ। ମାତ୍ର ସଂରକ୍ଷଣକାରୀ ମାନେ ନିଶ୍ଚିତ ଥିଲେ ଯେ ଏହି ନଦୀବନ୍ଧ ନିର୍ମାଣ ଦ୍ୱାରା ଯାହା କ୍ଷତି ହେବ, ତାହା ଏଥିରୁ ମିଳୁଥିବା ଲାଭଠାରୁ ଅଧିକ ନୁହେଁ। ଏହାର ଆୟ ବ୍ୟୟ ଫର୍ଦ୍ଦ ଅତି ସହଜ। ସାଇଲେଣ୍ଟ ଭ୍ୟାଲି ନଦୀ ବନ୍ଧ ଯୋଜନାଦ୍ୱାରା ବୁଡ଼ିଯାଇ ନଷ୍ଟ ହେଉଥିବା ଚିରହରିତ ଜଙ୍ଗଲ ସମ୍ପଦର ସୃଷ୍ଟି ପ୍ରାୟ ହଜାର ହଜାର ବର୍ଷ ତଳେ ହୋଇଥିଲା ଏବଂ ଏ ପ୍ରକାର ଜଙ୍ଗଲ ସାରା ଭାରତରେ ଖୁବ କମ୍ ସ୍ଥାନରେ ଦେଖାଯାଏ। ମାତ୍ର ଥରେ ଏହି ଜଙ୍ଗଲ ସମ୍ପଦ ବୁଡ଼ିଯିବା ଅର୍ଥ ଚିରଦିନ ପାଇଁ ବହୁ ବୃକ୍ଷରାଜି ଯେ କେବଳ ନଷ୍ଟ ହୋଇଯିବ, ତାହା ନୁହେଁ ବରଂ ବହୁ ମୂଲ୍ୟବାନ ଉଦ୍ଭିଦ ଯେଉଁମାନଙ୍କ ବିଷୟରେ ଆଜି ସୁଦ୍ଧା ଗବେଷଣା ହୋଇ ନାହିଁ, ସେମାନେ ମଧ୍ୟ ସବୁ ଦିନ ପାଇଁ ଉଭେଇ ଯିବେ।

ସୌଭାଗ୍ୟବଶତଃ ସଂରକ୍ଷଣକାରୀଙ୍କ ଚାପ ଫଳରେ ଏହି ଯୋଜନା କାର୍ଯ୍ୟ ବନ୍ଦ ରହିଛି।

ଏପରିକି ଆମ ସହର ଓ ନଗର ମାନଙ୍କରେ ଯେଉଁଠାରେ ପୁଲିସବାହିନୀ ପ୍ରତି କୋଣରେ ସଜାଗ ରହିଛନ୍ତି, ସେଠାରେ ମଧ୍ୟ ଆମେ ଜାତୀୟ ସମ୍ପତ୍ତିର ସୁରକ୍ଷା ଓ ସମ୍ମାନକକ୍ଷେ ସଚେତନ ନୋହୁଁ। ଏପରି ସ୍ଥଳେ ଲୋକେ ନିଜେ ଶୃଙ୍ଖଳିତ ହୋଇ ଜଙ୍ଗଲ ଭିତରେ ଥିବା ପ୍ରାକୃତିକ ସମ୍ପଦକୁ ନଷ୍ଟ କଲେ ଆମେ ଦୋଷାବହ ବୋଲି କାହିଁକି କହିବା।

ପ୍ରକୃତରେ ଯୋଜନା କାର୍ଯ୍ୟ ନିର୍ମାଣ ବେଳେ ପରିବେଶ ସୁରକ୍ଷା ପ୍ରତି ଅବହେଳା ଯୋଗୁଁ ଯୋଜନାର ଜୀବନକାଳ ସୀମିତ ହୋଇଥାଏ। ଜଙ୍ଗଲ ସମ୍ପଦ ଶ୍ରମିକମାନଙ୍କ କାର୍ଯ୍ୟଦ୍ୱାରା ପତଳା ହେବା ସଙ୍ଗେ ସଙ୍ଗେ ଗତ ପରିଚ୍ଛେଦର ଆଲୋଚନା ଅନୁଯାୟୀ ପର୍ବତପାର୍ଶ୍ୱସ୍ଥ ମୃତ୍ତିକାର ସଂରକ୍ଷଣ କରିପାରେ ନାହିଁ।

ତେଣୁ ମୃତ୍ତିକା କୃତ୍ରିମ ହ୍ରଦ ଭିତରକୁ ଧୋଇଯାଏ। ପର୍ବତପାର୍ଶ୍ୱ କ୍ରମଶଃ କ୍ଷୟ-ପ୍ରାପ୍ତ ହୋଇ ସବୁଦିନ ପାଇଁ ବଡ଼ଗଛ ସୃଷ୍ଟି କରିବାରେ ଅସମର୍ଥ ହୋଇଥାଏ। ହ୍ରଦ ଭିତରେ ଖୁବ ଶୀଘ୍ର ପଙ୍କ ଜମିଯାଏ ଓ ପାଞ୍ଚ ବର୍ଷ ପରେ ଦେଖାଯାଏ ଯେ ଯୋଜନା ଅନୁସାରେ ହ୍ରଦର ଜଳଧାରଣ କ୍ଷମତା ଯାହା ଥାଏ, ତାହା ଅଧା ହୋଇଯାଇଛି। ପରବର୍ତ୍ତୀ ପାଞ୍ଚ ବର୍ଷ ପରେ ଦେଖାଯାଏ ଯେ ଏହାର ଜଳଧାରଣ କ୍ଷମତା ଏତେ କମିଯାଇଛି ଯେ ଏହା କୌଣସି କାମରେ ଲାଗିପାରିବ ନାହିଁ। ତେଣୁ ବିନା ଲାଭରେ ବିସ୍ତୃତ ଅଞ୍ଚଳର ଜଙ୍ଗଲ ବୁଡ଼ିଯାଏ, ବଡ଼ ବଡ଼ ପର୍ବତାଞ୍ଚଳ ଲଣ୍ଡା ହୋଇଯାଏ, ହଜାର ହଜାର ଜଙ୍ଗଲଜୀବ ମୃତ୍ୟୁବରଣ କରିଥାନ୍ତି। ଏହା ହିଁ ବିଗତ ତିରିଶ ବର୍ଷ ଭିତରେ ନିର୍ମିତ ହୋଇଥିବା ବହୁ ବଡ଼ ବଡ଼ ନଦୀବନ୍ଧ ଯୋଜନାର ନମୁନା।

ଗତ କେତେବର୍ଷ ଧରି ନଦୀ ଅବବାହିକା ଅଞ୍ଚଳର ସଂରକ୍ଷଣ ଓ ଜଙ୍ଗଲ ସୃଷ୍ଟି ପାଇଁ ଅର୍ଥ ବରାଦ କରାଯାଇଥିଲା। ପରେ ମୁଦ୍ରାସ୍ଫୀତି ଘଟିବାରୁ ଓ ଖର୍ଚ୍ଚକାଟର ଆବଶ୍ୟକତା ଉପଲବ୍ଧି କରାଯିବାରୁ ନୂତନ ଜଙ୍ଗଲ ସୃଷ୍ଟିର ଆବଶ୍ୟକତାକୁ ସମସ୍ତେ ଭୁଲିଗଲେ। ପ୍ରାୟ ପ୍ରତ୍ୟେକ କ୍ଷେତ୍ରରେ ବୁଡ଼ି ଅଞ୍ଚଳର ଲୋକଙ୍କୁ ଅବବାହିକା ଅଞ୍ଚଳରେ ଥଇଥାନ କରାଯିବା ଦ୍ୱାରା ଯାହା କିଛି ଗଛ ସେଠାରେ ଥିଲା ତାହା ସମ୍ପୂର୍ଣ୍ଣ ନଷ୍ଟ ହୋଇଗଲା। ଏଥିରୁ ଜଣାଯାଉଛି ଯେ ଆକସ୍ମିକ କାର୍ଯ୍ୟକଳାପ ଦ୍ୱାରା ଜଳଭଣ୍ଡାରରେ ଖୁବ ଶୀଘ୍ର ପଟୁମାଟି ଜମିଯାଏ ଏବଂ ଏହାର କାର୍ଯ୍ୟକାଳ ଖୁବ୍‌ଶୀଘ୍ର ଶେଷ ହୋଇଯାଇ ମୂଳ ଯୋଜନାକୁ ଅକାମୀ କରିଦିଏ।

ଆମ ଦେଶରେ ନିର୍ମିତ ହୋଇଥିବା ଚାରିଶହ ପଇଁତିରିଶଟି ନଦୀବନ୍ଧ ଯୋଜନା ମଧ୍ୟରୁ ତେରଟି ସମ୍ପୂର୍ଣ୍ଣ ଭାବେ ଅକାମୀ ହୋଇପଡ଼ିଛି ବୋଲି କୁହାଯାଉଛି। ତନ୍ମଧ୍ୟରେ କେଦା ଡ୍ୟାମ, ପଞ୍ଚେଟ ଡ୍ୟାମ, ନାନକ ସାଗର, ଚିକ୍ ହୋଲ୍, ଦନ୍ତିୱାଡ଼ା, ଏସିଏସ ପ୍ରମୁଖ ପ୍ରଧାନ। ଏହା ବ୍ୟତୀତ ଅନେକ ଆଂଶିକ ଭାବେ ଅକାମୀ ହୋଇଗଲାଣି। ବୃହତ୍ ନଦୀବନ୍ଧ ଯୋଜନାରେ ଦୁର୍ଘଟଣା ଅଧିକ। ଭଦ୍ରଧାରା ନଦୀବନ୍ଧ ପ୍ରାୟ ପଚାଶ ବର୍ଷ ତଳେ ନିର୍ମିତ ହୋଇଥିଲା। ମାତ୍ର ୧୭୬୨ ମସିହାରେ ଏଥିରୁ ଆତଙ୍କଜନକ ଭାବେ ପାଣି ଝରିଲା। ନିର୍ମାଣ ହେବାର ଦଶମାସ ଭିତରେ ବୀର ନଦୀବନ୍ଧରେ ଦୁଇଟି ବଡ଼ ଫାଟ ଦେଖାଦେଇଥିଲା। କୋଇନାଠାରେ ଘଟିଥିବା ଭୟାବହ ଭୂମିକମ୍ପ ଏଠାରେ ନିର୍ମାଣ କରାଯାଉଥିବା ନଦୀବନ୍ଧ ଯୋଗୁଁ ସୃଷ୍ଟି ହେଲା ବୋଲି

ଜଣା ପଡ଼ିଥିଲା। କାରଣ ନଦୀବନ୍ଧ ନିର୍ମାଣ ଦ୍ୱାରା ସେ ଅଞ୍ଚଳର ଭୂତତ୍ତ୍ୱ ଉପରେ ଏହାର ପ୍ରଭାବ ଓ ଚାପ ସୃଷ୍ଟି ହୋଇଥାଏ ଯାହାକୁ ଜାଣିବା ଅତ୍ୟାଧୁନିକ ପ୍ରଣାଳୀରେ ମଧ୍ୟ ସମ୍ଭବ ହେଉନାହିଁ। ସବୁଠାରୁ ଦୁଃଖଦ ଘଟଣା ହେଉଛି ଭାରତରେ ତିଆରି ହୋଇଥିବା ସମୁଦାୟ ନଦୀବନ୍ଧର ଶତକଡ଼ା ନଅ ଦଶମିକ ଦୁଇଭାଗ ବନ୍ଧରେ ଫାଟ ସୃଷ୍ଟି ହେବା ଯାହାକି ପୃଥିବୀରେ ଏହି କ୍ଷେତ୍ରର ଅନୁପାତଠାରୁ ଦୁଇଗୁଣ ଅଧିକ।

ଶେଷରେ, ଯେଉଁ ଲୋକେ ଏହି ନଦୀବନ୍ଧ ଯୋଜନାଦ୍ୱାରା ଆକ୍ରାନ୍ତ ହୋଇଥାନ୍ତି, ସେମାନଙ୍କ ମନରେ ଧାରଣା ସୃଷ୍ଟି ହୋଇଥାଏ ଯେ ଏହି ଯୋଜନାଦ୍ୱାରା ଭବିଷ୍ୟତରେ ସେମାନେ ଉପକାର ଅପେକ୍ଷା ଅଧିକାର ଅପକାର ପାଇବେ। ଉଦାହରଣ ସ୍ୱରୂପ, ଟେହେରୀଠାରେ ନିର୍ମିତ ହୋଇଥିବା ବିରାଟ ନଦୀବନ୍ଧକୁ ସ୍ଥାନୀୟ ଲୋକେ ବିରୋଧ କରିଥିଲେ। ଏହି ନୂତନ ନଦୀବନ୍ଧ ଦ୍ୱାରା ଟେହେରୀ ସହର ଜଳମଗ୍ନ ହେବ, ଏହା ବ୍ୟତୀତ ବାଇଶିଟି ଗ୍ରାମ ସମ୍ପୂର୍ଣ୍ଣ ଓ ଛଅସ୍ତରୀଟି ଗ୍ରାମ ଆଂଶିକ ଭାବେ ଜଳମଗ୍ନ ହେବ। ଏହା ଅର୍ଥ ନଅ ହଜାର ଏକର କୃଷି କ୍ଷେତ୍ର ନଷ୍ଟ ହେବ। ଷାଠିଏ ହଜାର ଲୋକ ଗୃହଶୂନ୍ୟ ହୋଇ ଅନ୍ୟତ୍ର ଯିବେ। ଉତ୍ତରାଖଣ୍ଡର ଏକ ବିସ୍ତୀର୍ଣ୍ଣ ଉପତ୍ୟକାକୁ ଏହି ହ୍ରଦ ମାଡ଼ି ବସିବ। ସ୍ଥାନୀୟ ଲୋକେ ଏକ ସଂଘର୍ଷ ସମିତି ଗଠନ କରି ଏହି ନଦୀବନ୍ଧ ନିର୍ମାଣକୁ ବିରୋଧ କରୁଛନ୍ତି। ମାତ୍ର ସବୁଠାରୁ ଆଶ୍ଚର୍ଯ୍ୟର ବିଷୟ ହେଉଛି, ସେମାନଙ୍କର ବିରୋଧ କୌଣସି ପ୍ରକାର କ୍ଷତି ବା ଅସୁବିଧା ଯୋଗୁଁ ନୁହେଁ, ବରଂ ଅନ୍ୟ ନଦୀବନ୍ଧ ଯୋଜନାର ଇତିହାସ ଯୋଗୁଁ ହୋଇଛି। ଅନ୍ୟ କ୍ଷେତ୍ରରେ ଯାହା ସବୁ ସେମାନଙ୍କୁ ପ୍ରତିଶ୍ରୁତି ଦିଆଯାଏ, ତାହା ପୂରଣ କରାଯାଏନାହିଁ। ଏହା ବ୍ୟତୀତ ଏହି ବିରାଟ ଯୋଜନା ପ୍ରକୃତ ପକ୍ଷେ ନିର୍ମାଣ କରାଯିବା ଯୋଗୁଁ ସେମାନେ ବହୁ ଅସୁବିଧାର ସମ୍ମୁଖୀନ ହୋଇଥାନ୍ତି। ଉଦାହରଣ ସ୍ୱରୂପ, ସ୍ଥାନୀୟ ପର୍ବତମାଳାର ଅବସ୍ଥିତି ଦେଖି ସଂଘର୍ଷ ସମିତି ପକ୍ଷରୁ ଉଲ୍ଲେଖ କରାଯାଇଛି ଯେ ଏଠାରେ ହଜାର ହଜାର ଏକର ଅଞ୍ଚଳରେ ବହୁ ଜଳ ମାଡ଼ି ରହିଲେ ଭୂମିକମ୍ପ ହେବାର ସମ୍ଭାବନା ରହିଛି।

ଅଧିକନ୍ତୁ ସମିତି ଏହି ପ୍ରକାର ପଥୁରିଆ ମୃତ୍ତିକା ଦେଖି ଆଶଙ୍କା ପ୍ରକାଶ କରିଛନ୍ତି ଯେ, ଦିନେ ହୁଏତ ଅନ୍ୟ ନଦୀବନ୍ଧ ପରି ଏହି ବନ୍ଧରେ ଫାଟ ସୃଷ୍ଟି ହେବ। ସାଧାରଣତଃ ନଦୀ ବନ୍ଧ ଯେତେ ବଡ଼ ହେବ, ସୃଷ୍ଟି ହେଉଥିବା ଫାଟ ଏଥିରେ ସେତେ କମ୍ କ୍ଷତି କରିବ। ଶେଷରେ ସମିତି

ତରଫରୁ ବିକ୍ଷୋଭ ପ୍ରଦର୍ଶନ କରାଯାଇ ନିକଟବର୍ତ୍ତୀ ଅଞ୍ଚଳରେ ଭଲ ଜଙ୍ଗଲ ସମ୍ପଦ ନ ଥିବା ଓ କ୍ରମାଗତ ପଟୁମାଟି ସମସ୍ୟା ବିଷୟରେ ଉଲ୍ଲେଖ କରାଯାଇଛି ।

ଏହି ଅଞ୍ଚଳରେ ନିର୍ମାଣ ହେବାକୁ ଥିବା ଅନେକ ନଦୀ ବନ୍ଧ ଭିତରୁ ଡେହେରୀ ନଦୀବନ୍ଧ ପ୍ରଥମ । ମାତ୍ର ଏହା ଶେଷ ହେବାକୁ ପ୍ରାୟ ଦଶ ବର୍ଷ ଲାଗିବ । ବର୍ତ୍ତମାନ ପରି ମୁଦ୍ରାସ୍ଫୀତି ସମୟରେ ଏହି ନଦୀବନ୍ଧ ପାଇଁ ଯୋଜନା ଅର୍ଥର ବହୁ ପରିମାଣ ଯେ ଖର୍ଚ୍ଚ ହେବ ଏଥିରେ ଦ୍ୱିରୁକ୍ତି ନାହିଁ । କିମ୍ୱା ବନୀକରଣ ପାଇଁ ଯେତିକି ଅର୍ଥ ବରାଦ ରହିଛି ତାହା ଯେ ଅନ୍ୟ ଦିଗରେ ଖର୍ଚ୍ଚ ନ ହେବ ତାହା କିଏ କହିବ ?

ସ୍ଥାନୀୟ ବାସିନ୍ଦା ଏକ ଆମୋଦଦାୟକ, ଉତ୍ସାହଜନକ ଭବିଷ୍ୟତ ପାଇଁ ସ୍ୱର ଉତ୍ତୋଳନ କରୁଥିବା ବେଳେ ଏହି ଯୋଜନା ସେମାନଙ୍କୁ ବହୁ କ୍ଷତି ଓ ଚିନ୍ତାଗ୍ରସ୍ତ କରିଦେଇଛି । ନିକଟରେ ଗଡ଼ୱାଲ କୁମାୟୁଁ ପର୍ବତ ନିକଟରେ ସୃଷ୍ଟି ହୋଇଥିବା "ଚିପ୍‌କୋ" ଆନ୍ଦୋଳନ ଲୋକଙ୍କ ଆଖି ଖୋଲି ଦେଇଛି ଓ ଚିନ୍ତାଧାରା ବଦଳାଇ ଦେଇଛି । ପର୍ବତାଞ୍ଚଳରେ ବାସ କରୁଥିବା ଲୋକେ ଏବେ ଗଛର ପ୍ରତ୍ୟକ୍ଷ ଓ ପରୋକ୍ଷ ଆବଶ୍ୟକତା ବିଷୟରେ ସଚେତନ ହେଲେଣି । ତେଣୁ ଯେତେବେଳେ ବଡ଼ ବଡ଼ କାଠ ବ୍ୟବସାୟୀ ସେମାନଙ୍କ ପାଇଁ ଉଦ୍ଦିଷ୍ଟ ଥିବା ଗଛକୁ ଛାଡ଼ି ଅନ୍ୟ ଗଛକୁ କାଟୁଛନ୍ତି ସେତେବେଳେ ସ୍ତ୍ରୀ, ପୁରୁଷ ଏକାଠି ହୋଇ ସେମାନଙ୍କ ପ୍ରତିରୋଧ କରି ଗଛକୁ ରକ୍ଷା କରୁଛନ୍ତି । ସେମାନେ ଗଛକୁ ଚଢ଼ିଯାଇ କିମ୍ବା କଣ୍ଟ୍ରାକ୍ଟରର କୁରାଢ଼ୀ ଆଗରେ ନିଜ ଶରୀରକୁ ରଖି ଏପରି କରୁଛନ୍ତି । ଲୋକେ ଜାଣିଲେଣି ଯେ, କେବଳ ଜଳଯୋଗାଣ ନୁହେଁ ଜାଳେଣୀ ଓ ଜୀବନଧାରଣ ପାଇଁ ଆବଶ୍ୟକ ଅଧିକାଂଶ ପଦାର୍ଥ ବୃକ୍ଷରୁ ହିଁ ମିଳିଥାଏ । ସେମାନେ ମଧ୍ୟ ସଚେତନ ହେଲେଣି ଯେ ଯଦି ପର୍ବତ କଡ଼ରୁ ଗୋଟିଏ ଗଛକୁ କାଟି ଦିଆଯାଏ, ତେବେ ତାହା ଆଉ ପୁନର୍ବାର ସୃଷ୍ଟି ହୋଇପାରିବ ନାହିଁ ।

ଅଳ୍ପ କଥା ଚିନ୍ତା କଲେ ବହୁ ସୁଫଳ ମିଳିଥାଏ । କ୍ଷୁଦ୍ର ପଦାର୍ଥ ପାଇବାରେ ସ୍ଥିରତା ରହିଛି । ଯଦିବା ଏହା କ୍ଷତିକାରକ ହୁଏ, ତେବେ ଏହା କମ୍ ହୋଇଥିବାରୁ ସୁବିଧାରେ ଠିକ୍ କରାଯାଇପାରେ ।

ନିୟମ ଅନୁସାରେ ଅଧିକାଂଶ ଆଦିବାସୀ ଓ ଗିରିଜନ ସେମାନଙ୍କ ପରିବେଶ ମଧ୍ୟରେ ଶାନ୍ତିରେ ବସବାସ କରି ରହିଥାନ୍ତି । ସେମାନେ ଜଙ୍ଗଲଜାତ

ପଦାର୍ଥ ସଂଗ୍ରହ କରନ୍ତି ଯାହା କି ସହଜରେ ପୁଣି ପୂରଣ କରାଯାଇପାରେ। ତା'ସହ୍ୱେ ଆସାମ ଓ ଅନ୍ୟାନ୍ୟ ଅଞ୍ଚଳରେ ବାସ କରୁଥିବା କେତେକ ଲୋକ "ପରିବର୍ତ୍ତିତ କୃଷି" (ପୋଡୁଚାଷ) ପ୍ରଥା ଅବଲମ୍ବନ କରିଥାନ୍ତି। ସେମାନେ ଜଙ୍ଗଲକାଟି ପୋଡ଼ି ଦିଅନ୍ତି ଏବଂ ସେଠାରେ ଦୁଇ ତିନି ବର୍ଷ ପାଇଁ ଚାଷ କରନ୍ତି। ଯେହେତୁ ଏହା ପଡ଼ିଆ ଥାଏ ତେଣୁ ପ୍ରଥମ ବର୍ଷ ପ୍ରଚୁର ଫସଲ ଉତ୍ପନ୍ନ ହୋଇଥାଏ। ତା' ପରବର୍ଷ ଶସ୍ୟ ଉତ୍ପାଦନ କମିଯାଏ, ଯେହେତୁ ଏହା କୌଣସି ପ୍ରକାର ବାହ୍ୟ ସାର ପାଏ ନାହିଁ, ତେଣୁ ତିନି ଚାରି ବର୍ଷ ଭିତରେ ଏହି ଜମି ନୀରସ ହୋଇଯାଏ। ଏହାପରେ ଲୋକେ ନୂତନ ଜଙ୍ଗଲ କାଟି ସେଠାରେ ନିଆଁ ଲଗାଇ ଫସଲ ଉତ୍ପାଦନ କରିବାକୁ ଅନ୍ୟ ସ୍ଥାନକୁ ଚାଲିଯାଆନ୍ତି। ଏହି ପ୍ରକାର ଏକ ଅତ୍ୟଧିକ କ୍ଷତିକାରକ ତଥା ନଷ୍ଟକାରୀ ପ୍ରକ୍ରିୟାକୁ ବନ୍ଦ କରିବା ସହଜ ନୁହେଁ। କାରଣ, ଏହା ପଛରେ ଶହ ଶହ ବର୍ଷର ପରମ୍ପରା ରହିଛି ଏବଂ ଉତ୍ତର ପୂର୍ବ ପାର୍ବତ୍ୟାଞ୍ଚଳର କେତେକ ଆଦିବାସୀ ଏହାକୁ ସେମାନଙ୍କର ଜନ୍ମଗତ ଅଧିକାର ବୋଲି ଭାବିଥାନ୍ତି।

ମାତ୍ର, ଯେ ପର୍ଯ୍ୟନ୍ତ ଆଦିବାସୀମାନଙ୍କର ସଂଖ୍ୟା ସୀମିତ ଏବଂ ଜଙ୍ଗଲ ଉପରେ ଅନ୍ୟ କୌଣସି ବାହ୍ୟ ଚାପ ପଡ଼ିନାହିଁ, ସେତେବେଳ ଯାଏଁ ହୁଏତ ପର୍ବତାଞ୍ଚଳର ଜଙ୍ଗଲ ସମ୍ପଦ ଏହି ପ୍ରଥାକୁ ସହି ନେଇପାରିବ। ବର୍ତ୍ତମାନ ଅବସ୍ଥାରେ 'ଝୁମିଙ୍ଗ' ପ୍ରଥା କ୍ଷତିକାରକ ବୋଲି ପ୍ରମାଣିତ। ସଂପୃକ୍ତ ରାଜ୍ୟ ଏହା ବନ୍ଦ କରିବା ପାଇଁ ଉପାୟ ଚିନ୍ତା କରିବା ଆବଶ୍ୟକ।

ପର୍ବତାଞ୍ଚଳ ପରିବେଶ ନଷ୍ଟକୁ ଦୁଇଭାଗରେ ବିଭକ୍ତ କରାଯାଇପାରେ। ବୃହଦାକାର ଗଣନଷ୍ଟ ପ୍ରଥା ଯାହାକି ଜାଣିଶୁଣି କରାଯାଇଥାଏ ଏବଂ ଅଣ ନୀତିଗତ ତ୍ରୁଟିଜନିତ ନଷ୍ଟ ପ୍ରଥା, ଯାହାକି ଅବସ୍ଥା ଅତି ଖରାପ ହେବାପରେ ଜଣାପଡ଼େ। ପ୍ରଥମ ଶ୍ରେଣୀର ବହୁ ଉଦାହରଣ ଆମେ ଦେଖି ସାରିଲେଣି। ରାସ୍ତା ନିର୍ମାଣ, ନଦୀବନ୍ଧ ଯୋଜନା, ଝୁମ ବା ପରିବର୍ତ୍ତିତ କୃଷି ପ୍ରଥା (ପୋଡୁଚାଷ); ବଡ଼ ବଡ଼ କାଗଜକଳ, ପ୍ଲାଇଉଡ୍ କାରଖାନା ଓ ପଲ୍ପ ଫାଇବର କାରଖାନା ସେମାନଙ୍କ କଞ୍ଚାମାଲ ପାଇଁ ଜଙ୍ଗଲ ଉପରେ ନିର୍ଭର କରିଥାନ୍ତି। ଜଙ୍ଗଲ ଯେତିକି ଯୋଗାଇ ପାରିବ, ଲୋଭବଶତଃ ତା'ଠାରୁ ଅଧିକ ବିନା ହିସାବରେ ନେଇ ଆସିବା ଏମାନଙ୍କର ପ୍ରକୃତି। ଏହା ସୁନା ଅଣ୍ଡା ଦେଉଥିବା ରାଜହଂସକୁ ମାରିଦେବା ସହିତ ସମାନ।

କାଠ ବା ଜାଳେଣୀ ସଂଗ୍ରହ କରୁଥିବା ଲୋକେ ହେଉଛନ୍ତି ଦ୍ୱିତୀୟ

ଶ୍ରେଣୀର ନଷ୍ଟକାରୀ । ଯେ କୌଣସି ଜଙ୍ଗଲରେ ସବୁବେଳେ ବହୁ ପରିମାଣର ଶୁଖିଲା କାଠ ଥାଏ, ମାତ୍ର ଗତ 30 ବର୍ଷ ଭିତରେ ଏହି କାଠ ଉପରେ ନିର୍ଭର କରୁଥିବା ଲୋକଙ୍କ ସଂଖ୍ୟା ବହୁ ଗୁଣରେ ବୃଦ୍ଧି ପାଇଛି, ଯା'ଫଳରେ ଜଙ୍ଗଲରୁ ବହୁ ପରିମାଣର ଜୀବନ୍ତ କାଠ ଓ ଶୁଖିଲା କାଠ ଏମାନେ ସଫା କରିବାରେ ଲାଗିଛନ୍ତି ।

ଗାଈ ଓ ଛେଳି ହେଉଛନ୍ତି ନୂତନ ଗଛ ସୃଷ୍ଟିର ଦ୍ୱିତୀୟ ନମ୍ବର ଶତ୍ରୁ । ଗାଈଗୋରୁଙ୍କୁ ଜଙ୍ଗଲ ଭିତରେ ଅବାଧରେ ଚରିବାକୁ ଛାଡ଼ି ଦିଆଯାଉଛି । ଏହା ବହୁଦିନରୁ ଚଳି ଆସୁଥିବା ଏକ ପ୍ରଥା । ମାତ୍ର ଯେତେବେଳେ ଏମାନଙ୍କ ସଂଖ୍ୟା କମ୍ ଥିଲା ଓ କମ୍ ସଂଖ୍ୟକ ଲୋକ ଥିଲେ ଏବଂ ଜଙ୍ଗଲ ଅଞ୍ଚଳ ବଡ଼ ଥିଲା, ଏହା ଠିକ୍ ଥିଲା । ମାତ୍ର ବର୍ତ୍ତମାନ ଅବସ୍ଥା ଠିକ ଏହାର ଓଲଟା । ଗୋଟିଏ ଜଙ୍ଗଲରେ ବହୁ ସଂଖ୍ୟକ ଗାଈ ଗୋରୁ ରହିବାରୁ ଏହା ଜଙ୍ଗଲ ନଷ୍ଟର ଅନ୍ୟ ଏକ କାରଣ ହୋଇଛି । ଗାଈର ଖୁରା ମାଟିକୁ ଟାଣ କରିଥାଏ ଏବଂ ନୂତନ ଚାରା ଜନ୍ମକୁ ପ୍ରତିରୋଧ କରିଥାଏ, ମାତ୍ର ଛେଳିମାନେ ଯେ କେବଳ ପତ୍ର ଓ ଡ଼ାଳକୁ ଭାଙ୍ଗି ଖାଇଥାନ୍ତି, ତାହା ନୁହେଁ, ଏମାନେ ଘାସକୁ ମୂଳରୁ ଉପାଡ଼ି ପକାଇଥାନ୍ତି । ଯାହାକି ମେଣ୍ଢା କରେ ନାହିଁ । ମେଣ୍ଢା କେବଳ ଅଗ ପତ୍ରକୁ ଖାଇଥାଏ । ମେଣ୍ଢା ଚାଷ ଦ୍ୱାରା ଜମିର ଉର୍ବରତା ବୃଦ୍ଧି ପାଇଥାଏ । ଯେ କୌଣସି ସଂରକ୍ଷଣବାଦୀଙ୍କ ପାଇଁ ପାହାଡ଼ ଉପତ୍ୟକାରେ ଚରୁଥିବା ପଲେ ମେଣ୍ଢାଙ୍କ ଦୃଶ୍ୟ ଆନନ୍ଦଦାୟକ ହୋଇଥାଏ । ମାତ୍ର ସେ ସ୍ଥାନରେ ପଲେ ଛେଳି ଚରୁଥିଲେ ସେମାନେ ଚିନ୍ତାଗ୍ରସ୍ତ ହୋଇ ପଡ଼ିଥାନ୍ତି । ବହୁ ସଂଖ୍ୟକ ଛେଳିଙ୍କୁ କୌଣସି ଗୋଟିଏ ସ୍ଥାନରେ ଛାଡ଼ିଦେଲେ ସେମାନେ ଖୁବଶୀଘ୍ର ଏହାକୁ ମରୁଭୂମିରେ ପରିଣତ କରିଦେଇଥାନ୍ତି ।

ପ୍ରକୃତରେ ଯେଉଁଠାରେ ପର୍ବତର ପୃଷ୍ଠ ଦେଶ ପ୍ରାକୃତିକ ଭାବେ ଘାସ ଦ୍ୱାରା ଆଚ୍ଛାଦିତ ହୋଇଥିବାର ଦେଖାଯାଏ ଏହା ମଣିଷ ଦ୍ୱାରା କିମ୍ବା ଗୋରୁ ଗାଈଙ୍କ ଦ୍ୱାରା ହୁଏତ ହୋଇଥିବ ବୋଲି ଅନୁମାନ କରାଯାଇଥାଏ ମାତ୍ର ପ୍ରକୃତରେ ଏହି ଆବରଣ ଜଙ୍ଗଲ ଦ୍ୱାରା ହୋଇଥାଏ । ପର୍ବତର ନିମ୍ନଭାଗ ବିଶେଷ ଗଡ଼ାଣିଆ ହୋଇ ନ ଥିବାରୁ ଲୋକେ ଏଠାରେ ଗୃହପାଳିତ ପଶୁଙ୍କୁ ଚରାନ୍ତି, ଯେଉଁମାନେ କି ମାଟିକୁ କଠିନ କରି ଦିଅନ୍ତି । ଯାହା ଫଳରେ ଏଠାରେ ନୂତନ ଗଛ ସୃଷ୍ଟି ହୁଏ ନାହିଁ । କେବଳ ଘାସ ଗଛ କୌଣସି ମତେ ବଞ୍ଚି ରହିଥାଏ । କାଶ୍ମୀରର ମାର୍ଗ ଉପତ୍ୟକା ବା ଘାସ ଆଚ୍ଛାଦିତ

ଗଡ଼ାଣିଆ ଭୂମି ମେଣ୍ଢା ଚରିବାଦ୍ୱାରା ସୃଷ୍ଟି ହୋଇପାରିଛି, ଯେଉଁମାନେ କି ଗଛର କଅଁଳିଆ ଅଗ ପତ୍ର ଓ ଘାସ ଖାଇଥାନ୍ତି ଏବଂ ବୃହତ୍ ଗଛ ସୃଷ୍ଟି କରିବାରେ ପ୍ରତିବନ୍ଧକ ସୃଷ୍ଟି କରିଥାନ୍ତି। ଏ ଦିଗରେ ଉନ୍ନତି ପାଇଁ ସବୁ ପର୍ବତ ଗଡ଼ାଣି ବୃକ୍ଷ ଦ୍ୱାରା ଆଚ୍ଛାଦିତ ହେବା ଆବଶ୍ୟକ।

ଆମେ ଜାଣୁ ଯେ ମୃତ୍ତିକା କ୍ଷୟ ଯୋଗୁଁ କୃଷି ବା ଶସ୍ୟ ଉତ୍ପାଦନ ଏକ ଗଡ଼ାଣିଆ ପର୍ବତ କଡ଼ରେ ସମ୍ଭବ ନୁହେଁ। ଯେଉଁଠାରେ ସାବଧାନତାର ସହିତ ସୀମାରେଖା ସହ ମାଟି ବନ୍ଧାଯାଏ ସେଠାରେ ହୁଏତ ଏହା ସମ୍ଭବ।

ଏହା ସତ୍ୟ ଯେ ଜାପାନ ଭଳି କେତେକ ଦେଶରେ ପର୍ବତ ଗଡ଼ାଣିରେ ଗଛଗୁଡ଼ିକୁ କାଟି ଦିଆଯାଇ ସେଠାରେ କୃଷିକାର୍ଯ୍ୟ କରାଯାଏ। ଜମିକୁ ସେଠାରେ ସୀମାବଦ୍ଧ କରାଯାଇ ଅତି ସାବଧାନତାର ସହ ଗଡ଼ାଣିଆ ସ୍ଥାନକୁ ଅତି ପତଳା ସମାନ୍ତରାଳ ଭୂମିରେ ପରିଣତ କରାଯାଇ ଆବଦ୍ଧ କରାଯାଏ, ଯେପରିକି ମାଟି ଆଦୌ ଧୋଇ ଯିବ ନାହିଁ। ଯେଉଁଠାରେ ବୃଷ୍ଟିପାତ ଅଳ୍ପ କିମ୍ୱା ବର୍ଷା ଯେଉଁଠାରେ ଆସ୍ତେ ହୁଏ ଓ ପାଣି ଖୁବ ଶୀଘ୍ର ମାଟି ଭିତରକୁ ଚାଲି ଯାଇପାରେ, କେବଳ ସେହି ସ୍ଥାନରେ ଏହା ସମ୍ଭବ। ମାତ୍ର ଭାରତରେ ମୌସୁମୀ ବର୍ଷା ସାଧାରଣତଃ ପ୍ରବଳ ଏବଂ ସୀମାବଦ୍ଧ ବା ହିଡ଼ ବାନ୍ଧି ଏଠାରେ ମୃତ୍ତିକା ସଂରକ୍ଷଣ କରିବା ସମ୍ଭବ ନୁହେଁ। ବିଶେଷ କରି ଯେତେବେଳେ ମଞ୍ଜିବୁଣା ପୂର୍ବରୁ ପ୍ରଥମ କରି ଏହାକୁ ହଳ କରାଯାଇଥାଏ ସେତେବେଳେ ଏହା ସମ୍ଭବ ନୁହେଁ। ପ୍ରତ୍ନତତ୍ତ୍ୱବିତ୍‌ମାନେ କେତେକ ତଥ୍ୟ ଆବିଷ୍କାର କରି ମତ ଦେଇଛନ୍ତି ଯେ ବର୍ତ୍ତମାନର କର୍ଣ୍ଣାଟକର ନଣ୍ଡା ଶୃଙ୍ଗରେ କେତେବର୍ଷ ପୂର୍ବେ ହୁଏତ ଚାଷକାର୍ଯ୍ୟ ହେଉଥିଲା। ହୁଏତ ସେତେବେଳର ଚାଷୀଙ୍କର ଏହି ପ୍ରକାର ଭୁଲ ଚାଷ ପ୍ରଣାଳୀ ଦ୍ୱାରା ଏହି ଶୃଙ୍ଗଗୁଡ଼ିକ ଏବେ ଲଣ୍ଡା ହୋଇଯାଇଛି। ସେଠାରେ ଗଛଗୁଡ଼ିକ ରହିଥିଲେ ହୁଏତ ଭଲ ହୋଇଥାଆନ୍ତା ଏବଂ କୃଷିକାର୍ଯ୍ୟ ନିମ୍ନ ଗଡ଼ାଣିଆ ସ୍ଥାନ ଓ ଉପତ୍ୟକାରେ ହୋଇଥାନ୍ତା। ଉପତ୍ୟକାର ନିମ୍ନ ଅଞ୍ଚଳ ହିଁ ପ୍ରକୃତରେ କୃଷିକାର୍ଯ୍ୟ ପାଇଁ ଉପଯୁକ୍ତ ସ୍ଥାନ। ଏପରିକି ହିମାଳୟ ପର୍ବତମାଳାର ଉପତ୍ୟକାରେ ମଧ୍ୟ ଧାନ ପରି ଉଷ୍ଣମଣ୍ଡଳୀୟ ଶସ୍ୟ ଉତ୍ପାଦିତ ହୋଇପାରିବ। ଏହା ବ୍ୟତୀତ ଗହମ, ବାର୍ଲି, ମକା ଓ ପନିପରିବା ମଧ୍ୟ ଏଠାରୁ ଭଲ ଉତ୍ପାଦିତ ହୁଏ। ଟିକେ ଅଧିକ ଯତ୍ନ ନେଲେ ଓ ସାବଧାନ ହେଲେ ଏହି ସବୁର ଉତ୍ପାଦନ ବଢ଼ାଯାଇପାରେ।

କୃଷିଠାରୁ ଫଳ, ଚା, କଫି ଚାଷ କରିବା ଅଧିକ ଲାଭଦାୟକ।

ଏହାଦ୍ୱାରା ସମଗ୍ର ଭୂମିରେ ହୁଏତ ଗଛ ରହିପାରିବ। ଏଣୁ ତେଣୁ ସବୁ ପ୍ରକାର ବହୁ ଜାତିର ଗଛ ଲଗାଇବା ବ୍ୟତୀତ କେତେକ ନିର୍ଦ୍ଦିଷ୍ଟ ଶ୍ରେଣୀର ଗଛ ଲଗାଇବା ଉଚିତ। ଫଳ ମଧ୍ୟରେ ସେଓ, ପିଚ ଓ ପିଚୁଳି ହିମାଳୟ ଅଞ୍ଚଳରେ ଭଲ ହୁଏ। ଚା, କଫି ଚାଷ ଆସାମର ଅଧିକ ଉଷ୍ଣ ଓ ଆର୍ଦ୍ର ଜଳବାୟୁ ତଥା ଦକ୍ଷିଣ ଭାରତର ପର୍ବତାଞ୍ଚଳରେ ଭଲ ହୋଇଥାଏ। ଏ ସବୁ ସମତଳ ଉପତ୍ୟକାରେ ଦେଖାଯାଏ ଓ ହିମାଳୟ ଉପତ୍ୟକାର ଅନେକ ସ୍ଥାନରେ ମଧ୍ୟ ଶସ୍ୟ ଚାଷ ସଫଳତାର ସହ କରାଯାଇଥାଏ। ଆଜିଯାଏଁ ଗୋଟିଏ ପରିବାରର ମୁଖ୍ୟ ବ୍ୟବହାର ପାଇଁ ଗହମ ପରି ଶସ୍ୟ ଓ ତୈଳବୀଜ ପ୍ରଭୃତି ଚାଷ କରାଯାଇଥାଏ। ଗତ ଏକ ଶତାବ୍ଦୀରୁ ଅଧିକ ସମୟ ଧରି ବର୍ତ୍ତମାନ ଯାଏଁ ପର୍ବତାଞ୍ଚଳର କୃଷି ଏପରି ବିପର୍ଯ୍ୟସ୍ତ ଅବସ୍ଥାରେ ପହଞ୍ଚିଛି ଯେ ଏ ଅଞ୍ଚଳର ଲୋକେ ବାଧ୍ୟ ହୋଇ ସମତଳ ଅଞ୍ଚଳକୁ କାମ ଧନ୍ଦା ଖୋଜିବାକୁ ଯାଉଛନ୍ତି। ଯେଉଁ ମହିଳାମାନେ ଘରକାମ ସାରି କୃଷି କ୍ଷେତ୍ରରେ କାମ କରୁଥିଲେ ସେମାନେ ଏବେ ବହୁଭାବରେ ହଇରାଣ ହୋଇ ଗରିବ ହୋଇ ଯାଉଛନ୍ତି। ସେ ଯାହାହେଉ, ବୈଷୟିକ ଜ୍ଞାନର ବିକାଶ ଦ୍ୱାରା କୃଷି ଉତ୍ପାଦନ ବହୁ ଭାବରେ ଉନ୍ନତି ଲାଭ କରିପାରିବ। ବିଶେଷଜ୍ଞମାନେ ହୃଦୟଙ୍ଗମ କଲେଣି ଯେ ନୀଳଗିରି ଓ ପଶ୍ଚିମଘାଟ ପର୍ବତମାଳା ପରି ହିମାଳୟ ଉପତ୍ୟକାରେ କଫି, କୋକୋ, ଗୁଜୁରାତି, ଲବଙ୍ଗ ପରି ନୂତନ ଶସ୍ୟ ଉତ୍ପାଦନ କରାଯାଇ ପାରିବ। ଏହି ସବୁ ଶସ୍ୟ କମ ଓଜନ ବିଶିଷ୍ଟ ହେଲେ ମଧ୍ୟ ମୂଲ୍ୟବାନ। ତେଣୁ ବଜାରକୁ ପରିବହନ ଖର୍ଚ୍ଚ ଏହା ଚାଷ କରିବାଦ୍ୱାରା ବନ୍ଦ କରାଯାଇ ପାରିବ।

ଏବେ ଦେଖାଯାଉଛି ଯେ ହିମାଳୟ ପର୍ବତମାଳାର ବହୁ ଦୁର୍ଗମ ପର୍ବତାଞ୍ଚଳ ନିର୍ଜନ ରହିଛି। ସାମରିକ ଦୃଷ୍ଟିରୁ ଏହି ଅଞ୍ଚଳ ଯଦି ମଣିଷ କାର୍ଯ୍ୟରୁ ବିରତ ରହେ, ତେବେ ଏହାକୁ ଏକ ପର୍ଯ୍ୟଟନ କ୍ଷେତ୍ର ରୂପେ ବ୍ୟବହାର କରାଯାଇ ପାରିବ। ଏଭରେଷ୍ଟ ପାଦ ଦେଶରେ ଏକ ହୋଟେଲ ସ୍ଥାପିତ ହେଲେ ସେ ଯାଏଁ ମଧ୍ୟ ପର୍ଯ୍ୟଟକମାନେ ଯାଇପାରିବେ। ବାହ୍ୟତଃ ଏହା ବହୁ ଲୋକଙ୍କର ଚିତ୍ତବିନୋଦନ ପାଇଁ ବ୍ୟବହୃତ ହୋଇ ଆମ ଦେଶ ବହୁ ବୈଦେଶିକ ମୁଦ୍ରା ରୋଜଗାର କଲେ ମଧ୍ୟ ପର୍ବତମାଳାର ଶରୀର ପାଇଁ ଏହା ଏକ ବିପଦ ସୃଷ୍ଟି କରିବ।

ପର୍ଯ୍ୟଟକମାନଙ୍କୁ ଆରାମ ଯୋଗାଇ ଦେବାକୁ ଜଳ ସହିତ ବହୁ

ପରିମାଣର ଜାଳେଣି ଯୋଗାଇ ଦେବାକୁ ପଡ଼ିବ ଓ ଏଥିପାଇଁ ପାର୍ଶ୍ୱବର୍ତ୍ତୀ ଜଙ୍ଗଲ ସମ୍ପଦ ନଷ୍ଟ ହେବ। ଦୁର୍ଗମ ଅଞ୍ଚଳରେ ରାସ୍ତା ନିର୍ମାଣ କଲେ କିପରି ଜଙ୍ଗଲ ନଷ୍ଟ ହୋଇଥାଏ ତାହା ଆମେ ପୂର୍ବରୁ ଜାଣୁ।

ଆମକୁ ସ୍ୱୀକାର କରିବାକୁ ହେବ ଯେ ମଣିଷର ହସ୍ତକ୍ଷେପ ଯେତେ କମ୍ ହେବ, ପର୍ବତାଞ୍ଚଳ ସେତେ ଅଧିକ ପୁଷ୍ଟ ହେବ। ଦୁର୍ଭାଗ୍ୟବଶତଃ କ୍ରମବର୍ଦ୍ଧମାନ ଜନସଂଖ୍ୟା ପର୍ବତାଞ୍ଚଳର ସୁରକ୍ଷା ଓ ତ୍ୱରିତ ବିନିଯୋଗ ପାଇଁ ସୁଯୋଗ ସୃଷ୍ଟି କରିପାରୁନାହିଁ। ଜଣେ ପର୍ବତାରୋହୀଙ୍କ ବିଷୟରେ ଏକ ଗଳ୍ପ ରହିଛି ଯେ ସେ ହିମାଳୟ ପର୍ବତମାଳାର ଏକ ଉଚ୍ଚ ଶୃଙ୍ଗ ଆରୋହଣ କରିବାବେଳେ ମୃତ୍ୟୁବରଣ କରିଥିଲେ। ଯଦିଓ ସେ ଜଣେ ହିନ୍ଦୁ ଥିଲେ, ସେ କହିଥିଲେ ଯେ ମୃତ୍ୟୁପରେ ତାଙ୍କ ଶବକୁ ପୋଡ଼ା ନ ଯାଇ ପୋତି ଦିଆଯିବା ଉଚିତ। କାରଣ ସେ ଚାହୁଁ ନ ଥିଲେ ଯେ ତାଙ୍କର ଅତିପ୍ରିୟ ପର୍ବତମାଳାରୁ ଗୋଟିଏ ଗଛ କଟାଯାଇ ତାଙ୍କର ଶବ ସଂସ୍କାର କରାଯାଉ।

ଯଦି ପର୍ବତମାଳାକୁ ଏକ ଦରକାରୀ ଯନ୍ତ୍ର ବୋଲି ଆମେ ଭାବିବା, ତେବେ ଏହାର ସୁରକ୍ଷା ଓ କ୍ରମାଗତ ସୁବ୍ୟବହାର ପାଇଁ ଆମକୁ ଏହାର ତେଲ ସଫା କରିବାକୁ ହେବ। ଯନ୍ତ୍ରାଂଶକୁ ମରାମତି କରିବାକୁ ହେବ। ଆମେ ଯଦି ଏହି ଯନ୍ତ୍ରାଂଶକୁ କ୍ରମାଗତ ଅପବ୍ୟବହାର କରିବା ସଙ୍ଗେ ସଙ୍ଗେ ହତାଦର କରିବା, ତେବେ ଖୁବ ଶୀଘ୍ର ଏହା କାମ ବନ୍ଦ କରିଦେବ। ପର୍ବତମାଳାକୁ ମଧ୍ୟ ବିଶ୍ରାମ ଦିଆଯିବା ଆବଶ୍ୟକ। ଏହାର ଦେଖାଶୁଣା ଓ ଯତ୍ନ ନିଆ ନ ଗଲେ ମଧ୍ୟ ଆମେ ନିର୍ଭର କରୁଥିବା ପଦାର୍ଥ ଯୋଗାଇବାରେ ସେ ଅକ୍ଷମ ହେବ। ନିଜ ଆଡୁ ପର୍ବତମାଳା ଆମକୁ ଯେତିକି ପଦାର୍ଥ ଯୋଗାଇ ପାରିବ। ସେତିକି ଆଣିବା ଦରକାର।

ଆମ ସମସ୍ତଙ୍କ ପାଇଁ ପର୍ବତମାଳା ହେଉଛି ଏକ ଚିତ୍ତବିନୋଦନ ଖେଳପଡ଼ିଆ, ଯେଉଁଠି ଆମେ ଶାରୀରିକ କ୍ଷମତା ବୃଦ୍ଧି କରିବାକୁ ଚାଲିପାରିବା, ପର୍ବତାରୋହଣ କରିପାରିବା କିମ୍ବା ପ୍ରାକୃତିକ ପରିବେଶରୁ ପରୋକ୍ଷ ଆନନ୍ଦ ଲାଭ କରିପାରିବା। ବିସ୍ମୟକର ବରଫାବୃତ ଶୃଙ୍ଗରାଜି ଆମ ମଧ୍ୟରୁ ଅନେକଙ୍କୁ ଆନନ୍ଦ ଦେବା ସହିତ ଆମକୁ ଉନ୍ନତ କରିବାର ସବୁ ପ୍ରକାର ଉପାଦାନ ପର୍ବତ ନିକଟରେ ରହିଛି। ତେଣୁ ପର୍ବତମାଳା ଯେପରି ରୁଗ୍ଣ ଓ ରୋଗାକ୍ରାନ୍ତ ନ ହୁଏ, ତାହା ଦେଖିବା ଆମ ସମସ୍ତଙ୍କର କର୍ତ୍ତବ୍ୟ।

# ଜଙ୍ଗଲ

## I

### *ସେମାନେ ଯେପରି ଥିଲେ*

ଅଧିକାଂଶ ସମୟରେ କୁହାଯାଇଥାଏ, ଭାରତର ମୁଖ୍ୟ ସମ୍ପଦ ହେଉଛି ସୂର୍ଯ୍ୟାଲୋକ। ସୂର୍ଯ୍ୟର ଉତ୍ତାପ ଓ ଆଲୋକ ସମସ୍ତ ଜୀବଜଗତ ଓ ସବୁ ପ୍ରକାର ଶକ୍ତିର ମୌଳିକ ଆଧାର। କିନ୍ତୁ କେବଳ ସୂର୍ଯ୍ୟରଶ୍ମି ମରୁଭୂମିକୁ ଜୀବନ୍ତ କରିପାରେନାହିଁ। ଏଥିପାଇଁ ସୂର୍ଯ୍ୟ, ଜଳ ଓ ମାଟି ଦରକାର ଯାହାକି ଏକ ସମୃଦ୍ଧ ଘଞ୍ଚ ଅରଣ୍ୟ ସୃଷ୍ଟି କରିପାରେ। ଭାରତର ଅଧିକାଂଶ ଅଞ୍ଚଳରେ ଏହା ସମାନ ଅନୁପାତରେ ମିଳେ ନାହିଁ। ତେଣୁ, ଯେଉଁଠାରେ ଘନ ଜନବସତି ନ ଥାଏ ଏବଂ ଖାଲି ପଡ଼ିଥିବା ସ୍ଥାନ ରହିଥାଏ, ସେଠାରେ ଆପେ ଆପେ ପ୍ରାକୃତିକ ଜଙ୍ଗଲ ସୃଷ୍ଟି ହୋଇଯାଏ।

ବାସ୍ତବିକ ପୂରାକାଳରେ ଯେତେବେଳେ ଲୋକସଂଖ୍ୟା ବହୁତ କମ ଥିଲା ଏବଂ ଯେତେବେଳେ ଘୋଡ଼ା ଓ ବଳଦଗାଡ଼ି ପରିବହନର ମାଧ୍ୟମ ଥିଲା, ସେତେବେଳେ ଆମ ଦେଶର ବହୁ ଅଞ୍ଚଳ ବିଶେଷ କରି ପାହାଡ଼ିଆ ଅଞ୍ଚଳ ବିଭିନ୍ନ ପ୍ରକାର ଜଙ୍ଗଲରେ ଭରପୂର ଥିଲା, ଯେଉଁଠାରେ ମଣିଷ ବାସ କରିବା ବିରଳ ଥିଲା ଓ କୃଷିକାର୍ଯ୍ୟ କରିବା ମଧ୍ୟ କଷ୍ଟକର ଥିଲା। ମଥୁରା ପରି କେତେକ ଜଙ୍ଗଲ ନ ଥିବା ସ୍ଥାନର ମନ୍ଦିରରେ ଖୋଦେଇ ହୋଇଥିବା ଗଣ୍ଡା ଓ ସିଂହର ଛବି ଦେଖି ଅନୁମାନ କରିହେବ ଯେ ପୂର୍ବରୁ ସେଠାର ଅଧିକାଂଶ ସ୍ଥାନ ଜଙ୍ଗଲପୂର୍ଣ୍ଣ ଥିଲା ଓ ବିଭିନ୍ନ ପ୍ରକାର ବଡ଼ ସ୍ତନ୍ୟପାୟୀ ପ୍ରାଣୀଙ୍କର ବାସସ୍ଥାନ ଥିଲା, ନଚେତ୍ ଖୋଦେଇ ଶିଳ୍ପୀ ଗଣ୍ଡାର ଆକୃତି ଜାଣିଲା କିପରି? ବୈଜ୍ଞାନିକ ଦୃଷ୍ଟିକୋଣରୁ ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ବିଷୟ

ହେଉଛି, ଆମେ ଐତିହାସିକ ଗଳ୍ପରୁ ଜାଣୁ ଯେ ବୀର ଓ ବୀରାଙ୍ଗନାମାନେ ଅନେକ ସମୟରେ ଜଙ୍ଗଲ ଭିତରେ ଯିବା ଆସିବା କରୁଥିଲେ। ତେଣୁ ଏଥିରୁ ସ୍ପଷ୍ଟ ହୁଏ ଯେ ଜଙ୍ଗଲ ସେମାନଙ୍କ ଘରର ଦ୍ୱାରକୁ ସ୍ପର୍ଶ କରୁଥିଲା।

କଳ୍ପନା କରାଯାଉ ଯେ ଖଣ୍ଡିଏ ଜମି ଖୋଲା, ପରିତ୍ୟକ୍ତ ଓ ଖାଲି ପଡ଼ିଥିଲା। ଏଥିରେ କେତେକ ମଞ୍ଜି ପବନରେ ଉଡ଼ି ଆସି ହେଉ କିମ୍ବା ପ୍ରାଣୀଙ୍କ ମଳଦ୍ୱାରା ହେଉ ବା ପକ୍ଷୀର ପରଦ୍ୱାରା କିମ୍ବା ପ୍ରାଣୀର ଲୋମଦ୍ୱାରା ଆସି ପଡ଼ିଲା ଏବଂ ଏହି ଜମିର ମାଟି ମଣିଷର ପାଦ ବା ପ୍ରାଣୀଙ୍କ ଖୁରାଦ୍ୱାରା ଶକ୍ତ ନ ହୋଇ ହାଲୁକା ଓ ଗ୍ରହଣଯୋଗ୍ୟ ରହିଥିଲା। ବର୍ଷା ପରେ ଏହି ସ୍ଥାନରେ ଗଛ ସୃଷ୍ଟି ହୋଇ କିଛି ବର୍ଷ ଭିତରେ ଏହା ଜଙ୍ଗଲରେ ପରିଣତ ହୋଇଯିବ। ଯଦି ପ୍ରଥମ ବର୍ଷ ଏଠାରେ ମରୁଡ଼ି ଅବସ୍ଥା ଦେଖାଦିଏ, ମଞ୍ଜି ହୁଏତ ଗଜା ହୁଏ ନାହିଁ କିମ୍ବା ଗଜା ମରୁଡ଼ି ହୋଇଯାଏ, ମାତ୍ର ଅନେକ ସମୟରେ ଅବସ୍ଥା ଭଲ ହୋଇଯିବାରୁ ପଡ଼ିଥିବା ମଞ୍ଜିରୁ ଗଜା ହୋଇ ଗଛ ସୃଷ୍ଟି ହୋଇଥାଏ। ସେତେବେଳେ ଅନ୍ୟଗଛ ଗୁଡ଼ିକ ପ୍ରଥମ ଶ୍ରେଣୀ ଗଛ ସହିତ ମିଶି କେତେକ ଗଛ, ବୁଦା ଲତା ଓ ସୂର୍ଯ୍ୟପ୍ରେମୀ ବୃକ୍ଷ ସୃଷ୍ଟି ହୋଇ ନିଜର ସ୍ଥିତି ପାଇଁ ପ୍ରତିଯୋଗିତା କରନ୍ତି। କ୍ରମେ ଛୋଟ ଛୋଟ ପ୍ରାଣୀ, ପକ୍ଷୀ ଓ କୀଟ ପତଙ୍ଗ ସେଠାର ପତ୍ର ଓ ମହୁ ଖାଇବାକୁ ଏଠାକୁ ଆସନ୍ତି ଏବଂ (ଏମାନଙ୍କ ମଳ ଓ ଲୋମ ଦ୍ୱାରା ମଧ୍ୟ ନୂଆ ମଞ୍ଜି ଏଠାକୁ ଆସିଥାଏ) ଏଠାରେ ଖୁବଶୀଘ୍ର ବହୁ ସ୍ତରର ବିଭିନ୍ନ ପ୍ରକାରର ଉଦ୍ଭିଦ ଦେଖାଯାଆନ୍ତି। ଯେଉଁମାନଙ୍କ ପାଇଁ ପାରିପାର୍ଶ୍ୱିକ ଅବସ୍ଥା ଉପଯୁକ୍ତ ହୋଇଥାଏ, ସେମାନେ ତିଷ୍ଠି ରହନ୍ତି, କେତେକ ଅନ୍ୟମାନଙ୍କୁ ଠେଲି ନିଜେ ବଢ଼ନ୍ତି ଓ ପରସ୍ପର ମଧ୍ୟରେ ପ୍ରତିଯୋଗିତା କରି ବଢ଼ିଥାନ୍ତି।

ଏହି ସମୟରେ ଗଛଗୁଡ଼ିକ ବୀଜବିକ୍ଷେପ କରି ନୂତନ ଗଜା ସୃଷ୍ଟି କରିଥାନ୍ତି। କେତେବର୍ଷ ପରେ ଗଛଟି ସମ୍ପୂର୍ଣ୍ଣ ଉଚ୍ଚତା ଲାଭ କରେ ଏବଂ ଖାଲିଥିବା ଭୂମିଖଣ୍ଡିକ ଏକ ନୂତନ ଜଙ୍ଗଲରେ ପରିଣତ ହୋଇଥାଏ। ଏହି ସମୟରେ ଗଛଛାଇ ଯୋଗୁଁ ନୂତନ ବୃକ୍ଷ ଏଠାରେ ସୃଷ୍ଟି ହେବାରେ ପ୍ରତିବନ୍ଧକ ସୃଷ୍ଟି ହୁଏ ଓ ଛାଇରେ ବଢ଼ୁଥିବା ଫର୍ଣ୍ଣ ପରି ଗଛ ଏଠାରେ ବହୁ ପରିମାଣରେ ଦେଖାଯାଏ। ପଶୁପକ୍ଷୀ ଓ କୀଟପତଙ୍ଗ ବଂଶବୃଦ୍ଧି କରନ୍ତି, ବହୁ ନୂତନ ଜାତିର ଜୀବ ଦେଖାଦେବା ସହିତ ବହୁ ପ୍ରକାର ଖାଦ୍ୟ ଦ୍ରବ୍ୟ ମିଳେ ଓ ବିଭିନ୍ନ ପ୍ରକାରର ବସା ଦେଖାଯାଏ। ଯେଉଁମାନେ ଉଚ୍ଚ ଅଞ୍ଚଳରେ ବାସ

କରିବାକୁ ଭଲ ପାଆନ୍ତି, ସେମାନଙ୍କ ବସା ବହୁ ଉଚ୍ଚରେ ରହିଥିବା ବେଳେ ମାଙ୍କଡ଼, ପତ୍ରପ୍ରେମୀ ପକ୍ଷୀଙ୍କ ବସା ଗଛ ମଝି ଅଞ୍ଚଳରେ ରହିଥାଏ। ଏହା ବ୍ୟତୀତ ଗଛ ଗଣ୍ଡିରେ ବାସ କରୁଥିବା ଘରଚଟିଆ, କାଠହଣା, ଗୁଣ୍ଡୁଚିମୂଷା ଦେଖାଯିବା ସହିତ ଭୂମିରେ ଥିବା ବୁଦା, ଘାସଗଛ, ଝଡ଼ି ପଡ଼ିଥିବା ପତ୍ର ଓ ଭଙ୍ଗାକାଠରେ ବହୁ ପ୍ରକାରର ସ୍ତନ୍ୟପାୟୀ ବାସ କରିଥାନ୍ତି। ବହୁ ପ୍ରକାରର ସାପ, ସରୀସୃପ ଓ କେତେକ ଭୂମିପକ୍ଷୀ ଏହି ଅଞ୍ଚଳରେ ବାସ କରିଥାନ୍ତି। କିଛିକ୍ଷଣ ମଧ୍ୟରେ ବୃହତ୍ ସ୍ତନ୍ୟପାୟୀ ମାନେ ଏହି ସଂରକ୍ଷିତ ଜଙ୍ଗଲ ଭିତରକୁ ଚାଲି ଆସନ୍ତି। ଘାସ ଖାଇବାକୁ ହରିଣ ପରି ପ୍ରାଣୀ, ଦେର ଖାଇବାକୁ ବଣୁଆ ଭାଲୁ ଓ ଫଳ ଖାଇବାକୁ ମାଙ୍କଡ଼ମାନେ ଏଠାକୁ ଆସିଥାନ୍ତି।

ଏହି ପ୍ରାଣୀମାନେ ସାଧାରଣତଃ ବିରାଡ଼ି ବଂଶଧର ରାଜା ବାଘ ଓ ଚିତାବାଘର ଆହାର। ଯଦିଓ ଏହିପରି କ୍ଷୁଦ୍ରପ୍ରାଣୀ ଓ ଖାଦକ ପ୍ରାଣୀଙ୍କର ଜୀବନ ସବୁବେଳେ ବିପଦପୂର୍ଣ୍ଣ ଥାଏ, ତଥାପି ଏହାଦ୍ୱାରା ଏହି ଅଞ୍ଚଳ ପୁଷ୍ଟ ରହେ। କାରଣ ବୃଦ୍ଧ ଓ ରୋଗୀ ପ୍ରାଣୀମାନେ ହିଁ ଏହି କ୍ଷେତ୍ରରେ ଶିକାର ହୋଇ ମରିଥାନ୍ତି।

ପ୍ରତ୍ୟେକ ଜାତିର ଜୀବନ୍ତ ପଦାର୍ଥର କେତେକ ସ୍ୱତନ୍ତ୍ରତା ରହିଥିବାର ପରିସଂସ୍ଥାନବିତ୍‌ମାନେ ମତ ଦେଇଥାନ୍ତି, ଯାହାକି ଅନ୍ୟ ଜାତିଠାରୁ ଏହାକୁ ଅଲଗା କରିଥାଏ। ଉଦାହରଣ ସ୍ୱରୂପ, କେତେକ ଜାତିର ପକ୍ଷୀ ଭୂମି ନିକଟରେ ବାସ କରିଥାନ୍ତି। ଏମାନେ ଝଡ଼ି ପଡ଼ିଥିବା ପତ୍ର ଓ ଗଳିତାଂଶରୁ କୀଟପତଙ୍ଗ ଓ ପୋକଜୋକ ଖାଇଥାନ୍ତି। କାଠହଣା, ଘରଚଟିଆ ଭଳି ପକ୍ଷିମାନେ ଗଛ ଗଣ୍ଡିରୁ ସେମାନଙ୍କ ଖାଦ୍ୟ ସଂଗ୍ରହ କରିଥାନ୍ତି। କେତେକ ପକ୍ଷି ଅତି ଉଚ୍ଚ ବୃକ୍ଷରାଜିରୁ ଖାଦ୍ୟ ସଂଗ୍ରହ କରିଥାନ୍ତି। କେତେକ ମଧ୍ୟ ଉଡ଼ନ୍ତା କୀଟ ପତଙ୍ଗକୁ ଧରିଥିବାବେଳେ ଅନେକ ମଶା ଓ ଛୋଟ ପତଙ୍ଗକୁ ଧରି ଗିଳି ଦିଅନ୍ତି। ଅନ୍ୟ ଭାଷାରେ, ଯେଉଁଠାରେ ବହୁ ଜାତିର ପଶୁପକ୍ଷୀ ବାସ କରୁଥାନ୍ତି, ସେମାନେ ପରସ୍ପରର ସମ୍ମୁଖୀନ ନ ହୋଇ ଖାଦ୍ୟପାଇଁ ନିଜ ନିଜର ସ୍ୱତନ୍ତ୍ରତା ରକ୍ଷା କରିଥାନ୍ତି।

ବଡ଼ ବଡ଼ ତୃଣଭୋଜୀ ପ୍ରାଣୀଙ୍କ କ୍ଷେତ୍ରରେ ଖାଦ୍ୟ ଖାଇବା ପ୍ରଣାଳୀ ସ୍ୱତନ୍ତ୍ର। ଆମର ଧାରଣା ଯେ ପ୍ରତ୍ୟେକ ତୃଣଭୋଜୀ ଏକ ପ୍ରକାର ଘାସ ଖାଇଥାନ୍ତି। ମାତ୍ର, ପ୍ରକୃତରେ କେତେକ କେବଳ ଘାସ ଖାଉଥିବାବେଳେ ଅନ୍ୟ କେତେକ କେବଳ ପତ୍ର ଖାଇଥାନ୍ତି ଓ ଅନ୍ୟ କେତେକ ଉଭୟକୁ

ଖାଇଥାନ୍ତି । ବୃଦ୍ଧିପ୍ରାପ୍ତ ହେଉଥିବାର ବିଭିନ୍ନ ସୋପାନରେ ଭିନ୍ନ ଭିନ୍ନ ପ୍ରାଣୀ ଗୋଟିଏ ପ୍ରକାର ଘାସକୁ ଖାଇଥାନ୍ତି । କେତେକ ପ୍ରାଣୀ ମଧ୍ୟ ଅତି ବାଛିଆରୀ । ଏମାନେ ଯେ କେବଳ ସ୍ୱତନ୍ତ୍ର ପ୍ରକାର ଘାସକୁ ବାଛିଥାନ୍ତି, ତାହା ନୁହେଁ, ସ୍ୱତନ୍ତ୍ର ଅଞ୍ଚଳକୁ ମଧ୍ୟ ବାଛିଥାନ୍ତି । ଉଦାହରଣ ସ୍ୱରୂପ, ଚିତାବାଘ ପତଳା ଜଙ୍ଗଲ ଓ ସମତଳ ଭୂଭାଗରେ ବାସ କରିବାକୁ ଭଲ ପାଉଥିବା ବେଳେ ସମ୍ବର ଜଙ୍ଗଲର ପର୍ବତାଞ୍ଚଳରେ ବାସ କରେ ଓ କୃଷ୍ଣସାରମୃଗ ଘାସ ଆଚ୍ଛାଦିତ ବିସ୍ତୀର୍ଣ୍ଣ ଅଳ୍ପ ଗଛଥିବା ସ୍ଥାନରେ ରହିବାକୁ ଭଲ ପାଏ ।

କୌଣସି ନୂତନ ଅବସ୍ଥାକୁ ଗ୍ରହଣ କରିନେବା ମଧ୍ୟ ପ୍ରାଣୀମାନଙ୍କ କ୍ଷେତ୍ରରେ ଭିନ୍ନ ଭିନ୍ନ ହୋଇଥାଏ । କେତେକ ଯେ କୌଣସି ପ୍ରକାର ବନ୍ଧୁର ଅବସ୍ଥାକୁ ସହଜରେ ଗ୍ରହଣ କରି ନେଉଥିବା ବେଳେ, କେତେକ ଏକ ଛୋଟ ପଦାର୍ଥର ଅଭାବରେ ତିଷ୍ଠି ନ ପାରି ମରି ଯାଆନ୍ତି । ପ୍ରକୃତିବିତ୍‌ମାନେ ଏହାକୁ "ଅବସ୍ଥାର ସୀମାରେଖା" ବୋଲି କହିଥାନ୍ତି । ଏହା ଦ୍ୱାରା କେତେକ ସୁପରିବେଶରେ ବୃଦ୍ଧିପ୍ରାପ୍ତ ହେବାକୁ ଆଶା କରାଯାଉଥିବା ବହୁ ଜାତିର ଜୀବ ବୃଦ୍ଧି ପାଇପାରନ୍ତି ନାହିଁ ।

ଜଙ୍ଗଲ ଭିତରେ ରହୁଥିବା ପଶୁ, ପକ୍ଷୀ ଓ କୀଟ ପତଙ୍ଗଙ୍କର ସ୍ୱତନ୍ତ୍ର ପ୍ରକାର ଖାଦ୍ୟ ଅଭ୍ୟାସ ଦେଖିବା ପରେ ଆମେ ସହଜରେ ଏହା ବୁଝି ପାରିଥାଉ । ଆମେ ଦେଖିଥାଉ ଯେ କିପରିଭାବେ ଏକ ଛୋଟ ଜଙ୍ଗଲ ବହୁ ପ୍ରକାର ଜୀବଜନ୍ତୁଙ୍କୁ ନିଜ ଭିତରେ ସ୍ଥାନ ଦେଇଥାଏ । ଏହା ବିଶ୍ୱାସ କରାଯାଏ ଯେ ଭାରତରେ ଅନ୍ୟ ଦେଶ ତୁଳନାରେ ଅଧିକ ଖାଦ୍ୟ ଉପଯୋଗୀ କୋଳିଗଛ ଓ ଫଳଗଛ ରହିଛି । ଆମ ଦେଶରେ ମଧ୍ୟ ବହୁ ଜାତିର ଫଳଭକ୍ଷୀ ପକ୍ଷୀ ଅଛନ୍ତି । ଯଦିଓ ବର୍ଷ ଭିତରେ କିଛି ସମୟରେ ଅଭାବ ବା ଟିରୋଟି ସମୟ ଦେଖାଯାଏ, ମାତ୍ର ଏପରି ଅବସ୍ଥା କେବେ ସୃଷ୍ଟି ହୁଏ ନାହିଁ ଯେତେବେଳେ ପକ୍ଷୀମାନେ କୌଣସି ପଦାର୍ଥ ପାଆନ୍ତି ନାହିଁ ।

ଏପରିକି ପ୍ରଖର ଗ୍ରୀଷ୍ମ ଋତୁରେ ଯେତେବେଳେ ଜଣାପଡ଼େ ଯେ ଜଙ୍ଗଲରେ କୌଣସି ଖାଦ୍ୟ ଦ୍ରବ୍ୟ ନାହିଁ, ଜଙ୍ଗଲ ପ୍ରାଣୀମାନେ ସେତେବେଳେ ଶକ୍ତି ପ୍ରଦାନକାରୀ କଅଁଳିଆ ଡ଼ାଳପତ୍ର ଖାଇ ହୃଷ୍ଟପୁଷ୍ଟ ଥାନ୍ତି । ଆଶ୍ଚର୍ଯ୍ୟଜନକ ଭାବେ ବର୍ଷର ସବୁଠାରୁ ଅତ୍ୟଧିକ ଉତପ୍ତ ଓ ଶୁଖିଲା ସମୟରେ ଏହି ଗଛଗୁଡ଼ିକ ପତ୍ରଝଡ଼ା ଦେଇ ନୂତନ ପତ୍ରରାଜି ସୃଷ୍ଟି କରିଥାନ୍ତି ।

ଆମେ ଯାହା ଦେଖୁ, ତାହା ହେଲା ଜଙ୍ଗଲରେ ଥିବା ବିଭିନ୍ନ ଜାତିର

ଗଛ ମୂଳରୁ ପରସ୍ପର ସହ ଯୋଡ଼ି ହୋଇ ରହି ନ ଥାନ୍ତି। କେତେକ କ୍ଷେତ୍ରରେ ପତ୍ରଗୁଡ଼ିକ ପରସ୍ପର ଉପରେ ମାଡ଼ି ହୋଇ ରହିଥାନ୍ତି। ମାତ୍ର ସର୍ବୋପରି ପ୍ରତ୍ୟେକ ଗଛର ନିଜସ୍ୱ ସ୍ୱତନ୍ତ୍ରତା ରହିଛି ଏବଂ ଏହା ଅନ୍ୟଗଛର ଅଧିକାର ଉପରେ ଅନଧିକାର ହସ୍ତକ୍ଷେପ କରେ ନାହିଁ। ଜଙ୍ଗଲର ପ୍ରତ୍ୟେକ ଅଞ୍ଚଳରେ ଥିବା ବୃକ୍ଷସମୂହ ଓ ପ୍ରାଣୀ ଜଗତକୁ ଆମେ ନିଜର କାର୍ଯ୍ୟପାଇଁ ନଷ୍ଟ କରୁଛୁ। ଏହି ପ୍ରକାର ପାରସ୍ପରିକ ସମ୍ପର୍କକୁ ପ୍ରକାଶ କରିବାର ଏକମାତ୍ର ପନ୍ଥା ହେଉଛି ଯାହାକୁ ଆମେ ଅଧିକାଂଶ ସମୟରେ ବ୍ୟବହାର କରି କହିଥାଉ ଏହା ଅତି "ଜଟିଳ ଜୀବନ"। ଆମେ ଜାଣୁ ଯେ ପ୍ରତ୍ୟେକ ଜୀବ ପରୋକ୍ଷ ଅବସ୍ଥା ଉପରେ ନିର୍ଭରଶୀଳ। ଗୋଟିଏ ଛୋଟିଆ ବ୍ୟତିକ୍ରମ କିପରି ଗୁରୁତ୍ୱପୂର୍ଣ୍ଣ ତାହା ମଧ୍ୟ ଆମେ ଜାଣୁ। ଏପରିକି କୌଣସି ଅବସ୍ଥାରେ କିଛି ଛୋଟ ପରିବର୍ତ୍ତନ ଘଟିଲେ ଏହା ବଡ଼ ପରିବର୍ତ୍ତନ ଘଟାଇଥାଏ।

ଏହା ସତ୍ୟ ଯେ ପ୍ରକୃତିଚକ୍ରରେ ସମସ୍ତେ ପରସ୍ପର ପ୍ରତି ସମ୍ବନ୍ଧଯୁକ୍ତ ହୋଇଥିବା ଜୀବସମ୍ପଦ ସାମୂହିକ ଭାବେ କୌଣସି ପ୍ରକାର ପ୍ରାକୃତିକ ବିପଦକୁ ଏଡ଼ାଇ ଯିବାର ସମ୍ଭାବନା ଅଧିକ। ଯଦି ମରୁଡ଼ି ପଡ଼େ କିମ୍ବା ଜଙ୍ଗଲରେ ନିଆଁ ଲାଗିଯାଏ, କିମ୍ବା ଯଦି କେତେକ ପ୍ରାଣୀ କୌଣସି ଏକ ରୋଗଦ୍ୱାରା ଆକ୍ରାନ୍ତ ହୁଅନ୍ତି, ଏଠାରେ ଏପରି କେତେକ ସହାୟକ ପଦାର୍ଥ ଥାଆନ୍ତି ଯାହାକି କିଛି ଦିନ ମଧ୍ୟରେ ଏହା ଯେପରି ସମତୁଲ ହୋଇଯିବ ତାର ବ୍ୟବସ୍ଥା କରିଥାନ୍ତି। ପଶୁପକ୍ଷୀଙ୍କ ବ୍ୟତୀତ ଏକ ଜଙ୍ଗଲ ସୃଷ୍ଟି କରିବାର ସିଦ୍ଧାନ୍ତ ଆମେ ହୁଏତ ଆଶା କରିପାରିବା। ମାତ୍ର ଏହା ମଣିଷ ଦ୍ୱାରା ପୋତା ଯାଇଥିବା କେତେକ ଗଛର ସମଷ୍ଟି ହିଁ ହେବ। ପଶୁପକ୍ଷୀଙ୍କ ବ୍ୟତୀତ ପ୍ରାକୃତିକ ଅବସ୍ଥା ସୃଷ୍ଟି କରିବା ଖୁବ କମ ସମ୍ଭବ।

ନିଜେ ସମ୍ପୂର୍ଣ୍ଣତା ଲାଭ କରିଥିବା ଏକ ବଡ଼ ଜଙ୍ଗଲ ଅନବରତ ଭାବେ ପୁନର୍ବିନ୍ୟାସ ଓ ସ୍ଥିରତା ଲାଭ କରିପାରେ ଓ ଏହାର ପରିସୀମା ଭିତରେ ଜୀବନ ସବୁବେଳେ ପରିବର୍ତ୍ତିତ, ଗତିଶୀଳ ଓ ଚଳଚଞ୍ଚଳ ଥିଲେ ସୁଦ୍ଧା ସ୍ଥିର ରହିଥାଏ। ଗୋଟିଏ ସ୍ୱତନ୍ତ୍ର ଜାତିର ବୃକ୍ଷ ଏକ ଋତୁରେ ସୁନ୍ଦର ଫଳ ଧାରଣ କରେ। ବହୁ ପକ୍ଷୀ ଓ ପଶୁ ଏହି ଗଛର ଫଳ ଖାଇ ବଂଶବୃଦ୍ଧି କରିଥାନ୍ତି। ଏଠାରେ ମଧ୍ୟ କେତେକ ଶକ୍ତିଶାଳୀ, ଲୁଣ୍ଠନକାରୀ ବା ଶତ୍ରୁ ଜୀବଙ୍କର ବଂଶବୃଦ୍ଧି ପାଇଁ ଅନୁକୂଳ ଅବସ୍ଥା ସୃଷ୍ଟି ହୋଇଥାଏ। ପ୍ରକୃତିର ସାଧାରଣ ନିୟମ ହେଉଛି ଅଧିକ ଖାଦ୍ୟ ଯୋଗାଣଦ୍ୱାରା ଶକ୍ତିଶାଳୀ

ମାନଙ୍କ ମଧ୍ୟରେ ବଂଶବୃଦ୍ଧି ପ୍ରକ୍ରିୟା ବୃଦ୍ଧି, ଯେତେବେଳେ କି ସେମାନଙ୍କର ଖାଦ୍ୟ ଗୋଷ୍ଠୀର ଜୀବଜନ୍ତୁ ଏକ କଠିନ ସମୟ ମଧ୍ୟରେ ସମୟ ବିତାଉଥାନ୍ତି ଓ ସେମାନଙ୍କ ସଂଖ୍ୟା କମି କମି ଯାଉଥାଏ ।

ପରବର୍ତ୍ତୀ ବର୍ଷ ଏହି ସ୍ୱତନ୍ତ୍ର ଖାଦ୍ୟ ଯୋଗାଣରେ ଅଭାବ ଦେଖାଦିଏ ଓ ଠିକ୍ ଏହାର ଓଲଟା ଅବସ୍ଥା ସୃଷ୍ଟି ହୁଏ । ଯେତେବେଳେ କୌଣସି ଜାତିର ଜୀବ ଆବଶ୍ୟକତା ଠାରୁ ଅଧିକ ସଂଖ୍ୟାରେ ବୃଦ୍ଧି ପାଆନ୍ତି, ସେତେବେଳେ ଏମାନଙ୍କୁ ଖାଉଥିବା ଜାତିର ଜୀବଙ୍କ ସଂଖ୍ୟା ମଧ୍ୟ ବୃଦ୍ଧି ପାଇଥାଏ । ଏତିକି ବେଳେ ଖାଦ୍ୟ ସଂଗ୍ରହ ପାଇଁ ହେଉଥିବା ପ୍ରତିଯୋଗିତାରେ ଦୁର୍ବଳ ଅଯୋଗ୍ୟ ହୋଇ ମୃତ୍ୟୁବରଣ କରେ । କିଛି ସମୟ ପାଇଁ ବୃଦ୍ଧିପ୍ରାପ୍ତ ହେବାପରେ ପୁଣି ପୂର୍ବାବସ୍ଥା ବା ସମତା ଫେରିଆସେ । ଏହା ଜଣାଶୁଣା ଯେ ପେଚା ଓ ମୂଷା ବଂଶ ମଧ୍ୟରେ କିଛିଟା ସମ୍ପର୍କ ରହିଛି । ଯେଉଁବର୍ଷ ମୂଷାମାନଙ୍କ ସଂଖ୍ୟା ବଢ଼େ ସେ ବର୍ଷ ପେଚାମାନେ ଅଧିକ ସଂଖ୍ୟାରେ ଅଣ୍ଡା ଦେବାର ଦେଖାଯାଏ ।

ଜଙ୍ଗଲର ମୂଳଦୁଆ ହେଉଛି ଏହାର ବୃକ୍ଷ ସମ୍ପଦ । ବୃକ୍ଷ ନ ଥିଲେ ଅନ୍ୟ କୌଣସି ଜାତିର ଜୀବଜନ୍ତୁ ଦେଖିବା ସମ୍ଭବ ନୁହେଁ । ଯଦି ଜଙ୍ଗଲ ବୃକ୍ଷ ସମ୍ପଦରେ ଭରପୁର ଥାଏ, ତେବେ ଅନ୍ୟ ଜୀବଜନ୍ତୁଙ୍କ କ୍ଷୟବୃଦ୍ଧି, ଉତ୍‌ଥାନ ପତନ ସର୍ବଦା ସମାନ ରହିଥାଏ । ଆମେ ଯେତେବେଳେ ଜଙ୍ଗଲରେ ବାସ କରୁଥିବା ବହୁ ସଂଖ୍ୟକ ପ୍ରାଣୀ, ପକ୍ଷୀ ଓ କୀଟ ପତଙ୍ଗ ଓ ସରୀସୃପ ଉପରେ ଗୁରୁତ୍ୱ ଦେବା, ସେତେବେଳେ ଆମେ ଦେଖିବା, ଏମାନେ ଜଙ୍ଗଲରୁ ହିଁ ସେମାନଙ୍କର ଖାଦ୍ୟ ସଂଗ୍ରହ ସହିତ ବାସ କରିଥାନ୍ତି । ମାତ୍ର ଆମେ ବେଳେବେଳେ ଭୁଲିଯାଉ ଯେ ପ୍ରାଣୀଙ୍କ ବ୍ୟତୀତ ମଣିଷ ମଧ୍ୟ ଜୀବିକା ନିର୍ବାହ ପାଇଁ ବହୁ ଦରକାରୀ ପଦାର୍ଥ ଜଙ୍ଗଲରୁ ଲାଭ କରିଥାଏ, ଯଦିଓ ଅଧିକ ସଂଖ୍ୟକ ମଣିଷ ଏହା ଉପରେ ନିର୍ଭର କରନ୍ତି ନାହିଁ । ଆଦିବାସୀମାନେ ସାଧାରଣତଃ ଜଙ୍ଗଲରେ ସାରାଜୀବନ ବାସ କରିଥାନ୍ତି ଏବଂ ଖାଦ୍ୟ, ବସ୍ତ୍ର, ପୋଷାକ, ଔଷଧପତ୍ର ଇତ୍ୟାଦି ଜଙ୍ଗଲଜାତ ପଦାର୍ଥରୁ ସଂଗ୍ରହ କରିଥାନ୍ତି । କେତେକ ଆଦିବାସୀ ବହୁ ସୌଖିନ ପଦାର୍ଥ କୌଶଳପୂର୍ଣ୍ଣ ଭାବେ ସଂଗ୍ରହ କରୁଥିବା ବେଳେ ଅନେକ ଅତି ସାଧାସିଧା ଭାବେ ଜୀବିକା ଅର୍ଜନ କରିଥାନ୍ତି । ମାତ୍ର ଏହା ପ୍ରମାଣିତ ହୋଇଛି ଯେ, ଗୋଟିଏ ସୁସ୍ଥ ଜଙ୍ଗଲ ମଣିଷର ବସବାସ ପାଇଁ ବହୁ ଅତ୍ୟାବଶ୍ୟକ ପଦାର୍ଥ ସୃଷ୍ଟି କରିପାରେ । ମାତ୍ର ଏବେ

ଜଙ୍ଗଲ କ୍ରମେ ଲୋପ ପାଇ ଯାଉଥିବାରୁ ଶହ ଶହ ବର୍ଷ ଧରି ଜଙ୍ଗଲଜାତ ଗଛ, ପତ୍ର, ମୂଳ, ଛେଲି ଓ ପ୍ରଶାଖାରୁ ସେମାନେ ପ୍ରସ୍ତୁତ କରୁଥିବା ବହୁ ଖାଦ୍ୟୋପଯୋଗୀ ଓ ଔଷଧ ବୃକ୍ଷର ଉପକାରିତା ବିଷୟରେ ଆମେ ସେମାନଙ୍କଠାରୁ ଜାଣିପାରୁ ନାହୁଁ।

ଏହା ବ୍ୟତୀତ ଆଦିବାସୀମାନେ ଜଙ୍ଗଲ ସହିତ ଓ ପ୍ରାଣୀମାନଙ୍କ ଚାଲିଚଳଣ ସହିତ ଏତେ ଅଭ୍ୟସ୍ତ ଯେ, ଏସବୁ ଜାଣିବାକୁ ପ୍ରକୃତିବିତ୍‌ମାନଙ୍କୁ ବହୁ ବର୍ଷ କଠିନ ପରିଶ୍ରମ କରିବାକୁ ହେବ।

ଯଦି ଜଙ୍ଗଲ ନିଜେ ଏକ ସ୍ୱାଧୀନ ଅଞ୍ଚଳ ହୋଇଥାନ୍ତା, ଯେଉଁଠାରେ କି ବହୁ ପ୍ରକାର ଜୀବଜନ୍ତୁ ନିଜ ନିଜ ମଧ୍ୟରେ ଘନିଷ୍ଠତା ରକ୍ଷାକରି ବୃଦ୍ଧି ପାଉଥାନ୍ତେ, ତେବେ ବାହାର ଜଗତର ଜୀବଙ୍କୁ ଏହା କିପରି ଭାବେ ସାହାଯ୍ୟ କରିପାରନ୍ତା ? ଏକ ବୃହତ୍ ଜଙ୍ଗଲ ଭିତରେ କଣ ବହୁ ସୌନ୍ଦର୍ଯ୍ୟପୂର୍ଣ୍ଣ ଓ ଆତ୍ମସନ୍ତୋଷକାରୀ ପଦାର୍ଥ ରହିଛି, ଯାହାକି ଏହାଠାରୁ ଦୂରରେ ଥିବା ଦେଶର ଅନ୍ୟ ଅଞ୍ଚଳକୁ କିଛି ସାହାଯ୍ୟ କରେ ? ଏହାର ଉତ୍ତର ଆସ୍ତିସୂଚକ।

ଜଙ୍ଗଲ ଉପକଣ୍ଠରେ କୃଷିକ୍ଷେତ୍ର ରହିବା ଲାଭଦାୟକ ବୋଲି କୃଷି ବିଶେଷଜ୍ଞମାନେ କହନ୍ତି। ନିମ୍ନରେ ଜଙ୍ଗଲରୁ ମିଳୁଥିବା କେତେକ ଉପକାର ବର୍ଣ୍ଣିତ ହେଲା:

1.ଜଙ୍ଗଲ ବର୍ଷାପାଣିକୁ ଧରି ରଖେ ଓ ଏହାକୁ ଭୂତଳ ଜଳସ୍ରୋତରେ ମିଶାଇ ଦେବାରେ ସାହାଯ୍ୟ କରିଥାଏ। ପୂର୍ବ ଅଧ୍ୟାୟରେ ଆମେ ଏ ବିଷୟରେ ଆଲୋଚନା କରିଛେ।

2.ଜଙ୍ଗଲ ଛାୟାପୂର୍ଣ୍ଣ ହୋଇଥିବାରୁ ଶୀତଳ ଅଞ୍ଚଳରୂପେ ପରିଚିତ। ଏହା ବ୍ୟତୀତ ପତ୍ରରାଜିରୁ ହେଉଥିବା ଉଦ୍ଭେଦନ ପ୍ରକ୍ରିୟା ମାଧ୍ୟମରେ ବାୟୁମଣ୍ଡଳ ପ୍ରଭାବିତ ହୋଇଥାଏ ଓ ଜଙ୍ଗଲ ଚତୁଃପାର୍ଶ୍ୱ ଅଞ୍ଚଳକୁ ଅଧିକ ଥଣ୍ଡା ରଖି ଖରାରେ ଦିନ ତମାମ କାମ କରୁଥିବା ଆମ ଦେଶର ଲୋକଙ୍କୁ ସହାୟତା ଯୋଗାଇଥାଏ। ରାଞ୍ଚି ଓ ପୁନା ପରି ସହର ନିକଟରେ ଥିବା ଜଙ୍ଗଲ ସମ୍ପଦ ଓ ଗଛ ସଂଖ୍ୟା ଏବେ କମିଯିବାରୁ ଏହି ସହର ଅଧିକ ଉତ୍ତପ୍ତ ହୋଇଯାଇଛି।

3.ପ୍ରଖର ସୂର୍ଯ୍ୟତାପରୁ ଅଳ୍ପ ସୁରକ୍ଷିତ ରହିଥିବା ଘାସ ସବୁବେଳେ ବିଶେଷ କରି ଗ୍ରୀଷ୍ମଋତୁରେ ଗାଈଗୋରୁଙ୍କ ପାଇଁ ଭଲ ଓ ଅଧିକ ପୁଷ୍ଟିକର। ତେଣୁ ମାଲିକମାନେ ଗାଈଗୋରୁଙ୍କୁ ଏହି ସମୟରେ ଜଙ୍ଗଲ ଭିତରକୁ ଚରିବାକୁ ଛାଡ଼ି ଦେଇଥାନ୍ତି। ସୀମିତ ସମୟ ପାଇଁ ଏହା ଲାଭ ଦାୟକ ହୋଇଥାଏ। ଏହା ଗାଈଗୋରୁଙ୍କୁ

ସାହାଯ୍ୟ କରିବା ସଙ୍ଗେ ସଙ୍ଗେ ଜଙ୍ଗଲର କ୍ଷତି କରେ ନାହିଁ। ମାତ୍ର ଯେହେତୁ ଜଙ୍ଗଲ କ୍ରମେ ଛୋଟ ହୋଇଯାଉଛି ଏବଂ ଗାଈଗୋରୁଙ୍କ ସଂଖ୍ୟା କ୍ରମାଗତ ଭାବେ ବଢ଼ିଚାଲିଛି, ଜଙ୍ଗଲ ପୁନଃସୃଷ୍ଟି ପାଇଁ ଚରିବା ଏକ ମୁଖ୍ୟ ପ୍ରତିବନ୍ଧକ ରୂପେ ଦେଖାଦେଉଛି।

4. କୃଷି ବିଶେଷଜ୍ଞମାନଙ୍କ ପାଇଁ ଜଙ୍ଗଲର ସାନ୍ନିଧ ଅନେକ ଉପକାର କରିଥାଏ। ଯାହାକି ସବୁବେଳେ ସୁସ୍ପଷ୍ଟ ନୁହେଁ। ଏହା ସତ୍ୟ ଯେ ଜଙ୍ଗଲ ବାୟୁ ପ୍ରବାହ ଜନିତ କ୍ଷୟ କ୍ଷେତ୍ରରେ ପ୍ରତିବନ୍ଧକ ସୃଷ୍ଟି କରିଥାଏ। ଗୋଟିଏ ଗଛର ଆୟତନ ମଧ ଆମକୁ ପ୍ରବଳ ପବନରୁ ସୁରକ୍ଷା ପ୍ରଦାନ କରିପାରେ। ଏହାର ମୂଳରେ ଛାୟା ବା ଆଡୁଆଳ ସ୍ଥାନ ରହିଥାଏ। ଏକ ଘଞ୍ଚ ଜଙ୍ଗଲରେ ଥିବା ବୃକ୍ଷରାଜିରେ ଏହିପରି ବହୁ ମାଇଲ ବ୍ୟାପି ଆଢୁଆଳ ସ୍ଥାନ ରହିଥିବା ଆମକୁ ଅନୁମାନ କରିବାକୁ ହେବ। ପବନର ପଥରୋଧକ ଭାବେ ଜଙ୍ଗଲ କାର୍ଯ୍ୟକରି କୃଷକମାନଙ୍କର ବହୁ ଉପକାର କରେ। ଖୋଲାସ୍ଥାନରେ ପବନ ଦ୍ୱାରା ଉଡୁଥିବା ଧୂଳିର ବାଦଲ ହିଁ ପ୍ରକୃତରେ ମାଟିର ଉପର ଉର୍ବର ମୃତ୍ତିକା। ଜମିକୁ ହଳ କରିବା ପରେ ଏହା ପବନ ଦ୍ୱାରା ଉଡ଼ି ଆସିଥାଏ। ଜଙ୍ଗଲ କିନ୍ତୁ ଏହି ପବନର ଗତିରୋଧ କରି ନିକଟବର୍ତ୍ତୀ ଅଞ୍ଚଳର ଉର୍ବର ମୃତ୍ତିକାକୁ ସଂରକ୍ଷଣ କରିଥାଏ।

5. କୃଷିବିତ୍‌ମାନଙ୍କ ପାଇଁ ଜଙ୍ଗଲ ମଧ ଆଉ ଏକ ଉପକାର କରିଥାଏ ଯାହାକି କମ୍ ସମର୍ଥିତ। ଏହା ଅନିଷ୍ଟକାରୀ ଜୀବଜନ୍ତୁଙ୍କ ପାଇଁ ଏକ ପ୍ରତିରୋଧକ ରୂପେ କାର୍ଯ୍ୟ କରିଥାଏ। ଅନିଷ୍ଟକାରୀ ଜୀବ ହୁଏତ ଏକ ପ୍ରାଣୀ, କୀଟପତଙ୍ଗ, ଯାହାକି ଏକ ଖରାପ ଅବସ୍ଥା ଦେଇ ଗତି କରୁଥାଏ ବା ଯାହାଙ୍କର ସଂଖ୍ୟା ଆଶାତୀତ ଭାବେ ବୃଦ୍ଧି ପାଇଯାଇଥାଏ। ଯେତେବେଳେ ଏହି ପ୍ରାଣୀଙ୍କୁ ପ୍ରଚୁର ଖାଦ୍ୟ ମିଳେ, ସେତେବେଳେ ଏହିପରି ଅବସ୍ଥା ଘଟିଥାଏ (ଉଦାହରଣ ସ୍ୱରୂପ, ଯେତେବେଳେ ଶସ୍ୟକ୍ଷେତ୍ରରେ ଶସ୍ୟ ପାଚେ) ଓ ଖାଦକ ପ୍ରାଣୀଙ୍କ ସଂଖ୍ୟା କ୍ରମାନୁପାତରେ ବଢ଼େ ନାହିଁ। ଏମାନେ ଖୁବଶୀଘ୍ର ବୃଦ୍ଧିପ୍ରାପ୍ତ ହୋଇ ବହୁ କ୍ଷତି ଘଟାଇଥାନ୍ତି। ଗୋଟିଏ ଭଲ ଜଙ୍ଗଲର ସ୍ୱରୂପ ହେଉଛି ଯେ ଏହିପ୍ରକାର ପ୍ରାଣୀଙ୍କର ପ୍ରାକୃତିକ ଶତ୍ରୁ ନିକଟରେ ଥାଆନ୍ତି ଓ ଏ ପ୍ରକାର ଅନିଷ୍ଟକାରୀ ଜନ୍ତୁଙ୍କୁ ଏମାନେ ସହଜରେ ନିୟନ୍ତ୍ରଣ କରିପାରନ୍ତି। ଏହି ଜଙ୍ଗଲ ପକ୍ଷୀ, ପ୍ରାଣୀ, କୀଟପତଙ୍ଗ, ସରୀସୃପ ଓ ବୃକ୍ଷରାଜିରେ ପରିପୂର୍ଣ୍ଣ ହୋଇ ରହିଥାଏ ଓ ସମସ୍ତେ ପରସ୍ପର ଉପରେ ନିର୍ଭରଶୀଳ ହୋଇ ବାସ କରୁଥାନ୍ତି। ଏଠାରେ କୌଣସି କୀଟ ପତଙ୍ଗ କିମ୍ବା ପ୍ରାଣୀ ସହଜରେ ଅନିଷ୍ଟକାରୀ ହେବାକୁ ସୁଯୋଗ

ପଥାଡି ନାହିଁ।

ବାସ୍ତବିକ ଜଙ୍ଗଲ ନିକଟରେ ବା ଜଙ୍ଗଲ ଭିତରେ ଥିବା ଜମିରେ କୃଷିକାର୍ଯ୍ୟ ଭଲ ହେଉଥିବାରୁ ଚାଷୀ ଏହି ଜମିକୁ ଆବଦ୍ଧ କରି ଚାଷ କରିବାକୁ ଚାହିଁଥାଏ। ଏଠାରେ ହୁଏତ ଝରଣା ଥାଏ କିମ୍ବା ଭୂତଳ ଜଳସ୍ତର ମାଟିର ଖୁବ ନିକଟରେ ରହିଥାଏ। ଏଠାକାର ମୃତ୍ତିକା ଉର୍ବର ହୋଇଥାଏ କାରଣ ଏହା କମ୍ ପରିମାଣରେ କ୍ଷୟପ୍ରାପ୍ତ ହୋଇଥାଏ। ଏହା ସତ୍ୟ ଯେ ଜଙ୍ଗଲ ନିଜେ ହିଁ ନୂତନ ମୃତ୍ତିକା ସୃଷ୍ଟି କରିଥାଏ। ଝଡ଼ିପଡ଼ିଥିବା ଶୁଖିଲାପତ୍ର ସବୁ ଶହ ଶହ ବର୍ଷ ମାଟିରେ ପଡ଼ି ରହିବା ପରେ ମୃତ୍ତିକାରେ ପରିଣତ ହୋଇଥାଏ। ଜଙ୍ଗଲ ନୂତନ ମୃତ୍ତିକା ପ୍ରସ୍ତୁତ କରିବା ସଙ୍ଗେ ସଙ୍ଗେ ଅନିଷ୍ଟକାରୀ ଜୀବଜନ୍ତୁଙ୍କ ସମସ୍ୟାକୁ ଆୟତ୍ତ କରି ରଖିଥାଏ।

ଏହା ସତ୍ୟ ଯେ ପ୍ରତ୍ୟେକ ଚାଷୀ ଜଙ୍ଗଲ ଉପକଣ୍ଠରେ ଖଣ୍ଡେ ଚାଷଜମି ପାଇପାରିବେ ନାହିଁ। ମାତ୍ର ଆମେ ଏହି ସମସ୍ୟାକୁ ସବୁ ଆଡ଼କୁ ବିସ୍ତାରିତ କରିପାରିବା। ଆମେ ଆମର ଶସ୍ୟ କ୍ଷେତ୍ରର ଚତୁଃପାର୍ଶ୍ୱରେ କ୍ଷୁଦ୍ର ଜଙ୍ଗଲ ସୃଷ୍ଟି କରିପାରିବା। ପ୍ରାକୃତିକ ଉପାୟରେ ସୃଷ୍ଟି ହୋଇଥିବା ଜଙ୍ଗଲ ସବୁଠାରୁ ଭଲ, ମାତ୍ର ଏକ କ୍ଷୁଦ୍ର ବୃକ୍ଷରାଜିପୂର୍ଣ୍ଣ ଅଞ୍ଚଳ ଯାହାକି ଚିହ୍ନା ଗଛରେ ଭରପୁର ହୋଇଥାଏ, ତାହାକୁ ଆମେ କିଛିଦିନ ପାଇଁ ପରିପୂର୍ଣ୍ଣ ଓ ବିସ୍ତାରିତ ହେବାକୁ ଛାଡ଼ିଦେବା ଉଚିତ। ଏହା ଏକ ଉତ୍ତମ ବିକଳ୍ପ ରୂପେ ବ୍ୟବହୃତ ହୋଇପାରିବ।

ଆମେ ସମସ୍ତେ ବିଶ୍ୱାସ କରୁ ଯେ ଜଙ୍ଗଲ ବର୍ଷାକୁ ଆକର୍ଷିତ କରିଥାଏ। ମାତ୍ର ଏବେ ସୁଦ୍ଧା ଏହା ସନ୍ତୋଷଜନକ ଭାବେ ପ୍ରମାଣିତ ହୋଇ ନାହିଁ। ନିକଟ ଅତୀତରେ ଦକ୍ଷିଣ ଭାରତରେ କେତେକ ପରୀକ୍ଷା କରାଯାଇଛି, ମାତ୍ର ଏଥିରୁ ମିଳିଥିବା ଫଳାଫଳ ସନ୍ତୋଷଜନକ ନୁହେଁ। ଆମେ ଜଙ୍ଗଲ ସୃଷ୍ଟି କରିବା ଦ୍ୱାରା ସେ ଅଞ୍ଚଳରେ ବର୍ଷା ବଢ଼ିଥାଏ, ଏହା ପ୍ରମାଣ କରିବାକୁ ଆମକୁ ବହୁ ବିଳମ୍ବିତ ପରୀକ୍ଷା ନିରୀକ୍ଷା କରିବାକୁ ହେବ। ଅନ୍ୟପକ୍ଷରେ ଏହାର ଠିକ ଓଲଟା କଥା ବିଚାର କରିବା ଅତି ସୁସ୍ପଷ୍ଟ। ତାହା ହେଲା, ଯେଉଁ ପରିତ୍ୟକ୍ତ ଅଞ୍ଚଳରେ ପ୍ରଚୁର ବର୍ଷା ହୋଇଥାଏ, ସେଠାରେ ଜଙ୍ଗଲ ଥାଏ। ଜଙ୍ଗଲ ବର୍ଷାକୁ ଆକର୍ଷଣ କରେ, ଏହି ଲୋକକଥାର ସତ୍ୟାସତ୍ୟ ହୁଏତ ଏଇଥିପାଇଁ ସୃଷ୍ଟି ହୋଇଛି ଯେହେତୁ ଜଙ୍ଗଲ ନିକଟରେ ସବୁବେଳେ ପାଣି ମିଳିଥାଏ। ଆମେ ଦେଖୁଥାଉଁ ଯେ ଜଙ୍ଗଲ ଭୂମିତଳ ଜଳକୁ ବୃଦ୍ଧି

ଓ ସଂରକ୍ଷଣ କରିବାରେ ସାହାଯ୍ୟ କରିଥାଏ। ତେଣୁ ଜଙ୍ଗଲ ନିକଟରେ ଓ ଭିତରେ ବିଶେଷକରି ପର୍ବତାଞ୍ଚଳରେ ସବୁବେଳେ ଝରଣା ଥାଏ। ଝରଣା ପରୋକ୍ଷରେ ନୂତନ ସୃଷ୍ଟି ପାଇଁ ପ୍ରେରଣା ଯୋଗାଇବା ସଙ୍ଗେ ସଙ୍ଗେ ଜଙ୍ଗଲ ଘଞ୍ଚ ଓ ବଢ଼ିବାରେ ଏବଂ ବହୁ ଜମିଭୂମିକୁ ବ୍ୟାପିବାରେ ସାହାଯ୍ୟ କରି ଭୂତଳ ଜଳସ୍ତରକୁ ବୃଦ୍ଧି କରିଥାଏ।

ଆମ ଭାରତବର୍ଷରେ ଜଙ୍ଗଲ ହିଁ ଆମ ସ୍ଥଳଭାଗର ପ୍ରାକୃତିକ ରକ୍ଷାକାରୀ। ଏକ ଭଲ ଜଙ୍ଗଲ ଏହା ଭିତରେ ଥିବା ଭୂମି ଉତ୍ତମ ଓ ଉର୍ବର ବୋଲି ପ୍ରତିପାଦିତ କରିଥାଏ। ଏଥିରେ ଥିବା ସମସ୍ତ ପ୍ରାକୃତିକ ଶକ୍ତି, ଯଥା ଜଳ, ମୃତ୍ତିକା ଓ ପ୍ରାଣୀଜଗତ ପରସ୍ପର ମଧ୍ୟରେ ସଂଯୋଗ ରକ୍ଷାକରି ପତ୍ର, କାଠ, ଜୀବଜନ୍ତୁ, ପକ୍ଷୀ, କୀଟପତଙ୍ଗ ଓ ସରୀସୃପ ଭଳି ବହୁ ଜୀବନ୍ତ ପଦାର୍ଥ ପ୍ରଚୁର ପରିମାଣରେ ସୃଷ୍ଟି କରିଥାନ୍ତି। ଶୁଖିଲା ପତ୍ରରାଜି ଓ ଅନ୍ୟାନ୍ୟ ମୃତ ବୃକ୍ଷରାଜି ଦ୍ୱାରା ମୃତ୍ତିକା ଉର୍ବର ଓ ପୁଷ୍ଟ ହୋଇଥାଏ। ବୀଜରୋପଣ, ବୃଦ୍ଧି, ଯୌବନପ୍ରାପ୍ତି, ନଷ୍ଟ ହେବା, ମୃତ୍ୟୁ ଇତ୍ୟାଦି ଜଙ୍ଗଲ ମଧ୍ୟରେ ଆପେ ଆପେ ହେଉଥାଏ ଓ ଏହି ଚକ୍ର କ୍ରମାଗତ ଭାବେ ଚାଲିଥାଏ। ଆମେ ଜଙ୍ଗଲ ଉପରେ କ୍ରମାଗତ ହସ୍ତକ୍ଷେପ ନ କଲେ ଏହା ବହୁଦିନ ଧରି ତିଷ୍ଠି ରହିପାରିବ।

ଏପରିକି, ଏହା ଅଗ୍ନିକାଣ୍ଡ, ବନ୍ୟା ଓ ଭୂମିକମ୍ପ ଭଳି ପ୍ରାକୃତିକ ବିପର୍ଯ୍ୟୟକୁ ମଧ୍ୟ ସହି ଯାଇପାରେ। ହୁଏତ ଏଥିରେ ଏହାର ପରିସୀମା ଓ ଉପାଦାନ ବଦଳି ଯାଇପାରେ, ନୂତନ ବୃକ୍ଷରାଜି ଓ ଜୀବନ ହୁଏତ ସୃଷ୍ଟି ହୋଇପାରେ ଓ ବୁଢ଼ା ହୋଇଥିବା ଗଛ ଭାଙ୍ଗିଯାଇ ନଷ୍ଟ ହୋଇପାରେ, କିନ୍ତୁ ଜଙ୍ଗଲର ଅସ୍ତିତ୍ୱ ଲୋପପାଏ ନାହିଁ। ଏହା ପ୍ରତ୍ୟେକ ଜୀବନ୍ତ ପଦାର୍ଥ ମଧ୍ୟରେ ଏପରି ସମନ୍ୱୟ ରକ୍ଷା କରିଥାଏ ଯେ ଗୋଟିଏ ଜୀବନ୍ତ ପଦାର୍ଥ ଅନ୍ୟକୁ ସହଯୋଗ କରେ ଏବଂ ଏହାଫଳରେ କାହାର କିଛି ବିଶେଷ କ୍ଷତି ହୁଏ ନାହିଁ। ଶହ ଶହ ବର୍ଷ ଧରି ଏହି ପ୍ରକାର ପରିବର୍ତ୍ତନ ଓ ସମନ୍ୱୟ ରକ୍ଷାପରେ ଜଙ୍ଗଲ ଏପରି ଏକ ଅବସ୍ଥାରେ ପହଞ୍ଚେ, ଯେତେବେଳେ କେତେକ ପ୍ରାଧାନ୍ୟ ବିସ୍ତାର କରୁଥିବା ଜାତିର ଜୀବନ୍ତ ପଦାର୍ଥ ଏଠାରେ ପ୍ରମୁଖ ହୋଇ ବାସ କରନ୍ତି ଏବଂ ମୃତ୍ତିକା ଓ ଜଳବାୟୁ ଅବସ୍ଥା ଅନୁସାରେ ଅନ୍ୟ ଜାତିର ଜୀବନ୍ତ ପଦାର୍ଥ ମଧ୍ୟ ସେହି ଅନୁପାତରେ ଦେଖାଯାଆନ୍ତି। ଏପରି ଅବସ୍ଥାକୁ ଚରମ ଅବସ୍ଥା ବୋଲି କୁହାଯାଏ। ଏହି ଅବସ୍ଥା ବହୁଦିନ ଯାଏଁ ରହିପାରେ

ଓ ନିଜକୁ ମାର୍ଜିତ ଓ ପରିବର୍ତ୍ତିତ କରିପାରେ । ଏପରି ଅବସ୍ଥା ଘଟେ, କାରଣ ଖୁବଶୀଘ୍ର ବଢୁଥିବା କାଠ ଉତ୍ପାଦନକାରୀ ଗଛଗୁଡ଼ିକ ଧୀରେ ଧୀରେ ବଢ଼ି ବହୁଦିନ ବଞ୍ଚୁଥିବା ଶକ୍ତକାଠ ଉତ୍ପାଦନକାରୀ ଗଛକୁ ଖୁବଶୀଘ୍ର ଅତିକ୍ରମ କରିଯାଆନ୍ତି । ଯୁବ ଅବସ୍ଥାରେ ଜଙ୍ଗଲର ଚିତ୍ର କ୍ରମେ ପରିବର୍ତ୍ତିତ ହୋଇଥାଏ । ଯେତେବେଳେ କାଠ ଉତ୍ପାଦନକାରୀ ବୃକ୍ଷ ସମୂହ ସେମାନଙ୍କର ସର୍ବୋଚ୍ଚ ଉଚ୍ଚତାରେ ପହଞ୍ଚନ୍ତି, ଏହାର ଛାୟାଞ୍ଚଳ କ୍ରମେ ବଢ଼ିଯାଏ ଓ ଭୂମିରେ ପଡ଼ୁଥିବା ସୂର୍ଯ୍ୟାଲୋକ କ୍ରମେ କମିଯାଏ । ଏହା ଫଳରେ ଏଠାରେ ବହୁ ଛାୟାପ୍ରେମୀ ଗଛ ସୃଷ୍ଟି ହୋଇଥାନ୍ତି । ପଶୁପକ୍ଷୀ, କୀଟପତଙ୍ଗ ଓ ବୃକ୍ଷରାଜି ସମେତ ଜଙ୍ଗଲରେ ଦେଖାଯାଉଥିବା ପ୍ରତ୍ୟେକ ଜୀବନ୍ତ ପଦାର୍ଥ ସର୍ବଶେଷରେ ଏକ ଶୀର୍ଷ ସୀମାରେ ପହଞ୍ଚିଥାନ୍ତି । ଏକ ପୁରାତନ, ପରିପୁଷ୍ଟ ଜଙ୍ଗଲ ପ୍ରାକୃତିକ ଶକ୍ତିର ଗନ୍ତାଘର । ଗୋଟିଏ ଜଙ୍ଗଲ ଏହି ଅବସ୍ଥାରେ ପହଞ୍ଚିବାକୁ ହୁଏତ କେତେଶହ ବର୍ଷ ଲାଗିଥାଏ, ମାତ୍ର ଗୋଟିଏ ବୁଲଡ଼ୋଜର ମାତ୍ର କେତେଘଣ୍ଟାରେ ଏହାକୁ ସମୂଳେ ଧ୍ୱଂସ କରି ଦେଇପାରେ ।

ଆମେ ଯେତେବେଳେ ଜଙ୍ଗଲ ବିଷୟରେ କଥାବାର୍ତ୍ତା ହେଉ, ସେତେବେଳେ ହୁଏତ ଆମେ, ଚିନ୍ତା କରୁ ଯେ ସବୁ ଜଙ୍ଗଲ ଅଛେ ବହୁତେ ଏକ ପ୍ରକାର । ମାତ୍ର, ଏହା ସବୁ ଜଙ୍ଗଲ କ୍ଷେତ୍ରରେ ସତ୍ୟ ନୁହେଁ । ପ୍ରତ୍ୟେକ ଜଙ୍ଗଲର ଅବସ୍ଥା ନିଜର ଅକ୍ଷାଂଶ, ବିସ୍ତୃତି, ଜଳବାୟୁ, ଭୂଭାଗ, ମୃତ୍ତିକା ଓ ଜଳ ଅବସ୍ଥା ଉପରେ ନିର୍ଭର କରିଥାଏ । ବିଭିନ୍ନ ଅଞ୍ଚଳରେ ସ୍ୱତନ୍ତ୍ର ଶ୍ରେଣୀର ବୃକ୍ଷରାଜି ଆଧିପତ୍ୟ ବିସ୍ତାର କରିଥାନ୍ତି । ତେଣୁ ନିମ୍ନ ଅଞ୍ଚଳରେ ଥିବା ଅନ୍ୟାନ୍ୟ ବୃକ୍ଷରାଜି, ସେମାନଙ୍କର ସମଷ୍ଟି ଓ ସମତା ଓ ବିଭିନ୍ନ ଜାତିର ଏବଂ ସଂଖ୍ୟାର ପ୍ରାଣୀଙ୍କ କ୍ଷେତ୍ରରେ ମଧ୍ୟ ଏହି ପ୍ରକାର ଅବସ୍ଥା ଦେଖାଯାଏ ।

ଯଦିଓ ପ୍ରତ୍ୟେକ ଜଙ୍ଗଲ ଅନ୍ୟ ଜଙ୍ଗଲଠାରୁ ଭିନ୍ନ, ତଥାପି ଆମ ଭାରତର ଜଙ୍ଗଲକୁ ମୁଖ୍ୟତଃ କେତୋଟି ପ୍ରଧାନ ଭାଗରେ ବିଭକ୍ତ କରାଯାଇପାରେ । ଜଙ୍ଗଲବିତ୍‌ମାନେ ମୃତ୍ତିକା, ଜଳ ଅବସ୍ଥା, ଦେଖାଯାଉଥିବା ବୃକ୍ଷରାଜି ଇତ୍ୟାଦିକୁ ବିଚାରକୁ ନେଇ ଆମ ଦେଶର ଜଙ୍ଗଲକୁ ମୁଖ୍ୟତଃ ଷୋହଳ ଭାଗରେ ବିଭକ୍ତ କରିଛନ୍ତି ।

ଆମେ ଜଙ୍ଗଲ ବିଷୟରେ ଅନଭିଜ୍ଞ ଲୋକ ଏତିକି ଜାଣୁ ଯେ, ବିଭିନ୍ନ ସ୍ଥାନର ସ୍ୱତନ୍ତ୍ର ଅବସ୍ଥା ଭିନ୍ନ ଭିନ୍ନ ପ୍ରକାରର ବୃକ୍ଷରାଜି ଓ ଉଦ୍ଭିଦ ସୃଷ୍ଟି କରିଥାଏ ।

ଆମର ମୁଖ୍ୟତଃ ଦୁଇ ପ୍ରକାରର ଚିରହରିତ ଜଙ୍ଗଲ ସମ୍ପଦ ରହିଛି। ପ୍ରଥମଟି ହେଉଛି ଛୁଞ୍ଚିପରି ପତ୍ରଥିବା ଜଙ୍ଗଲ। ଏହା ସାଧାରଣତଃ ହିମାଳୟ ପାଦଦେଶର, ଉଚ୍ଚ ଅଞ୍ଚଳରେ ଦେଖାଯାଏ। ଏହି ଅଞ୍ଚଳରେ ବଡ଼ ପତ୍ରଥିବା ବୃକ୍ଷ ବଞ୍ଚିପାରେ ନାହିଁ (ଛୁଞ୍ଚିପରି ପତ୍ର ଥିବା ପାଇନ୍ ଓ ଫିର ପ୍ରଭୃତି ଗଛ ଅନ୍ୟ ଗଛଠାରୁ ଅଧିକ ଥଣ୍ଡା ସହିପାରନ୍ତି)। ଦକ୍ଷିଣ ଭାରତର ନୀଳଗିରି ପର୍ବତାଞ୍ଚଳରେ ମଧ୍ୟ ପାଇନ୍ ଜଙ୍ଗଲ ଦେଖାଯାଏ। ପ୍ରାୟତଃ ଏହି ଜଙ୍ଗଲ ଏକ ଦୀର୍ଘ ଅଞ୍ଚଳରେ ଏବଂ କେତେକ ସ୍ୱତନ୍ତ୍ର ଅବସ୍ଥାରେ ଓ ସମାନ୍ତରାଳ ଭାବରେ ଦେଖାଯାଏ। ଅନ୍ୟ ପ୍ରକାରର ଚିରହରିତ ଜଙ୍ଗଲ ସମ୍ପୂର୍ଣ୍ଣ ଭିନ୍ନ। ଏହା ହେଉଛି ଆର୍ଦ୍ର ଜଳବାୟୁର ଆସାମର ଓ ଦକ୍ଷିଣ ଭାରତର ଅଧିକାଂଶ ପର୍ବତାଞ୍ଚଳରେ ଦେଖାଯାଉଥିବା ନିରକ୍ଷମଣ୍ଡଳୀୟ ଜଙ୍ଗଲ। ଏଠାରେ ଉଦ୍ଭିଦର ଆକାର, ପରିମାଣ ଓ ସୀମା ଅତି ଉନ୍ନତ। ଏଠାକାର ଆର୍ଦ୍ର ଓ ଉଷ୍ଣ ଜଳବାୟୁରେ ହଜାର ହଜାର ସଂଖ୍ୟାରେ ପନିପରିବା ଗଛ ସହ ବହୁ ପ୍ରକାରର ଜୀବଜନ୍ତୁ ଦେଖାଯାଆନ୍ତି।

ବଡ଼ ବଡ଼ ଗଛର ଅଗ୍ରଭାଗ ଏକ ଛାତ ଆକୃତିର ଦୃଶ୍ୟ ସୃଷ୍ଟି କରିଥାନ୍ତି। ଏହା ଉପରୁ 'ଚିମିନୀ' ପରି ଅର୍ଥାତ୍ ଅପେକ୍ଷାକୃତ ଭାବେ ଏହାକୁ ଟପି ବଢ଼ିଥିବା ଡେଙ୍ଗାଗଛ ଗୁଡ଼ିକ ଦେଖାଯାଏ। ଏହାର ଅଗ୍ରଭାଗ ଅନ୍ୟ ସବୁ ଡେଙ୍ଗାଗଛକୁ ଟପି ଉପରକୁ ଉଠିଥାଏ। ଏମାନଙ୍କ ଭିତରୁ କେତେକ ଏତେ ଡେଙ୍ଗା ଯେ ଏମାନଙ୍କ ଶାଖା ପ୍ରଶାଖା ବିହୀନ କାଣ୍ଡକୁ ସାହାଯ୍ୟ କରିବାକୁ ମୂଳଗୁଡ଼ିକ ମାଟି ଉପରକୁ ଆଠ ଦଶ ଫୁଟ ଉଠିଥାନ୍ତି ଓ ଏକତ୍ର ରହି ଏକ ଫ୍ରେମ ତିଆରି କରିବାରେ ଗଛକୁ ସାହାଯ୍ୟ କରିଥାନ୍ତି। ଏହି ଗଛଗୁଡ଼ିକ ପର୍ଣ୍ଣମୋଚୀ ହୋଇ ନ ଥିବାରୁ ଏମାନଙ୍କର ଗହଳିଆ ପତ୍ରରାଜି ସମଗ୍ର ଜଙ୍ଗଲ ଉପରେ ଏକ ସ୍ଥାୟୀ ଆବରଣ ସୃଷ୍ଟି କରିଥାଏ। ଏହା ସହିତ କେତେକ ଲଟା, ବେତ, ବହୁ ସପୁଷ୍ପକ ଉଦ୍ଭିଦ ଓ ଶିଉଳି ପ୍ରଭୃତି ରହି ବନାନୀକୁ ଗହଳିଆ କରିଥାନ୍ତି। ଏମାନେ ସବୁ ପ୍ରାକୃତିକ ଉପାୟରେ ଆସୁଥିବା ସିଧା ସୂର୍ଯ୍ୟରଶ୍ମିକୁ ମାଟିରେ ପଡ଼ିବାକୁ ଦିଅନ୍ତି ନାହିଁ। ଏଥିରୁ ବୁଝାଯାଏ ଯେ ଏଠାରେ ନିମ୍ନ ଅଞ୍ଚଳରେ ଅଳ୍ପ ବୃକ୍ଷରାଜି ଥାନ୍ତି। ଯେଉଁଠାରେ ବଡ଼ ଗଛଟିଏ ଭାଙ୍ଗିପଡ଼ି ଏକ ଖୋଲାସ୍ଥାନ ସୃଷ୍ଟି କରିଥାଏ, ସେଠାରେ ସୂର୍ଯ୍ୟରଶ୍ମି ହୁଏତ ସିଧା ମାଟିଯାଏଁ ଆସିପାରେ। ଯେତେବେଳେ ଏହା ଘଟେ, ବହୁ କ୍ଷୁଦ୍ର ଉଦ୍ଭିଦ, ବୁଦାଳିଆ ଗଛ, ଲଟା, ଯେଉଁମାନେ କି ବଡ଼ ବଡ଼

ଗଛ ଦ୍ୱାରା ନିମ୍ନ ଅଞ୍ଚଳରେ ସାନ୍ଧି ହୋଇ ରହିଥାନ୍ତି, ବହୁ ସଂଖ୍ୟାରେ ହଠାତ୍ ଗଜୁରି ଉଠନ୍ତି। ବହୁ ବର୍ଷ ପରେ ଦେଖାଯାଏ ଯେ ଏମାନଙ୍କ ଭିତରୁ ସବୁଠାରୁ ବଳବାନ ବିଜୟଲାଭ କରି ଉପରକୁ ଉଠିଯାଏ। ଦୁର୍ବଳମାନେ ତଳେ ରହି ହୁଏତ ଜୀବନ ସଂଗ୍ରାମ କରନ୍ତି ବା ମରିଯାଆନ୍ତି। ଭାଙ୍ଗିଯାଇଥିବା ଗଛଟିଏ ମଧ୍ୟ କ୍ରମାଗତଭାବେ ଜଙ୍ଗଲକୁ ସାହାଯ୍ୟ କରିଥାଏ। ଗଛର ନଷ୍ଟ ହୋଇଥିବା ଗଣ୍ଡି ବହୁ ପ୍ରକାର ଛତୁ ଓ କୀଟପତଙ୍ଗଙ୍କର ବାସଗୃହ ବନିଯାଏ। ଅନ୍ୟ ଜଙ୍ଗଲ ପରି ଏଠାରେ ଜଙ୍ଗଲ ଶୀର୍ଷ ଅବସ୍ଥାରେ ପହଞ୍ଚିବାବେଳେ ମଧ୍ୟ କ୍ରମାଗତ ଗତି, ପରିବର୍ତ୍ତନ, ବୃଦ୍ଧି ଓ କ୍ଷୟ ଅବସ୍ଥା ଦେଇ ଗତି କରେ।

ଏହାର କାରଣ, ଏଠାରେ ଋତୁ ଠିକ ଭାବେ ଜଣାପଡ଼େ ନାହିଁ ଏବଂ ଖାଦ୍ୟ ବହୁ ଭାବରେ ବିଶେଷ କରି ବିଭିନ୍ନ ଫଳ ଓ ମହୁ ରୂପେ ବର୍ଷ ସାରା ମିଳିଥାଏ। ତେଣୁ ଗ୍ରୀଷ୍ମ ମଣ୍ଡଳୀୟ ଚିରହରିତ ଜଙ୍ଗଲରେ ବିପୁଳ ସଂଖ୍ୟାରେ ପ୍ରାଣୀମାନେ ଦେଖାଯାଆନ୍ତି, ଯେହେତୁ ଅଧିକାଂଶ ଖାଦ୍ୟ ପଦାର୍ଥ ଉଚ୍ଚ ଗଛର ଡାଳରେ ଥାଏ, ତେଣୁ ବହୁ ଗଛରେ ବାସ କରୁଥିବା ଜୀବ ଓ ଉଡ଼ନ୍ତା ପ୍ରାଣୀ, ପକ୍ଷୀ ଓ କୀଟପତଙ୍ଗ ଦେଖାଯାଆନ୍ତି। ଏମାନେ ସାଧାରଣତଃ ଗଛର ଅଗ୍ରଭାଗରେ ଘଞ୍ଚ ପତ୍ର ଗହଳରେ ବାସ କରନ୍ତି।

ଗ୍ରୀଷ୍ମ ମଣ୍ଡଳୀୟ ଚିରହରିତ୍ ଜଙ୍ଗଲ ବର୍ଷ ସାରା ଉଷ୍ଣ ଓ ଆର୍ଦ୍ର ଜଳବାୟୁରେ ଉନ୍ନତ ଓ ବିଭିନ୍ନ ଜାତିର ଜଟିଳ ବୈଚିତ୍ର୍ୟମୟ ପ୍ରାଣୀ ସୃଷ୍ଟି କରିଥାଏ। ଆମ ଭାରତୀୟ ଚିରହରିତ ଜଙ୍ଗଲ ପୃଥିବୀରେ ସର୍ବଶ୍ରେଷ୍ଠ, କାରଣ ଏଠାରେ ବିଭିନ୍ନ ପ୍ରକାର ଜୀବ ଦେଖାଯାଇଥାନ୍ତି।

ଭାରତରେ ଦେଖାଯାଉଥିବା ସବୁଠାରୁ ସାଧାରଣ ଜଙ୍ଗଲ ହେଉଛି ବଡ଼ ବଡ଼ ପତ୍ର ଯୁକ୍ତ ଗଛଥିବା ପର୍ଣ୍ଣମୋଚୀ ଜଙ୍ଗଲ, ଯେଉଁଠାରେ ଗଛମାନେ ବର୍ଷର ଗୋଟିଏ ସମୟରେ ପତ୍ରଝଡ଼ା ଦେଇ ଥୁଣ୍ଟା ହୋଇ ଯାଆନ୍ତି। ଅତୀତରେ ଗୋଟିଏ ସମୟରେ ଏହି ଜଙ୍ଗଲ ଆମ ଦେଶର ବହୁ ଅଞ୍ଚଳରେ ବ୍ୟାପୀ ରହିଥିଲା। ଏହି ଜଙ୍ଗଲରେ ଏପରି ବୃକ୍ଷ ସମୂହ ରହିଥାନ୍ତି ଯେଉଁମାନେ ବର୍ଷା ନ ହେଲେ ମଧ୍ୟ ବହୁଦିନ ଯାଏଁ ବଞ୍ଚି ରହି ପାରିବେ। ଆମ ଦେଶର ବହୁ ଅଞ୍ଚଳ ବର୍ଷର ପ୍ରାୟ ଆଠ ମାସ ସାଧାରଣତଃ ଶୁଖିଲା। ଏହିପରି ଗ୍ରୀଷ୍ମ ଓ ଶୁଖିଲା ଜଳବାୟୁରେ ବଞ୍ଚି ପାରୁଥିବା ଗଛ ସାଧାରଣତଃ ଚିରହରିତ ଜଙ୍ଗଲରେ ଦେଖାଯାଉଥିବା ବୃକ୍ଷଙ୍କଠାରୁ ଭିନ୍ନ। ଏହିପରି ଏକ ସାଧାରଣ

ଗଛ ହେଉଛି ତେନ୍ତୁଳି, ଶାଳ, ସାଗୁଆନ, ଶିମିଳି, ପିଆଶାଳ, ମହୁଲ, ଅଂଳା ଓ ବାଉଁଶ। ପ୍ରତ୍ୟେକ ଜଙ୍ଗଲରେ ଗୋଟିଏ ଦୁଇଟି ଜାତିର ଗଛ ସାଧାରଣତଃ ପ୍ରାଧାନ୍ୟ ବିସ୍ତାର କରି ରହିଥାନ୍ତି ଓ ଅନ୍ୟମାନେ ନିଜକୁ ଯେତେଦୂର ସମ୍ଭବ ଖାପଖୁଆଇ ଚଳାଇ ନେଇଥାନ୍ତି।

ବୋଧହୁଏ ସବୁଠାରୁ ଉତ୍କୃଷ୍ଟ ପର୍ଣ୍ଣମୋଚୀ ଜଙ୍ଗଲ ହେଉଛି ଶାଳ ଜଙ୍ଗଲ, ଯେଉଁଠାରେ ସିଧାସଳଖ ଶାଖାପ୍ରଶାଖା ବିହୀନ ବୃକ୍ଷ ପ୍ରାୟ ଏକ ଶହ ଫୁଟ ଉଚ୍ଚତା ଯାଏଁ ବଢ଼ିଥାଏ। ହିମାଳୟ ପାଦଦେଶଠାରୁ ନର୍ମଦା ଅଞ୍ଚଳ ଯାଏଁ ଉତ୍ତର ଭାରତର ବହୁ ଅଞ୍ଚଳରେ ଶାଳ ଜଙ୍ଗଲ ଦେଖାଯାଏ। ଶାଳଗଛର ଏକ ନିଜସ୍ୱ ପ୍ରାଧାନ୍ୟ ଗୁଣ ରହିଛି ଯେ ଏହା ଅନ୍ୟ ବହୁ ଜାତିର ବୃକ୍ଷଙ୍କୁ ତା ନିକଟରେ ବଢ଼ି ଉଠିବାକୁ ସୁଯୋଗ ଦିଏ ନାହିଁ। ବଡ଼ ବଡ଼ ପତ୍ର ଥିବା ଏହା ଏକ ସୁନ୍ଦର ବୃକ୍ଷ। ସେଇଥିପାଇଁ ଶାଳ ଜଙ୍ଗଲ ବାଘ ସମେତ ବହୁ ପ୍ରକାର ପ୍ରାଣୀଙ୍କର ବାସସ୍ଥଳୀ ରୂପେ ପରିଗଣିତ ହୁଏ। ହିମାଳୟ ପର୍ବତମାଳାର ନିମ୍ନଦେଶର ଏକ ବିସ୍ତୃତ ଅଞ୍ଚଳ ପ୍ରସିଦ୍ଧ ଶାଳ ଜଙ୍ଗଲ ରୂପେ ପରିଚିତ। ଏବେ ମାନବ ବସତି ସ୍ଥାପନ ପାଇଁ ଏହି ଶାଳ ଜଙ୍ଗଲକୁ ସଫା କରାଯାଇଛି, ମାତ୍ର ସୌଭାଗ୍ୟକ୍ରମେ କାହ୍ନା ଜାତୀୟ ପାର୍କ ପ୍ରତିଷ୍ଠା ଯୋଗୁ କେତେକ ସୁନ୍ଦର ଶାଳ ଜଙ୍ଗଲକୁ ସଂରକ୍ଷିତ କରାଯାଇ ପାରିଛି।

ଯେଉଁ ପର୍ଣ୍ଣମୋଚୀ ଜଙ୍ଗଲରେ ସାଗୁଆନ ଗଛ ପ୍ରାଧାନ୍ୟ ସହ ଦେଖାଯାଏ ତାହା ମଧ୍ୟ ଅନ୍ୟ ଏକ ସୁନ୍ଦର ଜଙ୍ଗଲ। ସାଗୁଆନ ବୋଧହୁଏ ସବୁଠାରୁ ମୂଲ୍ୟବାନ କାଠ, ତେଣୁ ଜଙ୍ଗଲ ବିଭାଗ ଦ୍ୱାରା ବହୁ ସାଗୁଆନ ଜଙ୍ଗଲ ସ୍ୱତନ୍ତ୍ର ଭାବେ ସୃଷ୍ଟି କରାଯାଇଛି। ଶାଳପରି ସାଗୁଆନ ଗଛ ଏତେ ଗୁରୁତ୍ୱପୂର୍ଣ୍ଣ ନୁହେଁ। ଏହା ଅପେକ୍ଷାକୃତ ବହୁତ ଛୋଟ ଓ ହାଲୁକା ଗଛ। ବର୍ମାରେ ଥିବା ସାଗୁଆନ ଜଙ୍ଗଲ ବୋଧହୁଏ ସର୍ବୋତ୍କୃଷ୍ଟ ଅଟେ। ତା' ସତ୍ତ୍ୱେ ସାଗୁଆନ ଗଛ ପଶ୍ଚିମାଞ୍ଚଳର ଗିରି ଜଙ୍ଗଲଠାରୁ ଆରମ୍ଭ କରି ଦକ୍ଷିଣର କେରଳଯାଏଁ ଆମ ଦେଶରେ ଦେଖାଯାଏ। ସାଗୁଆନ ଗଛର ବିଶେଷତ୍ୱ ହେଉଛି ଏହାକୁ ପୁନଃ ସୃଷ୍ଟି କରାଯାଇପାରେ, ଅର୍ଥାତ ଗଛର ଗଣ୍ଡିରୁ ମଧ୍ୟ ଏକ ନୂତନ ଗଛ ସୃଷ୍ଟି ହୋଇପାରେ। ସାଗୁଆନ ଜଙ୍ଗଲ ସେଥିପାଇଁ ଅନ୍ୟ ଜଙ୍ଗଲ ତୁଳନାରେ ଅଧିକ ସ୍ଥିତିସ୍ଥାପକ ହୋଇଥାଏ। ଜଙ୍ଗଲ ବର୍ଣ୍ଣାଳୀର ଅନ୍ୟ ଗୋଟିଏ ଦିଗ ହେଲା ବୁଦା ବା କଣ୍ଟାଳିଆ ଗୁଳ୍ମଜାତୀୟ ଜଙ୍ଗଲ। ଏଥିରେ ସାଧାରଣତଃ ବର, ବାବୁଲ ଜାତୀୟ ବୁଦବୁଦକିଆ କଣ୍ଟା ଗଛ ଓ ଛୋଟ ଗଛ ଥାଏ।

ଏହି ଜଙ୍ଗଲରେ ଆଶ୍ଚର୍ଯ୍ୟଜନକଭାବେ ବହୁ ସଂଖ୍ୟକ ଜୀବଜନ୍ତୁ ବାସ କରିଥାନ୍ତି ଏବଂ ଏଠାକାର ଭୂମିକୁ ସେମାନେ ଭଲ ଆକୃତିରେ ରଖିଥାନ୍ତି ।

ପ୍ରକୃତିବିତ୍‌ମାନେ ଗୋଟିଏ ଭଲ ଜଙ୍ଗଲକୁ ବଂଶାନୁକ୍ରମିକ ବା ଉତ୍ପତ୍ତି ସମ୍ବନ୍ଧୀୟ ଏକ ସଂଗ୍ରହାଳୟ ବୋଲି କହିଥାନ୍ତି । ଏହା ହଜାର ହଜାର ଜାତିର ଉଦ୍ଭିଦକୁ ବଞ୍ଚାଇ ରଖିଥାଏ ଯେଉଁମାନେ କି ଭବିଷ୍ୟତରେ ଅମୂଲ୍ୟ ବା ବହୁମୂଲ୍ୟବାନ ପଦାର୍ଥରେ ପରିବର୍ତ୍ତିତ ହୋଇଥାନ୍ତି । ଯଦି ଆମେ ଗୋଟିଏ ସ୍ୱତନ୍ତ୍ର ସୀମାରେ ଜଙ୍ଗଲକୁ ପତଳା କରିଦେବା କିମ୍ବା ନଷ୍ଟ କରିବା, ଆମେ ନିଶ୍ଚିତରୂପେ ଦିନେ ଆବଶ୍ୟକ କରୁଥିବା ଏକ ମୂଲ୍ୟବାନ ପଦାର୍ଥକୁ ହରାଇବା । ଏହା ହେଉଛି ବହୁ ଔଷଧ ବୃକ୍ଷ । ଅଥବା ଏହା ଆମ ଖାଦ୍ୟର ଏକ ଶକ୍ତିଶାଳୀ ଅଂଶ କିମ୍ବା ଏକ ଦରକାରୀ ପଦାର୍ଥ ପ୍ରସ୍ତୁତ କରିପାରୁଥିବା ପଦାର୍ଥ ହୋଇପାରେ ।

ଯେଉଁ ସବୁ ଅଞ୍ଚଳରେ ଗଛ ରହିଛି, ସେ ସବୁକୁ ଏବେ ଜଙ୍ଗଲର ଅନ୍ତର୍ଭୁକ୍ତ କରାଯାଉଛି । ଆମେ ଦେଖି ଆସୁଛେ ଯେ ବିଭିନ୍ନ ପ୍ରକାର ଜଙ୍ଗଲ ରହିଛି । କିନ୍ତୁ ଏହା ବ୍ୟତୀତ ଆମେ ଜାଣିବା ଦରକାର ଯେ ଜଙ୍ଗଲ ମୁଖ୍ୟତଃ ଦୁଇଟି ବୃହତ୍ କାର୍ଯ୍ୟ କରିବା ଉଚିତ । ପର୍ବତ ବା ଗଡ଼ାଣିରେ ଦେଖାଯାଉଥିବା ସଂରକ୍ଷିତ ଜଙ୍ଗଲ ମୃତ୍ତିକା ସଂରକ୍ଷଣ କରି ଯଥାସ୍ଥାନରେ ଏହାକୁ ରଖିବା ଦରକାର । ଏବଂ ଉତ୍ପାଦନକାରୀ ଜଙ୍ଗଲ ନିଶ୍ଚିତ ରୂପେ ଭଲ କାଠ, ବାଉଁଶ, ବେତ ଓ ନଡ଼ା ପ୍ରଭୃତି ଯୋଗାଇବା ଆବଶ୍ୟକ । ଏହି ଦୁଇ ଶ୍ରେଣୀର ଜଙ୍ଗଲକୁ ଏକାଠି ପାଇବା ଅସମ୍ଭବ କିମ୍ବା କୌଣସି ଗୋଟିକରୁ ଉଭୟ ପଦାର୍ଥ ମଧ୍ୟ ପାଇବା କଷ୍ଟକର । ଉଭୟ କ୍ଷେତ୍ରରେ ଏହା ନ ମିଳିବା ମଧ୍ୟ ବିଚିତ୍ର ନୁହେଁ ।

ତୃତୀୟ ଶ୍ରେଣୀର ଏକ ଜଙ୍ଗଲକୁ ବର୍ତ୍ତମାନ ରହିଥିବା ଜଙ୍ଗଲ ସହିତ ଆମେ ସଂଯୋଗ କରିପାରିବା । ତାହା ହେଉଛି *ସାମାଜିକ* ଜଙ୍ଗଲ । କାଠ ପାଇଁ ଆମର ଆବଶ୍ୟକତା ବଢ଼ୁଥିବା ବେଳେ କ୍ରମବର୍ଦ୍ଧିଷ୍ଣୁ ଜନ ସଂଖ୍ୟା ଦ୍ୱାରା ବୃକ୍ଷ ସମ୍ପଦ ନଷ୍ଟ ହେବାରୁ ବହୁ କ୍ଷୁଦ୍ର ଅଞ୍ଚଳର ଆବଶ୍ୟକତା ପୂରଣ ପାଇଁ ଏ ପ୍ରକାର ଜଙ୍ଗଲର ସୃଷ୍ଟି, କିନ୍ତୁ ପରବର୍ତ୍ତୀ ଅଧ୍ୟାୟରେ ଆମେ ଦେଖିବା ଯେ ଦୁର୍ଭାଗ୍ୟଜନକ ଭାବେ ଆମେ ସବୁବେଳେ ଜଙ୍ଗଲ ସମ୍ପଦକୁ ସଂଗ୍ରହ କରିବା ସହିତ ଏହାକୁ ନଷ୍ଟ ଓ ଲୁଣ୍ଠନ କରିବାରେ ବ୍ୟସ୍ତ ରହିଛୁ । ବନୀକରଣ ଦିଗରେ ହେଉଥିବା କାର୍ଯ୍ୟ ଏହି ସମସ୍ୟାର ସମାଧାନ ପାଇଁ ଏହି ହେତୁରୁ ଗୁରୁତ୍ୱପୂର୍ଣ୍ଣ ଭାବେ ଫଳପ୍ରଦ ହୋଇପାରୁନାହିଁ ।

# ଜଙ୍ଗଲ

## II

*ସେମାନଙ୍କର କଣ ଘଟିଥିଲା ?*

ଏହି ପର୍ଯ୍ୟାୟର ପ୍ରଥମ ସୋପାନରେ ଆମେ ଆଲୋଚନା କଲେ ଯେ ଭାରତର ଭୂଭାଗର ଅଧିକାଂଶ ଅଞ୍ଚଳ ହେଉଛି ପ୍ରକୃତିସୃଷ୍ଟ ଜଙ୍ଗଲ। ମୁଁ ଭାବୁଛି ଯେ ଆମେ ଏହି ପର୍ଯ୍ୟାୟରେ ସେ ବିଷୟରେ ଅଧିକ ସତ୍ୟାସତ୍ୟ ଜାଣିବାକୁ ପୁନଃ ଆଲୋଚନା କରିବା। ମାତ୍ର, ଯାହା ଥିଲା ବୋଲି ଆମେ କହୁଥିଲେ ଏବେ ତାହା କେଉଁ ଅବସ୍ଥାରେ ଅଛି ଓ କଣ ଘଟିବାକୁ ଯାଉଛି, ତାହା ହିଁ ଆଲୋଚନା କରିବା। ଅଧିକ ଦୂର ନ ଯାଇ ଆମେ ଅତୀତକୁ ପର୍ଯ୍ୟାଲୋଚନା କଲେ ଦେଖିବା ଯେ ସେତେବେଳେ ଦେଶ ଜଙ୍ଗଲ ସମ୍ପଦରେ ପୂର୍ଣ୍ଣ ଥିଲା। ଲୋକ ସଂଖ୍ୟା କ୍ରମେ ବଢ଼ିବାରୁ କୃଷି ବିସ୍ତୋରିତ ହେଲା ଏବଂ ଜଙ୍ଗଲ କ୍ରମେ କମିଗଲା। 1850 ମସିହା ବେଳକୁ ଇଂରେଜମାନେ ହୃଦୟଙ୍ଗମ କଲେ ଯେ ଜଙ୍ଗଲ ଅଞ୍ଚଳ ଓ ଏହାର ମାନ କ୍ରମେ କମିଯାଉଛି। ଜଙ୍ଗଲଜାତ ମୁଖ୍ୟ ପଦାର୍ଥର ଉତ୍ପାଦନଭାର ସମ୍ଭାଳିବାକୁ ସେମାନଙ୍କୁ ଏହାର ସୁରକ୍ଷା କରିବାକୁ ହେବ ଏବଂ ମୂଳ ଜଙ୍ଗଲ ରକ୍ଷା କରାଯାଇ ଏଥିରୁ ଯେପରି ଉତ୍ପାଦନ ମିଳିପାରିବ ସେ ଦିଗରେ ସେମାନେ ଚିନ୍ତା କରି ଏହି କାର୍ଯ୍ୟ ସମ୍ପାଦନ କରିବାକୁ ଭାରତୀୟ ଜଙ୍ଗଲ ସେବା ସଂସ୍ଥା ଗଠନ କରିଥିଲେ।.

ଏହା ଆମେ ଅଧିକାଂଶ ସମୟରେ ଭୁଲି ଯାଉଛେ ଯେ ପ୍ରତ୍ୟେକ ଦିନ ଆମେ ବ୍ୟବହାର କରୁଥିବା ଅଧିକାଂଶ ପଦାର୍ଥ କାଠରୁ ତିଆରି, ଯାହାକି ପ୍ରକାରାନ୍ତରେ ଜଙ୍ଗଲରୁ ହିଁ ଆସିଛି। ଏବେ ଠିକ ସମୟରେ ସ୍କୁଲ ପାଠ୍ୟ ପୁସ୍ତକ ପ୍ରସ୍ତୁତ ହୋଇ ପାରୁନାହିଁ, ନୋଟ ଖାତାର ମୂଲ୍ୟ ଦୁଇଗୁଣ ବଢ଼ିଯାଇଛି,

ତିନି ବର୍ଷ ତଳେ ଛଅଟି ଚଉକୀର ମୂଲ୍ୟ ଯାହାଥିଲା, ଏବେ ଗୋଟିକର ଦାମ ସେତିକି ହେଲାଣି, ପତ୍ର ପତ୍ରିକାର ମୂଲ୍ୟ ମଧ୍ୟ ଦୁଇଗୁଣ ହେଲାଣି। ଏବେ ଖୁବ କମ୍ ଲୋକ ନିଜେ ଖଣ୍ଡିଏ ପତ୍ରିକା କିଣି ପାରୁଛନ୍ତି ବା ଗୋଟିଏ ନିଜର ଘର ତିଆରି କରିପାରୁଛନ୍ତି। ଏ ସବୁର କାରଣ ଅତି ସହଜ। ବର୍ତ୍ତମାନର ଅତ୍ୟଧିକ ମୂଲ୍ୟସୂଚୀ ବୃଦ୍ଧି ସମୟରେ କାଠର ଅଭାବ ହିଁ ସବୁଆଡ଼େ ପରିଲକ୍ଷିତ ହେଉଛି। ଏ ପ୍ରକାର ଅବସ୍ଥାକୁ କମାଇବାକୁ ଯେତେଯାହା ଅର୍ଥନୈତିକ ନିୟମକାନୁନ ରହିଲେ ମଧ୍ୟ ଗୋଟିଏ ଛୋଟ କଥା ହେଉଛି ଯେ ଆମ ଚାରିପାଖରେ ଆବଶ୍ୟକ ହେଉଥିବା କାଠ ନାହିଁ। ଦ୍ୱିତୀୟ ବିଶ୍ୱ ଯୁଦ୍ଧ ପରଠାରୁ ଆମର ଲୋକସଂଖ୍ୟା ଦୁଇଗୁଣ ହେଲାଣି। 1991 ମସିହାରେ ଆମ ଦେଶରେ ୫5 କୋଟିରୁ ଅଧିକ ଲୋକ ସଂଖ୍ୟା ଥିଲା ଓ ଏହା ଖୁବ ଜୋରରେ ବୃଦ୍ଧି ପାଇବାରେ ଲାଗିଛି। ଏହି ସମୟ ଭିତରେ ମୋଟ ଗଛ ସଂଖ୍ୟା ତିନି ଭାଗରୁ ପ୍ରାୟ ଏକ ଭାଗକୁ କମି ଯାଇଛି। ଅର୍ଥନୀତିଜ୍ଞମାନେ ଜଙ୍ଗଲ ସମ୍ପଦର ଆମ ଅର୍ଥନୀତି ଓ ବିଭିନ୍ନ ଯୋଜନା ଉପରେ ପ୍ରଭାବ ବିଷୟରେ ସର୍ବଶେଷ ତଥ୍ୟ ବିଶ୍ଲେଷଣ କରି ନାହାଁନ୍ତି। ଏ ବିଷୟରେ ଏକ ହିସାବ ଫର୍ଦ୍ଦ ପ୍ରସ୍ତୁତ ହେଲେ ଜଙ୍ଗଲ ସମ୍ପଦ ଅବସ୍ଥା ଆମ ଜାତୀୟ ଯୋଜନା ପ୍ରଣୟନକାରୀ ମାନଙ୍କୁ ଯେ ବ୍ୟଥିତ କରିବ, ଏଥିରେ ସନ୍ଦେହ ନାହିଁ ଏବଂ ସେମାନେ ଜଙ୍ଗଲ ସମ୍ପଦ ପାଇଁ ସବୁଠାରୁ ଅଧିକ ଗୁରୁତ୍ୱ ଦେବେ।

1953 ମସିହାରେ ଆମ ସରକାର ଏକ ଜାତୀୟ ଜଙ୍ଗଲ ନୀତି ପ୍ରଣୟନ କଲେ। ଏହାର ମୁଖ୍ୟ ଉଦ୍ଦେଶ୍ୟ ଥିଲା ଯେ ସମଗ୍ର ଭୂଭାଗର ଶତକଡ଼ା 33 ଭାଗ ଅଞ୍ଚଳରେ ଜଙ୍ଗଲ ନିଶ୍ଚିତ ଭାବେ ରହିବ। ପ୍ରକୃତପକ୍ଷେ ଜଣାଯାଉଥିଲା ଯେ ଏହା ଏକ ଉଚିତ ଓ ସମୟୋପଯୋଗୀ ପଦକ୍ଷେପ ଯାହାକି ମୃତ୍ତିକାକୁ ରକ୍ଷା କରିବା ସଙ୍ଗେ ସଙ୍ଗେ ଦେଶକୁ ଜଙ୍ଗଲସମୃଦ୍ଧ ଓ ସ୍ୱାସ୍ଥ୍ୟବାନ କରିବ। କିନ୍ତୁ 40 ବର୍ଷରୁ କମ୍ ବର୍ଷ ପରେ ପ୍ରକୃତରେ ଆମେ ଦେଖିଲେ ଯେ ଜଙ୍ଗଲର ପରିସୀମା ସମଗ୍ର ଭୂଭାଗର ଶତକଡ଼ା 11 ଭାଗକୁ କମି ଆସିଲା। ଏପରିକି ଏହା ମଧ୍ୟରେ ବହୁ ଜଙ୍ଗଲ କେବଳ ପତଳା ଗଛ ଗୁଡ଼ିକର ସମାରୋହକୁ କୁହାଗଲା। ଏହା ଏପରିଭାବେ ନଷ୍ଟଭ୍ରଷ୍ଟ ହୋଇ ଯାଇଥିଲା ଯେ ଏହାକୁ କେବଳ ନାମକୁ ମାତ୍ର ଜଙ୍ଗଲ ବୋଲି କୁହାଗଲା।

ଏପରି କାହିଁକି ହେଲା ? କଣ ପାଇଁ ସରକାରୀ ନୀତି ନିର୍ଦ୍ଧାରଣ ସତ୍ତ୍ୱେ ସରକାର ଭାରତରେ ଏକ ତୃତୀୟାଂଶ ଅଞ୍ଚଳରେ ଜଙ୍ଗଲ ସମ୍ପଦ

ରକ୍ଷା କରିପାରିଲେ ନାହିଁ ? ବସ୍ତୁତଃ ଏହାର ଦୁଇଟି କାରଣ ରହିଛି । ପ୍ରଥମଟି ଅର୍ଥନୈତିକ ଓ ଦ୍ୱିତୀୟଟି ରାଜନୈତିକ । ସରକାର ଜଙ୍ଗଲ ସମ୍ପଦର ସୁରକ୍ଷା ପାଇଁ ଏକ ବଳିଷ୍ଠ ରାଜନୈତିକ ମତକୁ କାର୍ଯ୍ୟକାରୀ କରିପାରିଲେ ନାହିଁ ।

ଆମ ଲୋକେ ସାଧାରଣତଃ ଚରମ ଦାରିଦ୍ର୍ୟ ମଧ୍ୟରେ କାଳ କଟାନ୍ତି ଏବଂ ସେମାନଙ୍କ ପାଇଁ ଜଙ୍ଗଲ ହେଉଛି ଏକ ଖୋଲା ସଞ୍ଚିତ ଧନସମ୍ପଦର କୋଠରୀ । ଲୋକେ ଭାବନ୍ତି ଯେ ଜଙ୍ଗଲକୁ ସିଧା ଯାଇ ଜାଳେଣୀକାଠ ଆଣିବା, ଗାଈଗୋରୁ ଚରାଇବା ଏବଂ ଯାହା ପସନ୍ଦ କରିବା ତାହା ନେଇ ଆସିବା ସେମାନଙ୍କର ଅଧିକାର ଅନ୍ତର୍ଭୁକ୍ତ । ଏକ ବୃହତ୍ ଧ୍ୱଂସକାରୀ ଭାବେ କାଠ ଠିକାଦାର ମାନେ ଏବଂ ଚୋରାକାଠ ବ୍ୟବସାୟୀ ମାନେ ଜଙ୍ଗଲ ବିଭାଗ ଦ୍ୱାରା ସ୍ଥିରୀକୃତ ସଂଖ୍ୟାଠାରୁ ବହୁ ଗୁଣରେ ଗଛ କାଟି ଏହାର ସଂଖ୍ୟା ଦ୍ରୁତ ହ୍ରାସ କରାଇଥାନ୍ତି । ଜଙ୍ଗଲ କାଟିବା ଓ ଚୋରି କରିବା ଏକ ସରଳ ଓ ଲାଭଦାୟକ ବ୍ୟବସାୟ ହୋଇଥିବା ବେଳେ ଫୌଜଦାରୀ ନିୟମ ଅନୁସାରେ ଏଥିପାଇଁ ଉଦ୍ଦିଷ୍ଟ ଦଣ୍ଡ ଏତେ କୋହଳ ହୋଇଛି ଯେ ଏହା କାହାକୁ ଏଥିରୁ ନିବୃତ୍ତ କରି ପାରୁନାହିଁ । 1985 ମସିହାରେ ଗୋଟିଏ ବଡ଼ ପିଆଶାଳ ଗଛର ମୂଲ୍ୟ ତିନି ଲକ୍ଷ ଟଙ୍କାରୁ ଅଧିକ ଥିଲା । ନିରୀକ୍ଷଣ କେନ୍ଦ୍ରରୁ ଖସିଯିବା ଅତି ସହଜ, ମାତ୍ର ଯଦି ବା କେବେ ଧରାପଡ଼ିଗଲ ତେବେ ମଧ୍ୟ ଏଥିପାଇଁ ଦଣ୍ଡ ଅତି ସାମାନ୍ୟ । ଅନେକ ପରିବେଶ କମିଟି ବହୁବାର ଗୁରୁତ୍ୱର ସହ କହିଛନ୍ତି ଯେ ଆମ ଦେଶରେ ଗୃହ ନିର୍ମାଣ ଉପଯୋଗୀ କାଠ ଓ ଅନ୍ୟାନ୍ୟ କାଠର ମୂଲ୍ୟ ଏହାର ପ୍ରକୃତ ମୂଲ୍ୟ ସହ ସଂଯୁକ୍ତ ନୁହେଁ, ଅର୍ଥାତ ଏହାର ପରିବହନ ଖର୍ଚ୍ଚ ମଧ୍ୟ ରହିଛି । କୌଣସି ସାଧାରଣ ସ୍ଥାନରେ ଗୋଟିଏ ଗଛ ସାଧାରଣତଃ ସ୍ୱାଧୀନ ଭାବେ ବଢ଼ିଥାଏ । କୌଣସି ସ୍ଥାନରୁ ପବନରେ ମଞ୍ଜି ଉଡ଼ିଆସି ମାଟିରେ ପଡ଼ି ଏହା ଆପେ ଆପେ ବଢ଼ିଥାଏ । ଏହାକୁ ବଢ଼ାଇବାକୁ କୌଣସି ଅର୍ଥ ଖର୍ଚ୍ଚ ହୁଏ ନାହିଁ ।

ତଥାପି, ଏହି ଗଛକୁ କାଟିବାବେଳେ ଅବସ୍ଥା କଷ୍ଟକର ହୋଇଥାଏ ଓ ଏଥିପାଇଁ ଅଧିକ ଅର୍ଥ, କଷ୍ଟ ଓ ସମୟ ବିନିଯୋଗ କରିବାକୁ ହୁଏ । ଭାରତରେ ଏକ ସର୍ବସାଧାରଣ ସ୍ଥାନରେ ଗଛକୁ ପୋତି ଏହାର ସୁରକ୍ଷା ଓ ଯତ୍ନ ନେବାପାଇଁ ଅତ୍ୟଧିକ ବ୍ୟୟ କରିବାକୁ ହୋଇଥାଏ । ଗଛ କାଟି ଚୋରି କରିବା ଏକ ବଡ଼ ଅପରାଧ ରୂପେ ବିଚାର କରାଯାଇ ସେହି ଭାବରେ କଠୋର ଦଣ୍ଡ ବିଧାନ ଆବଶ୍ୟକ ।

ଯେ କୌଣସି ଦେଶର ଗଛ ଓ କାଠ ଚୋରୀ ଦେଖି ଜାଣି ହେବ ଯେ ସେ ଦେଶ ଅର୍ଥନୈତିକ ଦୃଷ୍ଟିରୁ ସମୃଦ୍ଧ କି ନୁହେଁ। ଉତ୍ତର ଆମେରିକା ଓ ୟୁରୋପର ଧନଶାଳୀ ଦେଶରେ ଜଙ୍ଗଲ ସମ୍ପଦ ସ୍ଥିର ଏବଂ ସୁରକ୍ଷିତ। କୌଣସି ଲୋକର ଦରକାର ପାଇଁ ଏହା ଚୋରି କରାଯାଏ ନାହିଁ। ଅନ୍ୟ ପକ୍ଷରେ ଆଫ୍ରିକା, ଏସିଆ ଓ ଦକ୍ଷିଣ ଆମେରିକା ଭଳି ଗରିବ ଦେଶ ସେମାନଙ୍କର ଜଙ୍ଗଲ ସମ୍ପଦର ସୁରକ୍ଷା କରିପାରି ନାହାଁନ୍ତି କାରଣ ସ୍ଥାନୀୟ ଗ୍ରାମବାସୀ ସେମାନଙ୍କର ଜୀବିକା ନିର୍ବାହ ପାଇଁ ତତ୍କ୍ଷଣାତ ଯୋଜନା ପ୍ରସ୍ତୁତ କରି ଜଙ୍ଗଲରୁ ତାହା ସଂଗ୍ରହ କରିଥାନ୍ତି। ଯେଉଁ ଅଞ୍ଚଳରେ କ୍ରମାଗତ ଭାବେ ଜଙ୍ଗଲ ସମ୍ପଦ କ୍ଷୟପ୍ରାପ୍ତ ହେଉଥାଏ, ସେଠାରେ ଏହା ବିଚାର କରିବାକୁ ହେବ ଯେ ସରକାର ବେକାର ସମସ୍ୟା, ଜନସଂଖ୍ୟା ବୃଦ୍ଧି, କୃଷି ସ୍ଥିରତା ଆଣିବାରେ ସଫଳ ହୋଇପାରି ନାହାଁନ୍ତି। ଲୋକେ ସର୍ବନିମ୍ନ ଆବଶ୍ୟକତା ପାଇବାରୁ ବଞ୍ଚିତ ହୋଇଥାନ୍ତି। ଜଙ୍ଗଲ ନଷ୍ଟର କେତେକ ମୂଳ କାରଣ ହେଉଛି ଜାଳେଣୀକାଠ ସଂଗ୍ରହ କରିବା, ଗାଈଗୋରୁ ଚରାଇବା ଓ ଅଧିକାଂଶ ସମୟରେ କାଠ ଚୋରି କରିବା। ଯେଉଁ ଅଞ୍ଚଳର ଅର୍ଥନୈତିକ ଅବସ୍ଥା ସେ ଅଞ୍ଚଳର ଜନ ସଂଖ୍ୟାକୁ ଜୀବନ ଧାରଣର ଆବଶ୍ୟକତା ଯୋଗାଇଥାଏ, ସେ ଅଞ୍ଚଳରେ ଜଙ୍ଗଲ ସମ୍ପଦ ସ୍ଥିର ରହିଥାଏ।

ଆମର ପ୍ରତ୍ୟେକ ଶିଳ୍ପ କାରଖାନା କୌଣସି ନା କୌଣସି ପ୍ରାକୃତିକ ସମ୍ପଦ ଉପରେ ନିର୍ଭରଶୀଳ। ଏପରିକି, ଅନେକ ଶିଳ୍ପ କାରଖାନା ଜଙ୍ଗଲଜାତ କଞ୍ଚାମାଲ ଉପରେ ନିର୍ଭରଶୀଳ। ଉଦାହରଣ ସ୍ୱରୂପ ଆମର କାଗଜ ଶିଳ୍ପ, ସୂତା ଓ ପ୍ଲାଇଉଡ୍ କାରଖାନା ସମ୍ପୂର୍ଣ୍ଣ ରୂପେ ଜଙ୍ଗଲଜାତ ପଦାର୍ଥ ଉପରେ ନିର୍ଭରଶୀଳ। ଆମ ଦେଶରେ କାଗଜ ବାଉଁଶରୁ ପ୍ରସ୍ତୁତ ହୋଇଥାଏ। ବଡ଼ ବଡ଼ କାଗଜକଳ ଏତେ ସଂଖ୍ୟାରେ ବାଉଁଶ ବ୍ୟବହାର କରିଥାନ୍ତି ଯେ ଆମର ଜଙ୍ଗଲ ଏହାକୁ ପୁନଃ ପୂରଣ କରିବାରେ ଅସମର୍ଥ ହୋଇଥାଏ। କର୍ଣ୍ଣାଟକରେ ପ୍ରତିବର୍ଷ କାଗଜକଳମାନେ 1,60,000 ଟନ୍ ବାଉଁଶ କାଟିପାରିବେ ବୋଲି ସରକାର ଅନୁମତି ଦେଇଥିବା ବେଳେ ମାତ୍ର 1,30,000 ଟନ ଯାଏଁ ବାଉଁଶ ପୁନଃ ସ୍ଥାପନ କରାଯାଇପାରିବ ବୋଲି ହିସାବ କରି ଦେଖାଯାଇଛି। ଏହାର ଅର୍ଥ ହେଉଛି ଯଦି ଆମେ ବାର୍ଷିକ 1,30,000 ଟନ୍ ବାଉଁଶ କାଗଜ ପ୍ରସ୍ତୁତି ପାଇଁ ବିନିଯୋଗ କରିବା, ତେବେ ଆମର ବାଉଁଶ ଜଙ୍ଗଲ ଅବସ୍ଥା ଭଲ ରହିବ ଓ ଆମେ କ୍ରମାଗତ ଭାବେ କାଗଜ ପ୍ରସ୍ତୁତ କରିପାରିବା। ମାତ୍ର,

ଯେହେତୁ ଯେତିକି ବ୍ୟବହାର କରିବା କଥା ତାଠାରୁ 30,000 ଟନ୍ ଅଧିକ ଆମେ ବ୍ୟବହାର କରୁଛୁ, ଖୁବଶୀଘ୍ର ଆମେ ଦେଖିବା ଯେ ଜଙ୍ଗଲରେ ଥିବା ସବୁ ବାଉଁଶଗଛକୁ ଆମେ ସାରିଦେଇଛୁ ଏବଂ କାଗଜ ଉତ୍ପାଦନ ଆମକୁ ବନ୍ଦ କରିବାକୁ ପଡୁଛି। ବାଉଁଶ କ୍ଷେତ୍ରରେ ଅନ୍ୟ ଏକ ଆଶ୍ଚର୍ଯ୍ୟଜନକ ବ୍ୟତିକ୍ରମ ମଧ୍ୟ ଦେଖାଯାଏ। କାଗଜକଳ ମାନେ ଟନ୍ ପ୍ରତି ମାତ୍ର ଏକଟଙ୍କା ଲାଇସେନ୍ସ କର ଦେଉଥିବା ବେଳେ ପ୍ରାକୃତିକ ଭାବେ ଦେଖିଲେ ଏହାର ମୂଲ୍ୟ ଏହା ଠାରୁ ବହୁ ଗୁଣରେ ଅଧିକ। ବାସ୍ତବିକ ଗାଁ ଗହଳର ଲୋକେ ଯେଉଁମାନେ ଟୋକେଇ ଇତ୍ୟାଦି ତିଆରି କରିବାକୁ ବାଉଁଶ ଆବଶ୍ୟକ କରିଥାନ୍ତି, ସେମାନଙ୍କ କ୍ଷେତ୍ରରେ ହିସାବ କଲେ ଟନ୍ ପିଛା ଏହି କର ପ୍ରାୟ ଏକ ହଜାର ଟଙ୍କା ହୋଇଥାଏ।

କାଗଜକଳ ଦ୍ୱାରା ଯେଉଁ ଅବସ୍ଥା ସୃଷ୍ଟି ହେବ ଓ ଯେପରି ଭାବେ ବାଉଁଶ ଜଙ୍ଗଲର କ୍ଷୟ ଦେଖା ଦେଇଛି, ତାହା ଚମଡ଼ା ଶିଳ୍ପ କ୍ଷେତ୍ରକୁ ଆକ୍ରାନ୍ତ କରିବାକୁ ବସିଲାଣି। ଆମର ପରିଚିତ କଇଁଆ ମଞ୍ଜି ସାଧାରଣତଃ ଚମଡ଼ାକୁ ଟ୍ୟାନିଂ କରିବା ପାଇଁ ବ୍ୟବହୃତ ହୋଇଥାଏ। ମାତ୍ର ଅତ୍ୟଧିକ ବ୍ୟବହାର ଯୋଗୁଁ ସବୁଆଡ଼େ ଦେଖା ଦେଉଥିବା ଏହି ଗଛ ଏବେ ସୀମିତ ହେଲାଣି ଏବଂ ଏପରି ଅବସ୍ଥା ହେଲାଣି ଚମଡ଼ା ଟ୍ୟାନିଂ କାରଖାନା ହୁଏତ ବନ୍ଦ ହୋଇଯିବ। ବ୍ୟବହାରକାରୀ ଓ ଶ୍ରମିକଙ୍କ ଭଳି ଯେଉଁମାନେ ଏହି କାରଖାନା ଉପରେ ନିର୍ଭରଶୀଳ, ସେମାନଙ୍କ ଅବସ୍ଥା କଣ ହେବ ତାହା ଆମକୁ ଅନୁମାନ କରିବାକୁ ହେବ।

ଜଙ୍ଗଲ କ୍ଷୟ ପାଇଁ ରାଜନୈତିକ କାରଣ ବୁଝିବା ସହଜ। ଦେଶ ସାରା ଜଙ୍ଗଲ ରହିଛି, ମାତ୍ର ଏହା ସୁସ୍ପଷ୍ଟ ଯେ କେତେକ ରାଜ୍ୟରେ ଏହାର ପରିମାଣ ବେଶୀ ଥିବା ବେଳେ ଅନ୍ୟ କେତେକ ରାଜ୍ୟରେ ଏହା କମ୍। ତେଣୁ ଯେତେବେଳେ କେନ୍ଦ୍ର ସରକାର ସମଗ୍ର ଭୂଭାଗର ଶତକଡ଼ା 33 ଭାଗ ଅଞ୍ଚଳକୁ ଜଙ୍ଗଲ ପାଇଁ ସଂରକ୍ଷଣ କରିବାକୁ ନିଷ୍ପତ୍ତି ନେଲେ, ସେତେବେଳେ କେତେକ ରାଜ୍ୟରେ ବଡ଼ ବଡ଼ ଶିଳ୍ପ କାରଖାନା ପ୍ରତିଷ୍ଠା ପାଇଁ ଜମିର ଅଭାବ ଦେଖା ଦେଲା। ବର୍ତ୍ତମାନ ଜଙ୍ଗଲ ବିଭାଗ ରାଜ୍ୟ ସରକାରଙ୍କ କର୍ତ୍ତୃତ୍ୱାଧୀନ; ଯଦିଓ କେନ୍ଦ୍ର ସରକାର ସଂରକ୍ଷଣ ପାଇଁ କେତେକ ନୀତି ନିର୍ଦ୍ଧାରଣ କରିଥାନ୍ତି, ତଥାପି ଏହାର କାର୍ଯ୍ୟକାରିତା ନିଜର କର୍ତ୍ତୃତ୍ୱ ମଧ୍ୟରେ କରିବାର ଦାୟିତ୍ୱ ରାଜ୍ୟ ସରକାରଙ୍କର। ଏହା ସୁସ୍ପଷ୍ଟ ଯେ ଅନେକ ରାଜ୍ୟ

ଶିଳ୍ପ କାରଖାନା, ଖଣି ଖାଦାନ, ଜଳବିଦ୍ୟୁତ ପ୍ରକଳ୍ପରୁ ହଠାତ ରାଜସ୍ୱ ଲାଭ କରିଥାନ୍ତି, ଯାହାକି ପୁରାତନ ଘଞ୍ଚ ଜଙ୍ଗଲ ଠାରୁ ଶୀଘ୍ର ମିଳିଥାଏ। ଏହି ପ୍ରକାର ଉନ୍ନୟନ କାର୍ଯ୍ୟର ସୁଫଳ ସ୍ଥାନୀୟ ବାସିନ୍ଦାଙ୍କୁ ତୁରନ୍ତ ଆକର୍ଷଣୀୟ କର୍ମ ଓ ଅର୍ଥ ଯୋଗାଇବା ଦ୍ୱାରା ଭୋଟରମାନେ ଖୁବ ଶୀଘ୍ର ପ୍ରଭାବିତ ହୋଇଥାନ୍ତି, ଯାହାକି ଜଙ୍ଗଲ ସଂରକ୍ଷଣରୁ ଏତେ ଶୀଘ୍ର ମିଳେ ନାହିଁ। ଏଥିରୁ ମିଳୁଥିବା ସୁଫଳକୁ ଦୂରଦ୍ରଷ୍ଟା ଭାବେ ବିଶ୍ଳେଷଣ କରି ବୁଝାଯାଇପାରେ।

ରାଜନୈତିକ କାରଣରୁ ଉତ୍ତର ଭାରତର ସମୃଦ୍ଧଶୀଳ ଜଙ୍ଗଲକୁ ନଷ୍ଟ କରାଯାଇ ସେଠାରେ ରାଉରକେଲା, ଦୁର୍ଗାପୁର ଓ ଭିଲାଇ ଶିଳ୍ପଭିତ୍ତିକ ସହର ପ୍ରତିଷ୍ଠା କରାଗଲା। ଏହା ହଠାତ୍ ଲାଭ ପାଇବାପାଇଁ ଏକ ନିର୍ଦ୍ଦିଷ୍ଟ ସିଦ୍ଧାନ୍ତ। ଏ ବିଷୟରେ ଯୁକ୍ତି ଏହିପରି। ବିହାର ହେଉଛି ଏକ ଶିଳ୍ପ କ୍ଷେତ୍ରରେ ପଛୁଆ ରାଜ୍ୟ। ତେଣୁ ଏହି ଅଞ୍ଚଳର ସମୃଦ୍ଧି ପାଇଁ ସେଠାରେ କେତେକ ବଡ଼ ବଡ଼ ଶିଳ୍ପ କାରଖାନା ପ୍ରତିଷ୍ଠା କରିବାର ଆବଶ୍ୟକତା ରହିଛି। ତେଣୁ ଏଠାରେ ଥିବା ହିଂସ୍ରଜନ୍ତୁପୂର୍ଣ୍ଣ କେତେ ମାଇଲ ଜଙ୍ଗଲ କଟାଯାଉ, ଯାହା ଫଳରେ ସ୍ଥାନୀୟ ଲୋକେ କାରଖାନାରେ ଆରାମଦାୟକ ନିଯୁକ୍ତି ପାଇପାରିବେ। ଏହା କରିବାପରେ ଦେଖାଗଲା ଯେ (କ) ସ୍ଥାନୀୟ ବାସିନ୍ଦାମାନେ ଜଙ୍ଗଲ ସମ୍ପଦ ଉପରେ ନିର୍ଭରଶୀଳ ଓ କୃଷିଜୀବୀ ହୋଇଥିବାରୁ ଏମାନେ ବଡ଼ ବଡ଼ ଶିଳ୍ପ କାରଖାନାରେ କାର୍ଯ୍ୟ କରିବାରେ ଅସମର୍ଥ। (ଖ) ଜଙ୍ଗଲ ନଷ୍ଟ ଫଳରେ ଏହି ଅଞ୍ଚଳର ଜଳବାୟୁରେ ବହୁ ପରିବର୍ତ୍ତନ ଘଟି ଏହା ଅସହ୍ୟ ଉତ୍ତପ୍ତ ହୋଇଗଲା। (ଗ) ବୃକ୍ଷରାଜିର ବିଲୋପ ପରେ ବିହାର କ୍ରମାଗତ ବନ୍ୟା ଓ ମରୁଡ଼ିର ଏକ ଲୀଳାକ୍ଷେତ୍ରରେ ପରିଣତ ହୋଇଛି।

ଏହି ଶିଳ୍ପ ସମୂହ ପ୍ରତିଷ୍ଠା ଦ୍ୱାରା ଏକ ବଡ଼ ଭୁଲ ହୋଇଛି ବୋଲି ବିଶ୍ୱାସ କରିବା କଷ୍ଟକର। ଶିଳ୍ପ କାରଖାନା ପ୍ରତିଷ୍ଠା ପାଇଁ ସ୍ୱାଧୀନ ଭାବେ ରହିଥିବା ବିସ୍ତୃତ ଜଙ୍ଗଲ ସମ୍ପଦକୁ କାଟିବା ଏକ ବଡ଼ ନିନ୍ଦନୀୟ କାର୍ଯ୍ୟ। ଯଦି ପ୍ରକୃତରେ ଆମର ଭବିଷ୍ୟତ ପ୍ରତି ଦୃଷ୍ଟି ଥାଆନ୍ତା, ତେବେ ଆମେ ସେମାନଙ୍କର ସୁରକ୍ଷା ପାଇଁ ଏକ ଉପଯୁକ୍ତ ବ୍ୟବସ୍ଥା କରିଥାନ୍ତୁ ଓ ବିହାର ବର୍ତ୍ତମାନ ପରି ବାର୍ଷିକ ପ୍ରବଳ ବନ୍ୟାର ଶିକାର ହେଉ ନ ଥାନ୍ତା।

ଭାରତରେ ଖୁବ କମ୍ ପରିମାଣର ମୌସୁମୀ ଜଙ୍ଗଲ ଏବେ ରକ୍ଷାପାଇ ଯାଇଛି। ନୀରବ ଉପତ୍ୟକା (ସାଇଲେଣ୍ଟ ଭ୍ୟାଲି) ଏହି ଶ୍ରେଣୀର ଏକ ବଡ଼ ଜଙ୍ଗଲ। ମାତ୍ର, ପ୍ରସ୍ତାବିତ ଜଳ ବିଦ୍ୟୁତ କାରଖାନା ପ୍ରତିଷ୍ଠା ଦ୍ୱାରା

ଏହାର ପ୍ରଭୂତ କ୍ଷତି ଘଟିବ। ମୌସୁମୀ ଜଙ୍ଗଲ ସାଧାରଣତଃ ବିଷୁବରେଖା ମଣ୍ଡଳ ଅଞ୍ଚଳରେ ଦେଖାଯାଏ, ଯାହାକି ଭାରତର ଦାକ୍ଷିଣାତ୍ୟ, ଶ୍ରୀଲଙ୍କା, ମାଲେସିଆ ପ୍ରଭୃତି ଦେଶରେ ରହିଛି। ପ୍ରକୃତି ଦ୍ୱାରା ପ୍ରଦତ୍ତ ସମୃଦ୍ଧ, ଅସ୍ଥାନାନ୍ତରିତ ସମ୍ପଦର ଧ୍ୱଂସ ଦ୍ୱାରା ଏହି ଅଞ୍ଚଳର ଲୋକେ ପ୍ରବଳ ବନ୍ୟାରେ ଆର୍ତ୍ତ ଚିତ୍କାର କରୁଥିବାର ଦୃଶ୍ୟ ଆମେ ଏବେ ଦେଖିବାକୁ ପାଉଛୁ।

ବିଗତ 25 ବର୍ଷ ଭିତରେ ବହୁ ସଂଖ୍ୟକ ଶରଣାର୍ଥୀ ଭାରତରେ ବସବାସ କରିବାକୁ ଆସି ପହଞ୍ଚିଛନ୍ତି। ତିବ୍ବତ, ବର୍ମା, ଶ୍ରୀଲଙ୍କା, ପୂର୍ବ ଆଫ୍ରିକା ଓ ପାକିସ୍ତାନରୁ ବହୁ ସଂଖ୍ୟକ ଲୋକ ଆମ ଦେଶକୁ ବିଭିନ୍ନ ପ୍ରକାରେ ଚାଲି ଆସିଛନ୍ତି। ଆମେ ସବୁବେଳେ ସେମାନଙ୍କୁ ବାସଗୃହ ଯୋଗାଇ ଦେଇ ଗର୍ବିତ ହୋଇଛୁ, ମାତ୍ର ଅଧିକାଂଶ କ୍ଷେତ୍ରରେ ଜଙ୍ଗଲ ଜମି ହିଁ ସେମାନଙ୍କୁ ପ୍ରଦାନ କରାଯାଇଛି, ଏବଂ ଏହା ଅଧିକ ଉପଯୁକ୍ତ ବୋଲି ବିଚାର କରାଯାଇଛି। ବହୁ ସଂଖ୍ୟକ ଲୋକଙ୍କ ଜୀବିକା ନିର୍ବାହ ପାଇଁ ଜଙ୍ଗଲ ସମ୍ପଦକୁ କାଟି ଦିଆଯାଇଛି। ଏହି ମତାମତ ଅଧିକ ସ୍ପଷ୍ଟ ଓ କଷ୍ଟକର। ଯେତେବେଳେ ଶରଣାର୍ଥୀମାନେ ଫେରିଯାଆନ୍ତି ସରକାର ନିଜ ଲୋକଙ୍କୁ ସେଠାରେ ବସବାସ କରିବାର ଦାୟିତ୍ୱ ନେଇଥାନ୍ତି।

ହୁଏତ ଏକ ରାଜିନାମା କରାଯାଇ ଯେଉଁ ଜଙ୍ଗଲ ଜମି ଅଧିକାର କରାଯାଇଥାଏ, ସେଠାରେ ଗଛ ଚାଷ କିମ୍ବା ସପୁଷ୍ପକ ଉଦ୍ଭିଦ ରୋପଣ ପାଇଁ ବ୍ୟବହୃତ ହୁଏ। ବ୍ୟବସାୟିକ ଭିତ୍ତିରେ କେତେକ ସପୁଷ୍ପକ ଉଦ୍ଭିଦ ଚାଷ କରାଯାଇଥାଏ। ବାସ୍ତବିକ ବୃକ୍ଷରୋପଣ ଯୋଜନାର ପ୍ରକୃତ ଚିତ୍ର ଆମକୁ ଅଜଣା ଥାଏ। ଗଛ ଆପେ ଆପେ ସୃଷ୍ଟି ହେଉ, ଏହା ଆମେ ଆଶା କରୁ ଏବଂ ଏହାକୁ ବଞ୍ଚାଇ ରଖିବାକୁ କେତେକ କ୍ଷେତ୍ରରେ ବାଧା ବନ୍ଧକ ସତ୍ତ୍ୱେ ଆମେ ଚେଷ୍ଟା କରୁ। ବର୍ତ୍ତମାନ ଅବସ୍ଥାରେ ଏପରି ପରିବର୍ତ୍ତନ ଘଟିଛି ଯେ ଗଛଗୁଡ଼ିକ ଆପଣାଛାଏଁ ପ୍ରାକୃତିକ ଉପାୟରେ ବଞ୍ଚି ରହିଥିବା ଚିନ୍ତାଧାରା କ୍ରମେ ଭୁଲ ବୋଲି ପରିଗଣିତ ହେଲାଣି। ଯଦି ଆମେ ଗଛର ଉଚିତ ସୁରକ୍ଷା ଓ ଯତ୍ନ ନ ନେବା ତେବେ ଖୁବ ଶୀଘ୍ର ଆମେ ଏକ ବୃକ୍ଷଶୂନ୍ୟ ପୃଥିବୀର ସମ୍ମୁଖୀନ ହେବା। ଗଛ ସଂଖ୍ୟା କମିବା ସହିତ ଏହାର ପ୍ରକୃତ ମୂଲ୍ୟ ଖୁବ ଶୀଘ୍ର ବଢ଼ି ଯାଉଛି ଏବଂ ଅତିଶୀଘ୍ର ବୃକ୍ଷରୋପଣ ଏକ ଲାଭଦାୟକ କାର୍ଯ୍ୟରେ ଏପରିକି ପର୍ବତ ଶଯ୍ୟାରେ କୃଷିର ବିକଳ୍ପ ରୂପେ ପରିଣତ ହେବାକୁ ଯାଉଛି। ଭୂମି ମାଲିକମାନଙ୍କ ପାଇଁ ବୃକ୍ଷରୋପଣ

ଏକ ଲାଭଦାୟକ କାର୍ଯ୍ୟରେ ପରିଣତ ହୋଇଛି। ଗଛ କମ୍ ପରିଶ୍ରମ ଆବଶ୍ୟକ କରିଥାଏ। ପାଣିପାଗ ଉପରେ ଏହା ନିର୍ଭରଶୀଳ ନୁହେଁ ଏବଂ ଏହାର ମୂଲ୍ୟ କ୍ରମାଗତ ବଢ଼ିଚାଲିଥାଏ। ମାତ୍ର, ଏହାର ଅପକାର ହେଉଛି ଯେ ମୂଲ୍ୟ ପାଇବାକୁ ଚାଷୀକୁ କିଛି ବର୍ଷ ଅପେକ୍ଷା କରିବାକୁ ହୋଇଥାଏ।

ଏ ଯାଏଁ ଆମେ ଏକ ସମ୍ପୂର୍ଣ୍ଣ ଜଙ୍ଗଲ ନଷ୍ଟ ବିଷୟରେ ଆଲୋଚନା କଲେ। କୃଷି, ଜଳବିଦ୍ୟୁତ ଯୋଜନା କିମ୍ବା ଶରଣାର୍ଥୀଙ୍କ ଥଇଥାନ ପାଇଁ ବିସ୍ତୀର୍ଣ୍ଣ ଅଞ୍ଚଳର ଜଙ୍ଗଲ କିପରି କଟାଯାଏ ତାହା ଆମେ ଜାଣିଲେ। କିନ୍ତୁ ପରୋକ୍ଷ ଓ ବିଶ୍ୱାସଘାତକତାର ସହିତ ମଧ୍ୟ ବହୁ ଜଙ୍ଗଲ ନଷ୍ଟ ହୋଇଥାଏ। ଜଙ୍ଗଲ ନାମକୁ ମାତ୍ର ଥିବାବେଳେ ଏହାର ଚରିତ୍ର ଏପରି ଅଜ୍ଞାତ ଓ ମୃତବତ୍ ଥାଏ ଯେ ଏହା କୌଣସି କାମକୁ ଆସେ ନାହିଁ।

ଆମେ ଦେଖୁ ଯେ ଜଙ୍ଗଲର ବଳ ହେଉଛି ଏହାର ପୁନଃ ସୃଷ୍ଟି କ୍ଷମତା। କ୍ରମାଗତ ଭାବେ ଏଠାରେ ନୂତନ ମଞ୍ଜି ଓ ଚାରା ସୃଷ୍ଟି ହେଉଥାଏ ଏବଂ ଏହା ଭଲ ଅବସ୍ଥାରେ ଅଙ୍କୁରିତ ହୋଇ ବଞ୍ଚି ରହେ, ବଢ଼େ ଓ ମୃତ ଏବଂ ବୃଦ୍ଧ ଗଛର ସ୍ଥାନ ପୂରଣ କରେ। ଏହି ଅବସ୍ଥା ଏପରି ଭାବେ ଲାଗି ରହିଥାଏ ଯେ, କୌଣସି ସମୟରେ ଜଙ୍ଗଲରେ ସବୁ ଅବସ୍ଥାର ଗଛ, ଏପରିକି ସଦ୍ୟ ମଞ୍ଜିରୁ ଉଠୁଥିବା ଗଛ ଓ ବୁଢ଼ା ପଚା ଭାଙ୍ଗିପଡ଼ିଥିବା ଗଛ, ଗଣ୍ଡି ମଧ୍ୟ ଦେଖାଯାଏ।

ଜଙ୍ଗଲ ସମୃଦ୍ଧିର ଅନ୍ୟ ଏକ ବିପଦ ହେଉଛି ଅନଧିକାର ଭାବେ ସୃଷ୍ଟି ହେଉଥିବା କେତେକ ବିଦେଶୀ ଗଛର ସୃଷ୍ଟି, ଯେଉଁମାନେ କି ଆମ ଦେଶ ସହିତ ଯୁକ୍ତିଯୁକ୍ତ ଭାବେ ସଂଶ୍ଳିଷ୍ଟ ନୁହଁନ୍ତି। ଥରେ ଏହି ବିଦେଶୀଗଛ ଜଙ୍ଗଲରେ ପ୍ରଭାବ ବିସ୍ତାର କରିବାପରେ ଏହାକୁ ଉଠାଇଦେବା କଷ୍ଟକର ହୋଇପଡ଼େ।

ବର୍ତ୍ତମାନ ବିଦେଶୀ ଗଛ କଣ ତାହା ଦେଖାଯାଉ। ଏହା ଏପରି ଏକ ବୃକ୍ଷ ଯାହାକି ଅନ୍ୟ ଏକ ଦୂରବର୍ତ୍ତୀ ଭୌଗଳିକ ଅଞ୍ଚଳରେ ପ୍ରାୟ ସମାନ ଜଳବାୟୁରେ ଦେଖାଯାଏ। ଆକସ୍ମିକ ଭାବେ କୌଣସି ଏକ ସୂତ୍ର ମାଧ୍ୟମରେ ବହୁ କ୍ଷେତ୍ରରେ ମଣିଷମାନଙ୍କ ଦ୍ୱାରା ଏହି ଗଛର ମଞ୍ଜି ଆମ ଅଞ୍ଚଳକୁ ଆସିଥାଏ ଏବଂ ଏହିପରି ଭାବେ ଆମ ଜଙ୍ଗଲରେ ବଢ଼ିଥାଏ। ଏଠାରେ ଏହାର କୌଣସି ପ୍ରାକୃତିକ ଶତ୍ରୁ ବିଶେଷ କରି ଯେଉଁ ପ୍ରାଣୀ, ପକ୍ଷୀ ଓ କୀଟ ପତଙ୍ଗ ଏହା ଉପରେ ଖାଦ୍ୟ ପାଇଁ ନିର୍ଭର କରିଥାନ୍ତି,

ପ୍ରାୟ ନ ଥାନ୍ତି। ଏହି ପ୍ରାକୃତିକ ଶତ୍ରୁମାନେ ପୂର୍ବ କଳ୍ପିତ ଅଞ୍ଚଳରେ ରହିଯାଇଥାନ୍ତି, ତେଣୁ ଆମ ଅଞ୍ଚଳରେ ଏହି ବୈଦେଶିକ ବୃକ୍ଷମାନେ ବହୁ ଅଞ୍ଚଳକୁ ମାଡ଼ି ଯାଇ ସ୍ୱଚ୍ଛନ୍ଦରେ ବଢ଼ିଥାନ୍ତି। ଏହି ଜଙ୍ଗଲରେ ଥିବା ଅନ୍ୟାନ୍ୟ ଅନିଷ୍ଟକାରୀ ଜୀବ ଏମାନଙ୍କର କୌଣସି କ୍ଷତି କରନ୍ତି ନାହିଁ, ମାତ୍ର ସେମାନେ ସ୍ଥାନୀୟ ବୃକ୍ଷଲତାଙ୍କର କ୍ଷତି କରିଥାନ୍ତି। ସ୍ଥାନୀୟ ପ୍ରାଣୀ ମଧ୍ୟ ଏହାର ଅଲଗା ସ୍ୱାଦ ଓ ଅଜଣାଭାବ ଯୋଗୁଁ ଏହି ସମୟରେ ଏଠାରୁ ଖାଦ୍ୟ ପାଆନ୍ତି ନାହିଁ କି ଏହାର ଛାୟା ମଧ୍ୟ ଲାଭ କରନ୍ତି ନାହିଁ। ଅନେକ ସମୟରେ ଏହା ମଧ୍ୟ ବିଷାକ୍ତ ହୋଇଥାଏ କିମ୍ବା ସ୍ଥାନୀୟ ଜୀବଜନ୍ତୁଙ୍କ ଦ୍ୱାରା ହଜମ ହୋଇପାରେ ନାହିଁ। ଏହାପରେ କଣ ହୁଏ ? କୌଣସି ପ୍ରକାର ପ୍ରାକୃତିକ ପ୍ରତିବନ୍ଧକ ଓ ବିପଦର ସମ୍ମୁଖୀନ ନ ହୋଇ ଏ ସବୁ ଗଛ ଖୁବ ଶୀଘ୍ର ସାରା ଜଙ୍ଗଲକୁ ବ୍ୟାପେ ଓ ସ୍ଥାନୀୟ ବୃକ୍ଷରାଜିକୁ ଆଚ୍ଛାଦିତ କରିଦିଏ। ସ୍ଥାନୀୟ ବୃକ୍ଷରାଜିର ପରିମାଣ କମିବାଦ୍ୱାରା ଜଙ୍ଗଲ ଜନ୍ତୁମାନଙ୍କର ଖାଦ୍ୟ ମଧ୍ୟ କମିଯାଏ ଓ ଏହା ଏପରି ଏକ କ୍ରମାଗତ ପ୍ରକ୍ରିୟା ସୃଷ୍ଟି କରେ, ଯଦ୍ୱାରା ବୃକ୍ଷରାଜି ଓ ପ୍ରାଣୀମାନେ ଆକ୍ରାନ୍ତ ହୁଅନ୍ତି ଏବଂ ମୋଟ ଜଙ୍ଗଲ ପରିମାଣ ବହୁ ପରିମାଣରେ ଉଭେଇଯାଏ।

ଦେଖାଯାଇଛି ଯେ ପ୍ରଥମ ଅବସ୍ଥାରୁ ଏହି ପ୍ରକାର ବିଦେଶୀ ଗଛକୁ ଜଙ୍ଗଲରେ ଅଳ୍ପ ବିସ୍ତାରିତ ହୋଇଥିବା ଅବସ୍ଥାରେ ଦେଖିଲେ ଏହାକୁ ନିୟନ୍ତ୍ରଣ କରିବା ବିଶେଷ କଷ୍ଟକର ହୁଏ ନାହିଁ। ବସ୍ତୁତଃ ଏମାନଙ୍କୁ ସମୂଳେ ବାହାର କରିଦେବା ମଧ୍ୟ ଅସମ୍ଭବ ନୁହେଁ, ମାତ୍ର ଏହା ଖର୍ଚ୍ଚବହୁଳ ଓ କଷ୍ଟସାଧ୍ୟ। ଯେଉଁଠାରେ ମଞ୍ଜି ପବନଦ୍ୱାରା ସ୍ଥାନାନ୍ତରିତ ହୋଇଥାଏ, ସେଠାରେ ଜଙ୍ଗଲ ନିଆଁ ଭଳି ଉଦ୍ଭିଦମାନେ ବିସ୍ତାରିତ ହୋଇଥାନ୍ତି ଏବଂ ଯେତେବେଳେ ସେମାନଙ୍କୁ ଚିହ୍ନିତ କରାଯାଏ, ସେତେବେଳେ ଏହି ସମସ୍ୟା ବଢ଼ିଯାଇଥାଏ ଏବଂ ଏହା ଅଣାୟତ୍ତ ହୋଇ ପଡ଼ିଥାଏ। ଉଦାହରଣ ସ୍ୱରୂପ- ଇଉପାଟୋରିୟମ ଗଛ, ଦକ୍ଷିଣ ଆମେରିକାରୁ ଚାଲି ଆସିଥିବା ଏକ ଗଛ। ଏହା ମଣିଷ ଉଚ୍ଚତାର ଏକ ବୁଦାଳିଆ ଗଛ। ପ୍ରାୟ 20 ବର୍ଷ ତଳେ ଏହା ପ୍ରଥମେ ଆମ ଦେଶର ଜଙ୍ଗଲରେ ଦେଖାଦେଇଥିଲା। ଶତ୍ରୁବିହୀନ ହୋଇ ଏହା ଖୁବଶୀଘ୍ର ବ୍ୟାପିଯାଇଥିଲା। ଯେଉଁଠାରେ ବୃକ୍ଷଲତା ମଧ୍ୟରେ ଟିକିଏ ଫାଙ୍କା ଥିଲା, ଏହା ସେ ଆଡ଼କୁ ମାଡ଼ି ଯାଇଥିଲା ଏବଂ ଏତେ ବିସ୍ତାରିତ ହୋଇଯାଇଥିଲା ଯେ ସ୍ଥାନୀୟ ବୃକ୍ଷଲତା ସବୁ ସଙ୍କୁଚିତ ହୋଇ ଯାଇଥିଲେ। ଜଙ୍ଗଲ ବିଭାଗ

ଦ୍ୱାରା ବିଭିନ୍ନ ଯୋଜନା ପାଇଁ ସଫାସୁତୁରା କରାହେବା ଏହାର ବିସ୍ତାରିତ ପ୍ରକ୍ରିୟାକୁ ତ୍ୱରାନ୍ୱିତ କରିଥିଲା। ଏହିପରି ଭାବରେ ଏହା ଆମ ଜଙ୍ଗଲର ବହୁ ଅଞ୍ଚଳ, ବିଶେଷ କରି ଆମ ଦେଶର ଦକ୍ଷିଣ ଓ ଉତ୍ତରପୂର୍ବ ଅଞ୍ଚଳର ବହୁ ଜଙ୍ଗଲ ଓ ବନ୍ୟଜନ୍ତୁଙ୍କ ଆଶ୍ରୟସ୍ଥଳକୁ ମାଡ଼ିଯାଇ ବହୁ କ୍ଷେତ୍ରରେ ଅନ୍ୟ ଉଦ୍ଭିଦ ଉପରେ ମାଡ଼ି ଯାଇଥିଲା। ଇଉପିଟୋରିୟମ ଏପରି ନିର୍ବିଚାର ଭାବରେ ଆମ ଜଙ୍ଗଲ ମଧ୍ୟରେ ବ୍ୟାପିଯିବା ମଧ୍ୟ କ୍ଷତିକାରକ। ଏହାର ପ୍ରଳୟଙ୍କର କାରଣ ମଧ୍ୟରେ ଅନ୍ୟତମ କାରଣ ହେଉଛି, ଏହା ଯେ କେବଳ ଶକ୍ତିଶାଳୀ ଓ ବିନିଷ୍ଟକାରୀ ତାହା ନୁହେଁ ଏହା ସମ୍ପୂର୍ଣ୍ଣ ରୂପେ ଅପରିଚିତ। ଆମର ବନ୍ୟପ୍ରାଣୀ ବା ଗୃହପାଳିତ ପଶୁ କେହି ଏହାକୁ କିମ୍ୱା ଏହାର ଯେ କୌଣସି ଅଙ୍ଗକୁ ଖାଆନ୍ତି ନାହିଁ, ଯାହାକି ଆମର ପ୍ରାଣୀଙ୍କୁ କଅଁଳିଆ ଘାସପତ୍ର ଓ ଖାଦ୍ୟ ଯୋଗାଉଥିବା ଉଦ୍ଭିଦରାଜି ଉପରେ ମାଡ଼ି ରହି ଏହାକୁ ଘୋଡ଼ାଇ ରଖିଥାଏ। ଇଉପୋଟୋରିୟମର ମଧ୍ୟ ଅନ୍ୟ ଏକ ଖରାପ ଗୁଣ ରହିଛି। ଖରାଦିନେ ଏହା ସହଜରେ ନିଆଁ ଧରିପାରେ। ଇଉପୋଟୋରିୟମ ସେଇଥିପାଇଁ ଆମର ଜଙ୍ଗଲ ସମ୍ପଦ ପାଇଁ ସବୁଗୁଣରେ ଏକ ବିପତ୍ତି। ଯେତେଶୀଘ୍ର ଓ ଯେ ପର୍ଯ୍ୟନ୍ତ ଏକ ସ୍ୱତନ୍ତ୍ର କାର୍ଯ୍ୟକ୍ରମଦ୍ୱାରା ଆମେ ଏହାକୁ ବହିଷ୍କାର ନ କରିଛୁ, କିଛି ଦିନ ପରେ ଆମେ ହୁଏତ ଦେଖିବା ଯେ ଆମର ବହୁ ଭଲ ଜଙ୍ଗଲ ଇଉପୋଟୋରିୟମ ଜଙ୍ଗଲରେ ପରିଣତ ଓ ପରିବର୍ତ୍ତିତ ହୋଇଛି। ଯେହେତୁ ପ୍ରତ୍ୟେକ ଗଛକୁ ମୂଳ ସହିତ ଓପାଡ଼ିଦେବା କାର୍ଯ୍ୟତଃ ସମ୍ଭବ ନୁହେଁ, ତେଣୁ ଦକ୍ଷିଣ ଆମେରିକାରୁ ଆମେ ଏହାକୁ ଆକ୍ରମଣ କରୁଥିବା କୀଟପତଙ୍ଗକୁ ଆଣିବାକୁ ହେବ ଯେଉଁମାନେ କି ଏହାର ବୃଦ୍ଧିକୁ ରୋକିପାରିବେ ବୋଲି ଉପଦେଶ ଦିଆଯାଇଛି।

ବିଦେଶୀଗଛ ସମସ୍ୟାର ଅନ୍ୟ ଏକ ଭିନ୍ନ ଉଦାହରଣ ହେଉଛି ଇଉକ୍ୟାଲିପଟାସ ଗଛ। ଏହି ଗଛର ଜନ୍ମସ୍ଥାନ ହେଉଛି ଅଷ୍ଟ୍ରେଲିଆ। ଯେହେତୁ ଏହା ଖୁବ ଶୀଘ୍ର ବଢ଼ି କାଠ ଉତ୍ପାଦନ କରିପାରେ ଓ ମଣ୍ଡ କାଗଜ ପ୍ରସ୍ତୁତି ପାଇଁ ଉପଯୋଗୀ, ତେଣୁ ଏହା ଭାରତର ବିଭିନ୍ନ ଅଞ୍ଚଳ, ବିଶେଷଭାବେ ଦକ୍ଷିଣ ଭାରତରେ ଲଗାଯାଉଛି। ଇଉକ୍ୟାଲିପଟାସ ଇଉପୋଟୋରିୟମ ଭଳି ନିଜକୁ ନିଜେ ମାଡ଼ିନଯାଇ ଯେଉଁ ସ୍ଥାନରେ ପୋତାଯାଇଥାଏ, ସେହି ସ୍ଥାନରେ ବଢ଼ିଥାଏ। ତେଣୁ ଏ କ୍ଷେତ୍ରରେ ସମସ୍ୟା କମ୍। ଏହାର ମୁଖ୍ୟ ଦୁର୍ଗୁଣ ହେଉଛି ଏହାର ଚେର ବହୁ ପରିମାଣରେ ଜଳୀୟକଣା ମୃତ୍ତିକାରୁ ଶୋଷି

ଆଣେ, ଫଳତଃ ଇଉକ୍ୟାଲିପଟାସ ଥିବା ଅଞ୍ଚଳ ଏକ ବିସ୍ତୃତ ଅଞ୍ଚଳର ଭୂମିତଳ ଜଳକୁ କମାଇ ଦେଇଥାଏ। ଏହା ଖୁବ୍ କମ ପରିମାଣର ଖାଦ୍ୟ ଓ ବାସୋପଯୋଗୀ ସ୍ଥାନ ସ୍ଥାନୀୟ ପଶୁପକ୍ଷୀଙ୍କୁ ଯୋଗାଇଥାଏ। ଏହା ବ୍ୟତୀତ ଗୋଟିଏ ଦୁଇଟି ସ୍ୱତନ୍ତ୍ର ଜାତିର ଗଛ ବ୍ୟତୀତ ଆମର ସବୁଦିନିଆ ଗଛ ଏହାର ଛାଇ ତଳେ ବଢ଼ିପାରନ୍ତି ନାହିଁ। ଅନ୍ୟଭାଷାରେ ଇଉକ୍ୟାଲିପଟାସ ସ୍ଥାନୀୟ ବୃକ୍ଷରାଜି ସହିତ ମିଶି ଏକ ପୂର୍ଣ୍ଣାଙ୍ଗ ବୃକ୍ଷରାଜି ସୃଷ୍ଟି କରେ ନାହିଁ, ଏହା ଏକ ଅଲଗା ବ୍ୟବସାୟଭିତ୍ତିକ ବୃକ୍ଷରୋପଣ ଭାବେ କାର୍ଯ୍ୟ କରେ। ଏହାର ସ୍ୱତନ୍ତ୍ର ଜୀବନଚକ୍ର ପାଇଁ ଏହା କେବେ ବି ଗୋଟିଏ ଜଙ୍ଗଲର ଅଂଶ ରୂପେ ପରିଗଣିତ ହୁଏ ନାହିଁ। ଆମେ ଇଉକ୍ୟାଲିପଟାସକୁ ସେଥିପାଇଁ ଏକ ଶସ୍ୟ ବୋଲି ଭାବିପାରିବା ଯାହାକୁ ବ୍ୟବସାୟିକ ଭିତ୍ତିରେ ଉତ୍ପାଦନ ପାଇଁ ରୋପଣ କରାଯାଇଥାଏ। ଏହା ପ୍ରକୃତ ଜଙ୍ଗଲ ସହିତ କେବେ ବି ମିଶିପାରେ ନାହିଁ।

ବିଦେଶୀ ଉଦ୍ଭିଦଙ୍କ ବିଷୟରେ ଆଲୋଚନା କଲାବେଳେ ଆମେ ଆଉ ଦୁଇଟି ଆମ ଦେଶରେ ଏକ ପ୍ରକାର ମହାମାରୀ ଅବସ୍ଥା ସୃଷ୍ଟି କରିଥିବା, ମାରିହେଉନଥିବା ବିଦେଶୀ ଉଦ୍ଭିଦଙ୍କ ବିଷୟରେ ଆଲୋଚନା କରିବା ଆବଶ୍ୟକ। ଏହିପରି ଏକ ଉଦ୍ଭିଦ ହେଉଛି ପାଣିହ୍ୟାସିନ୍ଥ। ଏହାର କାଣ୍ଡ ମୋଟା ଓ ସ୍ଫୀତ ଏବଂ ଏଥିରେ ସୁନ୍ଦର ଫିକା ବାଇଗଣି ରଙ୍ଗର ଫୁଲ ଥାଏ। ଏହା ଏକ ଜଳଜ ଉଦ୍ଭିଦ ଓ ଆମ ପୋଖରୀ, କୂଅ, କେନାଲରେ ଦେଖାଯାଏ। ଏହି ଉଦ୍ଭିଦ ଦକ୍ଷିଣ ଆମେରିକାର ବାସିନ୍ଦା ଏବଂ ହୁଏତ କାହାଦ୍ୱାରା ନିଜର ବଗିଚାରେ ଲଗାଯିବା ପାଇଁ ଆମ ଦେଶକୁ ଅଣାଯାଇଥିଲା। ଭାରତରେ ଏହି ଗଛର କୌଣସି ପ୍ରାକୃତିକ ଶତ୍ରୁ ନ ଥିବାରୁ ଏହା ଖୁବ ଶୀଘ୍ର ବଢ଼ିଥାଏ ଓ ଆମର ସ୍ଥିର ଜଳରାଶିକୁ ଅତିଶୀଘ୍ର ଘୋଡ଼ାଇ ପକାଏ। ପ୍ରାକୃତିକ ଭାବେ ଏହା ସ୍ଥାନୀୟ ଜଳଜ ଉଦ୍ଭିଦଙ୍କୁ ମାଡ଼ିଯାଏ। ମାତ୍ର ଏହା ବ୍ୟତୀତ ଏହାର ମଧ୍ୟ ଅନ୍ୟ କେତେକ ମାରତ୍ମକ ଗୁଣ ରହିଛି। ଇଉକ୍ୟାଲିପଟାସ ଯେପରି ମାଟିରୁ ପ୍ରଚୁର ଜଳ ଗ୍ରହଣ କରି ଭୂମିତଳ ଜଳସ୍ତର କମାଇ ଦେଇଥାଏ ସେହିପରି ପାଣିହାଇସିନ୍ଥ ମଧ୍ୟ ଏକ ଲୋଭୀ ଉଦ୍ଭିଦ ଏବଂ ଏହା ଯେତେପାରେ, ସେତେ ପାଣି ଶୋଷି ନିଏ। ପ୍ରକୃତରେ ଯେତେବେଳେ ଗୋଟିଏ ପାଣି ହାଇସିନ୍ଥ କୌଣସି ପୋଖରୀରେ ଦେଖାଦିଏ, ଆମକୁ ନିଶ୍ଚିତ ହେବାକୁ ହେବ ଯେ ଖୁବ ଶୀଘ୍ର ଏହି ପୋଖରୀର ଜଳ ଶୋଷି ହୋଇଯିବ ଏବଂ ଏହି

ପୋଖରୀଟି ଏକ ଶୁଷ୍କ କ୍ଷେତ୍ରରେ ପରିଣତ ହେବ। ଏହା ଚିନ୍ତା କଲାବେଳେ ଭୟ ଲାଗୁଛି ଯେ ଆମ ଦେଶ ଭଳି ଏକ ଜଳକ୍ଲିଷ୍ଟ ଦେଶରେ ଆମର ପୁଷ୍କରିଣୀ ଗୁଡ଼ିକ ଏହିପରି ଏକ ଉଦ୍ଭିଦଦ୍ୱାରା ଶୁଖିଯାଉଛି।

ଅନ୍ୟ ଏକ ବିପଦଜନକ ବିଦେଶୀ ଉଦ୍ଭିଦ ଯାହାକି ଆମ ଦେଶର ସହରବଜାର, ନଗର ଓ ଦେଶର ଅନେକ ସ୍ଥାନରେ ଦେଖାଯାଏ, ତାହା ହେଉଛି ପାରଥିନିୟମ। ଏହି କ୍ଷୁଦ୍ର ଉଦ୍ଭିଦ ଅନ୍ୟ ବଣ୍ୟଉଦ୍ଭିଦ ଭିତରେ ଲୁଚି ରହିଲା ପରି ରହିଥାଏ। ଯେତେବେଳେ ଏଥିରେ କ୍ଷୁଦ୍ର ଧଳା ଫୁଲ ସୃଷ୍ଟି ହୁଏ, ଏହା ବାହାରକୁ ହଠାତ ଦେଖାଯାଏ। ବର୍ତ୍ତମାନ ବହୁ ନଗର ଓ ସହରର ଖୋଲାପଡ଼ିଆ ପାରଥିନିୟମ ଦ୍ୱାରା ବହୁଳଭାବେ ଆଚ୍ଛାଦିତ ହୋଇଛି। ଏହା ଦେଖାଦେବା ଦ୍ୱାରା ସ୍ଥାନୀୟ ଉଦ୍ଭିଦସବୁ ପଛକୁ ହଟିଯାଉଥିବାର ଦେଖାଯାଏ। ପାରଥିନିୟମର ସ୍ୱତନ୍ତ୍ର ଗୁଣ ହେଉଛି ଏହାକୁ ଗାଈଗୋରୁ ଖାଆନ୍ତି ନାହିଁ ଏବଂ ଏହା ମଣିଷ ଦେହରେ ଆଜମା ଓ ଶ୍ୱାସ ପ୍ରଶ୍ୱାସ ଜନିତ ବହୁ ରୋଗ ସୃଷ୍ଟି କରିଥାଏ। ଅନ୍ୟ ବିଦେଶୀ ଗଛ ଭଳି ଏହାକୁ ନିୟନ୍ତ୍ରଣ କରିବାର ବାଟ ହେଉଛି ମୂଳ ସହିତ ଏହାକୁ ଉପାଡ଼ିଦେବା। ମାତ୍ର ଏହା ସମ୍ଭବ ହେବ ଯଦି ପ୍ରତ୍ୟେକ ଅଞ୍ଚଳରେ ସ୍ୱେଚ୍ଛାସେବୀମାନେ ଏହି ଦାୟିତ୍ୱ ବହନ କରି ଏହାକୁ ଉପାଡ଼ି ପୋଡ଼ି ଦେବେ। ପାଣିହାଇସିନ୍ଥ ଭଳି ଖଣ୍ଡେ ଛୋଟିଆ ପାରଥିନିୟମ ଉଦ୍ଭିଦର ମଧ୍ୟ ଏକ ବିରାଟ ଅଞ୍ଚଳରେ ଖୁବ ଶୀଘ୍ର ବିସ୍ତାର ଲାଭ କରିବା ଭଳି ଶକ୍ତି ରହିଛି। ହୁଏତ ଏହିପରି ବିଦେଶୀ ଉଦ୍ଭିଦ ସମସ୍ୟା ସମାଧାନ କରିବାର ମୁଖ୍ୟ ବାଟ ହେଉଛି ବିଦେଶରୁ ସେମାନଙ୍କୁ ନିୟନ୍ତ୍ରଣ କରି ରଖିଥିବା ପ୍ରାକୃତିକ ଶତ୍ରୁଙ୍କୁ ଆଣିବା। ଏହି ପ୍ରକାର ଜୈବ ବିଜ୍ଞାନ ନିୟନ୍ତ୍ରଣ ହୁଏତ ସମୟସାପେକ୍ଷ, ମାତ୍ର ଏହା ହିଁ ପ୍ରକାରାନ୍ତରରେ ଏହି ସମସ୍ୟାର ପୂର୍ଣ୍ଣ ନିୟନ୍ତ୍ରଣ ପାଇଁ ଏକମାତ୍ର ପନ୍ଥା।

ଏହା କୌତୂହଳପ୍ରଦ ଯେ ଯଦିଓ ଭାରତର ଅନ୍ୟାନ୍ୟ ନଗରଠାରୁ ବାଙ୍ଗାଲୋର ନଗରରେ ଅଧିକ ସଂଖ୍ୟକ ଗଛ ରହିଛି, ତଥାପି ଏଠାରେ ଅଧିକ ସଂଖ୍ୟକ ପକ୍ଷୀ ନାହାଁନ୍ତି। ଏହାର କାରଣ ସମ୍ଭବତଃ ଏଠାରେ ଦେଖାଯାଉଥିବା ଅଧିକାଂଶ ସପୁଷ୍ପକ ଉଦ୍ଭିଦ ହେଉଛନ୍ତି ବିଦେଶୀ (ଏମାନଙ୍କ ମଧ୍ୟରୁ ଅନେକ ଦକ୍ଷିଣ ଆମେରିକାରେ ଦେଖାଯାଆନ୍ତି)। ଆମର ସ୍ଥାନୀୟ ପକ୍ଷୀ ତେଣୁ ଏହି ବିଦେଶୀଗଛର ଫଳ ଖାଆନ୍ତି ନାହିଁ କି ଏଥିରୁ ମଧୁ ସଂଗ୍ରହ କରନ୍ତି ନାହିଁ। ତେଣୁ ବାଙ୍ଗାଲୋରର ବହୁ କୃଷିବିତ୍ ଓ ଉଦ୍ୟାନବିତ୍

ଏ ଅଞ୍ଚଳରେ ଅନିଷ୍ଟକାରୀ ଜୀବଙ୍କ ସଂଖ୍ୟା ଅଧିକ ବୋଲି ସ୍ୱୀକାର କରି ଏମାନଙ୍କୁ ଦମନ କରିବାକୁ ପୋକମରା ଔଷଧ କ୍ରମାଗତ ବ୍ୟବହାର କରିବାକୁ ବାଧ ହେଉଛନ୍ତି। ଯଦି ବାଙ୍ଗାଲୋରର ଗଛଗୁଡ଼ିକ ସ୍ଥାନୀୟ ହୋଇଥାନ୍ତା ତେବେ ହୁଏତ ଏ ପ୍ରକାର ଅବସ୍ଥା ସୃଷ୍ଟି ନ ହୋଇ ଅଲଗା ହୋଇଥାନ୍ତା। ଏଠାରେ ହୁଏତ ବହୁ ପ୍ରକାରର ପକ୍ଷୀ ବାସ କରୁଥାନ୍ତେ ଏବଂ କୀଟପତଙ୍ଗ ଏମାନଙ୍କ ଦ୍ୱାରା ନିୟନ୍ତ୍ରିତ ହୋଇଥାନ୍ତେ।

ଆମେ ବର୍ତ୍ତମାନ ଆଲୋଚ୍ୟ ବିଷୟକୁ ଫେରିବା। ତାହା ହେଉଛି ଜଙ୍ଗଲ କିପରି ପତଳା ଓ ନଷ୍ଟ ହେଉଛି। ଏହାର ଏକ ମୁଖ୍ୟ କାରଣ ହେଉଛି କାଠ ଚୋରୀ। କାଠଚୋରିକୁ ଠିକ୍ ଭାବେ ଭାରତୀୟଙ୍କ କ୍ଷେତ୍ରରେ ବିଶ୍ଳେଷଣ କରିବା କଷ୍ଟକର। କାରଣ ଇଂରେଜମାନେ ଜଙ୍ଗଲକୁ ସରକାରୀ ନିୟନ୍ତ୍ରଣାଧୀନ କରି ଜଙ୍ଗଲ ବିଭାଗ ସୃଷ୍ଟି କରିବାର ବହୁ ପୂର୍ବରୁ ଜଙ୍ଗଲ ସମ୍ପଦ କାହାର ବ୍ୟକ୍ତିଗତ ସମ୍ପତ୍ତି ନହୋଇ ସର୍ବସାଧାରଣଙ୍କ ସମ୍ପତ୍ତି ରୂପେ ବିବେଚିତ ହେଉଥିଲା। ଆମର ଶାସକମାନେ ବଂଶ ପରମ୍ପରାଗତ ଭାବେ ଜଙ୍ଗଲରେ ଶିକାର କରୁଥିଲେ, ମାତ୍ର ମୁଷ୍ଟିମେୟ କେତେଜଣ ଏଥିପାଇଁ ସ୍ୱତନ୍ତ୍ର ନିୟମ କାନୁନ ପ୍ରଣୟନ କରିଥିଲେ। ଯେ କୌଣସି ଲୋକ କାଠ ଜଙ୍ଗଲ ଭିତରକୁ ଯାଇ ଯାହା ଇଚ୍ଛା ତାହା ଆଣିବାରେ କୌଣସି ପ୍ରତିବନ୍ଧକ ନଥିଲା। କାଠ ଅପହରଣକାରୀ ବୋଲି କିଛି ନ ଥିଲା। ଏହି ଇଂରେଜୀ ଶବ୍ଦର ନିଜ ଦେଶରେ ଲମ୍ବା ଇତିହାସ ରହିଛି। ଇଂଲାଣ୍ଡରେ ଜଙ୍ଗଲ ସମ୍ପଦ ସେଠାକାର ରାଜା ବା ସ୍ଥାନୀୟ ଜମିଦାରଙ୍କ ନିୟନ୍ତ୍ରଣାଧୀନ ଥିଲା ଏବଂ କୌଣସି ବ୍ୟକ୍ତି ଅନୁମତି ନ ନେଇ ସେଠାରେ ଶିକାର କରିପାରୁନଥିଲେ। ତେଣୁ ଯଦି ଜଣେ ଜଙ୍ଗଲକୁ ଯାଇ ଗୋଟିଏ ହରିଣ ନିଜ ପାଇଁ ଶିକାର କରୁଥିଲା ତେବେ ତାହାକୁ ଅପହରଣକାରୀ ବୋଲି ନାମିତ କରାଯାଉଥିଲା ଏବଂ ଏକ ଚୋର ଭଳି ତାକୁ ଦଣ୍ଡିତ କରାଯାଉଥିଲା। ମାତ୍ର ଆମ ଜଙ୍ଗଲରୁ ଜୀବଜନ୍ତୁଙ୍କୁ ଅପହରଣ କରିନେବା ବନ୍ଦ ହୋଇନଥିଲା। କାଳକ୍ରମେ ଏହା ଗଛ ଲତାଙ୍କ ଆଡ଼କୁ ବଢ଼ିଗଲା। ଆମ ଜଙ୍ଗଲରେ ଥିବା କାଠ ପୃଥିବୀରେ ମିଳୁଥିବା କାଠ ଭିତରେ ଭଲ ହୋଇଥିବାରୁ ବିଦେଶୀ ଖର୍ଦ୍ଦିଦାରମାନେ ମଧ୍ୟ ଏହାକୁ ଅଧିକ ଦାମ୍ ଦେଇ କିଣିନେବାକୁ ପ୍ରସ୍ତୁତ। ଏହା ଦୁର୍ଭାଗ୍ୟର କଥା ଯେ ଆମ ଦେଶରେ କାଠ ଯେ କୌଣସି ସମୟରେ ଚୋରି କରିବା ସହଜ। ଯେତେବେଳେ ଜଙ୍ଗଲ ବିଭାଗ ଗୋଟିଏ କଣ୍ଟ୍ରାକ୍ଟରଙ୍କୁ କେତେକ ସଂଖ୍ୟକ

ଗଛ ବିକ୍ରୀ କରିଥାଏ, ସେତେବେଳେ ସେ ଯେ ଠିକ ସେତିକି ସଂଖ୍ୟକ ଗଛ କାଟି ନେଲା, ଏହା ଚିନ୍ତା କରିବା ଉଚିତ ହେବ ନାହିଁ। ଏହି ବିସ୍ତୃତ ଭୂଖଣ୍ଡିତ ଜଙ୍ଗଲ ସମ୍ପଦକୁ ଜଗିବା ଦାୟିତ୍ୱରେ ଥିବା ଦରୱାନ ଓ ରେଞ୍ଜରଙ୍କ ସଂଖ୍ୟା ସୀମିତ। କଣ୍ଟ୍ରାକ୍ଟର ଧନୀ ଓ ବଳଶାଳୀ। ଯଦିବା ଦରୱାନ ଏହାକୁ ବିରୋଧ କଲା, ତେବେ ସେଥିପାଇଁ ତାକୁ ଭଲ ଅର୍ଥ ମିଳେ ଓ ତାକୁ ସୁରକ୍ଷାମୂଳକ ନିଶ୍ଚିନ୍ତତା ମଧ୍ୟ ଯୋଗାଇ ଦିଆଯାଏ। ସେ ରିଜର୍ଭ ବ୍ୟାଙ୍କ ସହ ସମାନ ଏକ ସଂରକ୍ଷିତ ସମ୍ପଦର ସୁରକ୍ଷା ଦାୟିତ୍ୱ ବହନ କରିଥାଏ। ତାହାର ଏଥିପାଇଁ କେବଳ ଇଚ୍ଛା ନୁହେଁ, ରକ୍ଷା କରିବାର ଶକ୍ତି ଓ ସାମର୍ଥ୍ୟ ଥିବା ଦରକାର।

ଗତ କେତେବର୍ଷ ଧରି ଭାରତରେ ଜଙ୍ଗଲ ଭିତରେ କଣ ଘଟି ଯାଉଛି ଆମେ ସେ ବିଷୟରେ ନିଶ୍ଚିନ୍ତ ରହିଆସିଛୁ। ଜଙ୍ଗଲରୁ ବିଭିନ୍ନ ଜିନିଷ ଅପହରଣ କରିବା ଏକ ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟଭାବେ ଆମେ କେବେ ଚିନ୍ତା କରିନାହୁଁ। ଏବେ ନିକଟ ଅତୀତରେ ଯେତେବେଳେ ଦେଖାଯାଉଛି ଯେ ଅତିଶୀଘ୍ର ଜଙ୍ଗଲ ସମ୍ପଦ ଉଭେଇ ଯାଉଛି, ସେତେବେଳେ ଏହା ଆମେ ଅନୁଭବ କଲୁ ଓ ବର୍ତ୍ତମାନ ଥିବା ଜଙ୍ଗଲ କ୍ରମେ ପତଳା ଓ ରୋଗାକ୍ରାନ୍ତ ହୋଇ ଯାଉଥିବାର ଦେଖିବା ପରେ ଯାଇ ଆମ ନିଦ ଭାଙ୍ଗିଲା।

ବୋଧହୁଏ ଅଳ୍ପ ସଂଖ୍ୟାରେ ଅଧିକ ପରିମାଣରେ ଜାଳେଣୀକାଠ ସଂଗ୍ରହ ଦ୍ୱାରା ସବୁଠାରୁ ଆତଙ୍କଜନକ ଭାବେ ଏହି ହରିଲୁଟ୍ କାମ ଚାଲିଛି। ଏହା ଏତେ କମ୍ କ୍ଷତିକାରକ ଜଣାପଡ଼େ ଯେ କୌଣସି ଲୋକ ଏହା ବନ୍ଦ କରିବାକୁ ଇଚ୍ଛା ପ୍ରକାଶ କରେ ନାହିଁ। ସ୍ଥାନୀୟ ଗ୍ରାମବାସୀମାନେ ସାଧାରଣତଃ ମୁଣ୍ଡରେ ମୁଣ୍ଡାଇ ବା ଗାଡିରେ ବୋଝେଇ କରି ମୃତ କାଠକୁ ଜଙ୍ଗଲ ପାର୍ଶ୍ୱରୁ ସଂଗ୍ରହ କରି ଆଣି ଏହାକୁ ବିକ୍ରୀକରି ଜୀବିକା ନିର୍ବାହ କରିଥାନ୍ତି। ପ୍ରତିଦିନ ଏହିପରି ଶହ ଶହ କାଠ ବୋଝେଇ ଗାଡ଼ି ଜଙ୍ଗଲରୁ ଆସିବା ଦ୍ୱାରା ଜଙ୍ଗଲ ନଷ୍ଟ ହୋଇଥାଏ। ମୃତ କାଠ ହେଉଛି ଖତର ଭଣ୍ଡାର ଓ ଏହା ମାଟିକୁ ଉର୍ବର କରିବା ସହିତ ନୂତନ ବୃକ୍ଷକୁ ସୃଷ୍ଟି କରିବାରେ ସାହାଯ୍ୟ କରିଥାଏ। ଏହା ବ୍ୟତୀତ କାଠ ସଂଗ୍ରହକାରୀମାନେ କେବଳ ପ୍ରାକୃତିକ ଉପାୟରେ ମୃତକାଠ ସଂଗ୍ରହ କରନ୍ତି ନାହିଁ। ସେମାନେ ବହୁ ଉପାୟରେ ଗଛ ଓ ଡ଼ାଳକୁ ଭାଙ୍ଗି ମୃତ କାଠ ସୃଷ୍ଟି କରିଥାନ୍ତି। ଗଛଗଣ୍ଡିକୁ କାଟି ଦାଗ କରି ଦିଆଯାଏ। ଏହାଦ୍ୱାରା ଗଛ କ୍ରମେ ମରିଯାଏ ଓ ମୃତ ଗଛ

ଭାବେ ପରିଗଣିତ ହୁଏ ଓ ଏହାକୁ ଜାଳେଣୀକାଠ ରୂପେ ସଂଗ୍ରହ କରାଯାଏ। ଜୀବନ୍ତ ଡ଼ାଳକୁ ଭାଙ୍ଗି ଦିଆଯାଇ ମାରି ଦିଆଯାଏ। ଯେହେତୁ ଜାଳେଣୀ ସମସ୍ୟା କ୍ରମେ ଅଧିକରୁ ଅଧିକ ହତାଶାପୂର୍ଣ୍ଣ ଭାବେ ବଢୁଛି ତେଣୁ କୌଣସି ଗଛ ଜଙ୍ଗଲରେ ଥାଉ ବା ବାହାରେ ଥାଉ, ବୁଢ଼ା ହୋଇଥାଉ ବା ଶକ୍ତ ହୋଇଥାଉ କିମ୍ବା ଛୋଟ ଅବସ୍ଥାରେ ଥାଉ, ଏହା କାଠ ସଂଗ୍ରହକାରୀଙ୍କୁ ଏଡ଼ାଇଯିବା ସମ୍ଭବ ନୁହେଁ। ଏହା ଆତଙ୍କଜନକ ଯେ ମଧ୍ୟପ୍ରଦେଶରେ ଜାଳେଣୀପାଇଁ ଯେତିକି କାଠ ସଂଗ୍ରହ କରାଯାଏ, ତାହାର ପରିମାଣ ନୂତନ ଭାବେ ସୃଷ୍ଟି ହେଉଥିବା ଗଛଠାରୁ ଅଧିକ। ଏହା ଯୋଜନାବଦ୍ଧ ଭାବେ ସଂଗୃହୀତ କାଠ ଠାରୁ ଭିନ୍ନ ଏବଂ ମଧ୍ୟପ୍ରଦେଶରେ ଅନ୍ୟ ରାଜ୍ୟ ତୁଳନାରେ ଅଧିକ ଜଙ୍ଗଲ ରହିଛି। ଯଦି ମଧ୍ୟପ୍ରଦେଶ କ୍ଷେତ୍ରରେ ଏହା ସତ୍ୟ, ତେବେ ଅନ୍ୟ ପ୍ରଦେଶର ଅବସ୍ଥା କଣ ଆମକୁ ଏଥିରୁ ଅନୁମାନ କରିବାକୁ ହେବ। ଆମେ ଯଦି ଅତିଶୀଘ୍ର ଜାଳେଣୀର ବିକଳ୍ପ ଉଦ୍ଭାବନ କରି ବ୍ୟବହାର ନ କରିବା ତେବେ ଆମେ ଆମର ଜଙ୍ଗଲ ସମ୍ପଦକୁ ଯେ ହରାଇବା ଏଥିରେ ସନ୍ଦେହ ନାହିଁ।

ଅନେକ ଜୀବଜନ୍ତୁଙ୍କ ପାଇଁ ଏହା ଦୁର୍ଭାଗ୍ୟର ବିଷୟ ଯେ ସେମାନଙ୍କ ମାଂସ ସୁସ୍ୱାଦୁ, ଅନ୍ୟ କେତେକ ମଧ୍ୟ ଅତି ସୁନ୍ଦର, ଚମଡା, ଲୋମ ବର୍ହିଚର୍ମ, ଶିଙ୍ଗ କିମ୍ବା ଦାନ୍ତ ସଂପନ୍ନ ହୋଇ ଦୁର୍ଭାଗ୍ୟକୁ ଆଦରି ନେଇଛନ୍ତି, ଯାହାର ଆଦର ପୃଥିବୀର ବହୁ ବଡ ବଡ ସହରରେ ରହିଛି। ଏହା ଆଶ୍ଚର୍ଯ୍ୟଜନକ ଯେ ଲୋକମାନେ ଏହି ଜୀବଙ୍କୁ ଧରି କିମ୍ବା ମାରି ସେମାନଙ୍କ ଶରୀରକୁ ଅଧିକ ମୂଲ୍ୟରେ ବିକ୍ରୀ କରିବାରେ ଦ୍ୱିଧାବୋଧ କରନ୍ତି ନାହିଁ।

ଯେତେବେଳେ କୁମ୍ଭୀର ଚମଡାରେ ନିର୍ମିତ ହୋଇଥିବା ହାତବ୍ୟାଗ ଧରିବା ଏକ ବିଳାସରେ ବା ସଉକରେ ପରିଣତ ହୋଇଛି, ସେତେବେଳେ ଆମର ବଣ୍ୟ ପରିବେଶରେ ଥିବା କୁମ୍ଭୀରଙ୍କ ସଂଖ୍ୟା ବିଲୁପ୍ତ ହେବା ଅବସ୍ଥାରେ ଆସି ପହଁଞ୍ଚିଛି। ଯେତେବେଳେ ମହିଳାମାନେ ଚିତାବାଘ ଚମଡାଯୁକ୍ତ ପୋଷାକ ପିନ୍ଧିବାକୁ ପସନ୍ଦ କରୁଛନ୍ତି, ଆମର ଚିତାବାଘ ସଂଖ୍ୟା କମିଯାଉଛି। ଏବଂ ଯେତେବେଳେ ସାପ ଓ ଗୋଧି ଚମଡା ଯୋତା ଓ କମରପଟି ପିନ୍ଧିବାକୁ ଲୋକେ ଭଲ ପାଉଛନ୍ତି, ସେତେବେଳେ ଏହି ସରୀସୃପ ବିଲୁପ୍ତ ଅବସ୍ଥାକୁ ଆସିଗଲେଣି। ମାଟିଆ ବଣକୁକୁଡାକୁ ମାରି ଦିଆଯାଉଛି, କାରଣ ଏହାର ପକ୍ଷରୁ ମାଛଧରା ପର ପ୍ରସ୍ତୁତ ହେଉଛି ଓ ବଗ ମାନଙ୍କୁ ମାରି ଏମାନଙ୍କ ମୁଣ୍ଡର ପରକୁ ସ୍ତ୍ରୀ ଲୋକଙ୍କ ମୁଣ୍ଡ ଟୋପିରେ ବ୍ୟବହାର କରାଯାଉଛି।

ହାତୀକୁ ମାରି ତାର ଦାନ୍ତ ଓ ହାଡ ସଂଗ୍ରହ କରାଯାଇ ସାରା ବିଶ୍ୱରେ ବହୁ ଉଚ୍ଚ ମୂଲ୍ୟରେ ବିକ୍ରୀ କରାଯାଉଛି।

ଆମ ଜଙ୍ଗଲରୁ ଅପହୃତ ହେଉଥିବା ପ୍ରାୟ ସବୁ ଜୀବଜନ୍ତୁ ଆନ୍ତର୍ଜାତିକ ବଜାର ପାଇଁ ଉଦ୍ଦିଷ୍ଟ ଯେଉଁଠାରୁ ଉଚ୍ଚ ମୂଲ୍ୟ ମିଳିବ ଓ ସୌଖିନ କରିବା ଯେଉଁଠାରେ ବନ୍ଦ କରାଯାଇପାରିବ ନାହିଁ। ଭାରତ ଭିତରେ ଏପରି ଜୀବଜନ୍ତୁଙ୍କ ଉପରେ ଅଧିକ ଗୁରୁତ୍ୱ ଦିଆଯାଏ ଯାହାର କାମୋଦ୍ଦୀପକ ଓ ଔଷଧୀୟ ଗୁଣ ରହିଛି। ଉଦାହରଣ ସ୍ୱରୂପ, ଗଣ୍ଡାକୁ ଏହାର ଶିଙ୍ଗପାଇଁ, ନୀଳଗିରିର ଏକ ଜାତିର ମାଙ୍କଡକୁ ଏହାର ମାଂସ ପାଇଁ ଏବଂ ଲୋରିସକୁ ଏହାର ଆଖି ପାଇଁ, ଯାହାକି ଦୃଷ୍ଟିଶକ୍ତି ପ୍ରଖର କରିଥାଏ ବୋଲି କୁହାଯାଏ, ମରାଯାଇଥାଏ। ଯଦି ଆମେ କୌଣସି ରାସାୟନିକ ପଦାର୍ଥ ଏହାର ବିକଳ୍ପଭାବେ ପାଇବା, ତେବେ ହୁଏତ ଆମେ ଉଭେଇଯାଉଥିବା ଏହି ବଣ୍ୟପ୍ରାଣୀଙ୍କ ଜୀବନରକ୍ଷା କରିପାରିବା।

ବଣ୍ୟପ୍ରାଣୀଙ୍କ ରପ୍ତାନି ନେଇ ସୌଭାଗ୍ୟବଶତଃ ରାଜନୈତିକ ସ୍ତରଯାଏଁ ମଧ୍ୟ ବିଚାର ବିମର୍ଶ ବା ମତାମତ ପ୍ରଦାନ ଚାଲିଥାଏ। ୟୁରୋପ ଓ ଆମେରିକା ଲୋକଙ୍କ ବିଷୟରେ ଚିନ୍ତା କଲେ ସେମାନେ ମଧ୍ୟ ଆମ ଭଳି ଭାରତୀୟ ବଣ୍ୟପ୍ରାଣୀଙ୍କ ସଂଖ୍ୟା ହ୍ରାସ ନେଇ ଉଦ୍‌ବେଗ ପ୍ରକାଶ କରିଥାନ୍ତି। ଆମେ ଯେତେବେଳେ ପ୍ରାଣୀମାନଙ୍କୁ ମାରିବା ଓ ସେମାନଙ୍କୁ ରପ୍ତାନି କରିବା ବନ୍ଦ କରିବାକୁ ଚେଷ୍ଟା କରୁଛୁ, ସେମାନେ ସେତେବେଳେ ସେମାନଙ୍କ ଦେଶକୁ ଏହି ସବୁ ବିଲୁପ୍ତପ୍ରାୟ ପ୍ରାଣୀ ଓ ଏହାର ଚମଡା ଅମଦାନୀ ନିଷିଦ୍ଧ କରୁଛନ୍ତି। ସି.ଆଇ.ଟି.ଇ.ଏସ୍. ନାମକ ଏକ ଆନ୍ତର୍ଜାତିକ ସମ୍ମିଳନୀ ଗଠନ କରାଯାଇଛି, ଯାହାକି ବହୁ ପକ୍ଷୀ ଓ ପ୍ରାଣୀଙ୍କର ଚିଠା ପ୍ରସ୍ତୁତ କରି ଏମାନଙ୍କ ଆମଦାନୀ ରପ୍ତାନୀ ନିଷିଦ୍ଧ କରିଛନ୍ତି। ବିପଦଜନକ ଭାବେ ବିଲୁପ୍ତ ଅବସ୍ଥାରେ ରହିଥିବା ବାଘ, କୁମ୍ଭୀର, ଘଡିଆଳ, ଓ ଭାରତୀୟ ବଡ ଗୟଳ ପ୍ରଭୃତିଙ୍କୁ ପ୍ରଥମ ଶ୍ରେଣୀଭୁକ୍ତ କରାଯାଇଛି। ଏହାର ଅର୍ଥ ଏମାନଙ୍କୁ ନେଇ କୌଣସି ପ୍ରକାର ବ୍ୟବସାୟିକ ପରିବହନ କରାଯାଇପାରିବ ନାହିଁ। ଅନ୍ୟ ଜାତିର ପ୍ରାଣୀ ଯେଉଁମାନେ ଆଂଶିକ ବିଲୁପ୍ତ, ସେମାନଙ୍କୁ ଦ୍ୱିତୀୟଶ୍ରେଣୀ ଭୁକ୍ତ କରାଯାଇଛି ଏବଂ ସେମାନଙ୍କୁ ନିୟନ୍ତ୍ରିତ ଭାବେ ବ୍ୟବସାୟ କରାଯିବ। ଏହା ବ୍ୟତୀତ ତୃତୀୟ ଶ୍ରେଣୀ ଅନ୍ତର୍ଭୁକ୍ତ ପଶୁଙ୍କ ପାଇଁ କମ୍ ନିୟନ୍ତ୍ରଣ ବ୍ୟବସ୍ଥା ରହିଛି। ଯେହେତୁ ଭାଗ ନେଇଥିବା ସବୁ ଦେଶ ମିଳିତ ଭାବେ ଏକ ବୈଜ୍ଞାନିକ ସଙ୍ଗଠନକୁ ଏହାର

କାର୍ଯ୍ୟ ପରିଚାଳନା କରିବାର ଦାୟିତ୍ୱ ଦେଇଛନ୍ତି, ଅପହରଣ ପ୍ରକ୍ରିୟା ଏହାଦ୍ୱାରା ନିୟନ୍ତ୍ରିତ ହୋଇପାରିବ ବୋଲି ଆମେ ଆଶା କରିବା।

ଯେହେତୁ ଜଙ୍ଗଲଜାତ ଦ୍ରବ୍ୟ ଆମର ବହୁ ଦରକାରୀ ଓ ମୂଲ୍ୟବାନ, ଆମ ମନରେ ପ୍ରଶ୍ନ ଉଠେ ଯେ, ଆମେ କାହିଁକି ନୂଆ ଜଙ୍ଗଲ ସୃଷ୍ଟି ନକରିବା ? ରେଳଡବା ତିଆରି ଭଳି ବହୁ କାମରେ ବ୍ୟବହାର କରୁଥିବା ସାଗୁଆନ ଗଛକୁ ଆମେ ପ୍ରାକୃତିକ ଜଙ୍ଗଲରେ ପୁନଃରୋପଣ କରି ସାଗୁଆନ କାଠ ପାଇପାରିବା। ବର୍ତ୍ତମାନ ବହୁ ଇଉକ୍ୟାଲିପଟାସ ଜଙ୍ଗଲ ସୃଷ୍ଟି କରାଯାଇ ଏଥିରୁ ଶୀଘ୍ର ମଣ୍ଡ ଓ କାଗଜ କଳ ପାଇଁ କଞ୍ଚାମାଲ ମିଳିପାରୁଛି। ମାତ୍ର, ଏହି ଜଙ୍ଗଲକୁ ଏକ ଜାତୀୟ ବୃକ୍ଷରୋପଣ ଯୋଜନା ବୋଲିବାକୁ ହେବ, ଏହା ଏକ ପ୍ରକୃତ ଜଙ୍ଗଲ ନୁହେଁ। ଏକ ପ୍ରକୃତ ଜଙ୍ଗଲର ଶକ୍ତି ସମ୍ବଳ ହେଉଛି ଏହାର ବିଚିତ୍ର ବିଭିନ୍ନତା, ବିଭିନ୍ନ ଆକାର ପ୍ରକାରର ବୃକ୍ଷରାଜି, ବହୁ ଆକାର ବିଶିଷ୍ଟ ପତ୍ରରାଜି, ବହୁ ଉଚ୍ଚତା ବିଶିଷ୍ଟ ବୃକ୍ଷସମ୍ପଦ ଏବଂ ସର୍ବୋପରି ବହୁ ପ୍ରକାର ସନ୍ତ୍ୟପାୟୀ ପ୍ରାଣୀ, ପକ୍ଷୀ, କୀଟ ପତଙ୍ଗ ଓ ସରୀସୃପ, ଯେଉଁମାନେ କି ବିଭିନ୍ନ ଅଞ୍ଚଳରେ ବାସ କରି ପରସ୍ପର ସହିତ ସଂଯୋଗ ରକ୍ଷା କରି ବଞ୍ଚିଥାନ୍ତି ଓ ଜଙ୍ଗଲକୁ ମୁଖରିତ କରିଥାନ୍ତି।

ଏପରିକି ମୃତ୍ତିକା ଧାରଣ କରିବା କ୍ଷମତା ଅନୁସାରେ ପର୍ବତଶିଖରରେ ଥିବା ବୃକ୍ଷରାଜି ଏକ ପ୍ରାକୃତିକ ଜଙ୍ଗଲ ସହିତ ତୁଳନୀୟ ନୁହେଁ। ଏକ ପ୍ରାକୃତିକ ଜଙ୍ଗଲରେ ମାଟି ତଳର ଚିତ୍ର ମାଟି ଉପରର ଚିତ୍ର ପରି କୌତୁହଳପ୍ରଦ। ପ୍ରତ୍ୟେକ ଜାତିର ଚେର ଅଲଗା ଅଲଗା। କେତେକଙ୍କ କ୍ଷେତ୍ରରେ ଏହା ଲମ୍ବା ଓ ଗଭୀରକୁ ଯାଇଥିବା ବେଳେ, କେତେକଙ୍କର ଗଛ ଚେର ଥାଇ ମାଟି ତଳେ ସମାନ୍ତରାଳ ଭାବେ ବିସ୍ତୃତ ହୋଇଥାଏ। କେତେକଙ୍କର ଚେର ମୋଟା ହୋଇଥିବାବେଳେ କେତେକଙ୍କର ଚେର ପତଳା। କେତେକ ଚେର ସିଧା ଓ ଲମ୍ବା, କେତେକ ଚେର ଅନିର୍ଦ୍ଦିଷ୍ଟ ଭାବେ ଶାଖା ପ୍ରଶାଖା ଯୁକ୍ତ ହୋଇ ରହିଥାଏ। ଏହିପରି ବିଭିନ୍ନ ପ୍ରକାରର ଚେର ଗଛକୁ ଦୃଢ଼ ଭାବରେ ଧରି ରଖିବାର ମୂଳଦୂଆ ସ୍ଥାପନ କରିଥାଏ। ଏହା ଆଶ୍ଚର୍ଯ୍ୟଜନକ ନୁହେଁ ଯେ ମାଟି ଅପରିବର୍ତ୍ତନୀୟ ଦୃଢ଼ ହୋଇରହିଥାଏ ଏବଂ ଝରଣା ସ୍ୱଚ୍ଛ ଭାବେ ପ୍ରବାହିତ ହେଉଥିଲେ ସୁଦ୍ଧା ଏଥିରୁ କିଛି ନେଇଯାଇ କୌଣସି ଚିହ୍ନ ସୃଷ୍ଟି କରିବାରେ ସକ୍ଷମ ହୁଏ ନାହିଁ। ଯେଉଁଠାରେ ଗଛଗୁଡିକ ଏକ ପ୍ରକାରର ହୋଇଥାନ୍ତି, ସେଠାରେ ଚେର ଗୁଡିକ ଗୋଟିଏ ପ୍ରକାରର ହୋଇ ପ୍ରାୟ

ସମାନ ଗଭୀରତାକୁ ଯାଇଥାଏ। ଗଛ ଗୁଡିକ ଅତି ନିକଟରେ ପୋତାଯିବା ଉଚିତ ନୁହେଁ, କାରଣ ଏହାଦ୍ୱାରା ସେମାନଙ୍କ ଚେର ପାଇଁ ଆବଶ୍ୟକ ସ୍ଥାନ ମିଳେ ନାହିଁ। ଏହା ମାଟି ତଳର ଏକ ବିରାଟ ଅଞ୍ଚଳରେ ଅବ୍ୟବହୃତ ସ୍ଥାନ ସୃଷ୍ଟି କରିଥାଏ ଯାହା କି ପ୍ରବଳ ବର୍ଷାରେ ପର୍ବତ ତଳକୁ ଚାଲିଆସେ। ଗୋଟିଏ ଜାତିର ଗଛଥିବା ଜଙ୍ଗଲ ମାଟି ଉପରକୁ ଅତି ଦୁର୍ବଳ ଓ ସୃଷ୍ଟିକାରୀ ହୋଇନଥିବା ବେଳେ ମାଟି ତଳେ ପତଳା ଓ ନିଷ୍ଫଳ ହୋଇଥାଏ। ଏଇଥିପାଇଁ ଗୋଟିଏ ଜାତିର ବୃକ୍ଷରୋପଣ ପାଇଁ ପରିସଂସ୍ଥାନବିତ୍ ଓ ସଂରକ୍ଷଣବିତ୍‌ମାନେ ପସନ୍ଦ କରନ୍ତିନାହିଁ।

ଏଠାରେ ପୁଣି ସ୍ଥାନୀୟ ଓ ବିଦେଶୀ ଜାତିର ବୃକ୍ଷ ମଧ୍ୟରେ ଥିବା ଭିନ୍ନତା ଗୁରୁତ୍ୱପୂର୍ଣ୍ଣ। ଉଦାହରଣ ସ୍ୱରୂପ, ସାଗୁଆନ ଭାରତରେ ଦେଖାଯାଉଥିବା ଏକ ଗଛ। ଯଦି ସାଗୁଆନ ଗଛ ରୋପଣ ଏକାକୀ କରାଯାଏ,ତେବେ ଏହା ପକ୍ଷୀ ଓ କୀଟପତଙ୍ଗଙ୍କୁ ଆକୃଷ୍ଟ କରିବ ଏବଂ ପ୍ରକାରାନ୍ତରେ ଏମାନେ ବହୁ ମଞ୍ଜି ଆଣି ଏଠାରେ ପକାଇବା ଦ୍ୱାରା କିଛି ଦିନ ଭିତରେ ଏଠାରେ ବହୁ ସ୍ଥାନୀୟ ଗଛ ସୃଷ୍ଟି ହେବ ଏବଂ ଏହା ଏକ ସୁନ୍ଦର ପ୍ରାକୃତିକ ଜଙ୍ଗଲରେ ପରିବର୍ତ୍ତିତ ହୋଇଯିବ। ଅନ୍ୟ ପକ୍ଷରେ ଇଉକ୍ୟାଲିପଟାସ ଏକ ଅଷ୍ଟ୍ରେଲିଆ ବଂଶୋଦ୍ଭବ ଗଛ ଏବଂ ଏହା ଆମର ସ୍ଥାନୀୟ କୌଣସି ଜାତିର ପଶୁପକ୍ଷୀଙ୍କୁ ଆକୃଷ୍ଟ କରେ ନାହିଁ। ତେଣୁ ଏହା କେବେହେଲେ ଏକ ଜଙ୍ଗଲ ସୃଷ୍ଟି କରିପାରିବ ନାହିଁ କାରଣ ଏହାର ପତ୍ରରାଜି ଅନ୍ୟ ଗଛକୁ ଏହା ନିକଟରେ ବୃଦ୍ଧିପାଇବାକୁ ପ୍ରତିରୋଧ କରିଥାଏ। ଏହା କେବଳ ଏକ ଇଉକ୍ୟାଲିପଟାସ ରୋପଣ ଅଞ୍ଚଳରୂପେ ପରିଚିତ ହୋଇଥାଏ।

ଜଙ୍ଗଲରେ ଏକ ଜାତିର ବୃକ୍ଷରୋପଣ, ସପୁଷ୍ପକ ଉଦ୍ଭିଦ ରୋପଣ କିମ୍ବା ମାଇଲମାଇଲ ବ୍ୟାପୀ ଗୋଟିଏ ପ୍ରକାର ମଞ୍ଜିପୋତିବା ଦ୍ୱାରା ଅନ୍ୟ ଏକ ସମସ୍ୟା ସୃଷ୍ଟି ହୋଇଥାଏ। ଏହା ଅନିଷ୍ଟକାରୀ ଜନ୍ତୁଙ୍କୁ ଆକୃଷ୍ଟ କରିଥାଏ। ଏକ ଜାତିର ପ୍ରଚୁର ଖାଦ୍ୟ ମଧ୍ୟ କେତେକ ସ୍ୱତନ୍ତ୍ର ଶ୍ରେଣୀର କୀଟପତଙ୍ଗଙ୍କୁ ଆକୃଷ୍ଟ କରିଥାଏ, ଯେଉଁମାନେ କି ସେମାନଙ୍କର ଅତ୍ୟଧିକ ସଂଖ୍ୟା ପାଇଁ ଅନିଷ୍ଟକାରୀ ଜୀବ ରୂପେ ପରିଚିତ ହୋଇଯାଆନ୍ତି।

ଆମେ ଏହିସବୁ ବିଷୟରୁ ଯାହା ଜାଣିଲେ, ତାହା ହେଉଛି ପ୍ରାକୃତିକ ଜଙ୍ଗଲ ହିଁ ଶ୍ରେଷ୍ଠ ଜଙ୍ଗଲ, ଯାହାକି ବିଭିନ୍ନ ପ୍ରକାର ସ୍ଥାନୀୟ ସମ୍ପଦରେ ପୂର୍ଣ୍ଣ ହୋଇଥାଏ। ଏଠାରେ ସମୃଦ୍ଧି, ସମତା ଓ ପୁଷ୍ଟତା ଥିବା ସହିତ

ସବୁ ଜୀବଙ୍କ ମଧ୍ୟରେ ପାରସ୍ପରିକ ସମ୍ପର୍କ ରହିଥାଏ।

ଜଙ୍ଗଲ ଶବ୍ଦ ଶହ ଶହ ବର୍ଷ ପୂର୍ବରୁ ପ୍ରକୃତିଦ୍ୱାରା ସୃଷ୍ଟ ଏକ ବିରାଟ ଗଛଭିଆ ଭାବେ ରହିଥିବା ଅଞ୍ଚଳର ଚିତ୍ର ଉପସ୍ଥାପିତ କରିଥାଏ। ଆମେ ଦେଖୁ ଏହି ଜଙ୍ଗଲ ଆମର କାଠ ଆବଶ୍ୟକତାକୁ ସମ୍ପୂର୍ଣ୍ଣରୂପେ ପୂରଣ କରିପାରେ ନାହିଁ। ଜଙ୍ଗଲର ପରିମାଣ ବୃଦ୍ଧିକରିବା ଏବେ ଆବଶ୍ୟକ ହେଲାଣି। ଏହି ସମୟରେ ଆମକୁ ମଧ୍ୟ ବୁଝିବାକୁ ହେବ ଯେ ପରମ୍ପରାଗତ ଭାବେ ରହିଥିବା ଜଙ୍ଗଲ ଅଞ୍ଚଳ ଯେତେ ଯାହା ହିସାବ କଲେ ମଧ୍ୟ ଆମର କାଠ ଓ ଜାଳେଣୀ ପାଇଁ କ୍ରମବର୍ଦ୍ଧିଷ୍ଣୁ ଆବଶ୍ୟକତାକୁ ପୂରଣ କରିପାରିବ ନାହିଁ। ଆମକୁ ସାଧାରଣ ଭାବେ ଆହୁରି ଅଧିକରୁ ଅଧିକ କାଠ ସୃଷ୍ଟି କରିବାକୁ ହେବ। ଯେତେସବୁ ବେସରକାରୀ ଛୋଟ ଜମି ରହିଛି, ବୃକ୍ଷରୋପଣ ଦ୍ୱାରା ଏଠାରୁ କାଠ ଉତ୍ପାଦନ କରାଯିବା ଆବଶ୍ୟକ। ପ୍ରତ୍ୟେକ ଗାଁ ଓ ସହରର ନିଶ୍ଚିତ ଭାବେ ନିଜର ସ୍ୱତନ୍ତ୍ର ବୃକ୍ଷରୋପଣ କ୍ଷେତ୍ର ରହିବା ଉଚିତ ଏବଂ ଏହା ସମୂହଭାବେ ରୋପିତ ଓ ସଂରକ୍ଷିତ ହେବା ଦରକାର। ସମବାୟ ଉପାୟରେ ଚାଳିତ ଏହି ବୃକ୍ଷରୋପଣ ଅଞ୍ଚଳ ସ୍ଥାନୀୟ ଲୋକଙ୍କୁ ଆବଶ୍ୟକ କରୁଥିବା ସବୁକାଠ ଯୋଗାଇ ଦେଇ ପାରିବ।

ଏହା ସୁସ୍ପଷ୍ଟ ଯେ ଏହି କାର୍ଯ୍ୟ କରିବାପାଇଁ ସହଯୋଗ, ଶୃଙ୍ଖଳା ଓ ସଙ୍ଗଠନର ଆବଶ୍ୟକତା ରହିଛି ଯାହା କି ଏଠାରେ ମିଳିବା କଷ୍ଟକର। ମାତ୍ର ଗୁଜୁରାଟ ରାଜ୍ୟରେ ଦେଖାଯାଉଛି ଯେ, ସେମାନେ କେତେକ ବଂଶାନୁଗତିକ କାର୍ଯ୍ୟକ୍ରମ ସମବାୟ ସଂସ୍ଥା ଗଠନ କରି ତାହା ମାଧ୍ୟମରେ ସଫଳତାର ସହ ବୃକ୍ଷରୋପଣ ଓ ସାମାଜିକ ବନୀକରଣ କାର୍ଯ୍ୟକ୍ରମ ବିରାଟ ଅଞ୍ଚଳରେ କରିପାରିଛନ୍ତି। ଗୁଜୁରାଟ ଲୋକେ ସେମାନଙ୍କ କାର୍ଯ୍ୟଦକ୍ଷତା ଓ ବ୍ୟବସାୟିକ ମନୋବୃତ୍ତି ସମ୍ପନ୍ନ ଗୁଣଯୋଗୁଁ ପରିଚିତ। ସେମାନେ ଅନୁଭବ କରିଛନ୍ତି ଯେ, ଗଛଗୁଡିକ ସେତେଦିନ ଯାଏ ସୁରକ୍ଷିତ ଥିବ, ଯେତେଦିନଯାଏଁ ସ୍ଥାନୀୟ ଲୋକେ ଗଛଠାରୁ ସିଧାସଳଖ କିଛି ଉପକାର ପାଉଥିବେ। ଏକ ଦୀର୍ଘମିଆଦୀ କାର୍ଯ୍ୟକ୍ରମ କାର୍ଯ୍ୟକାରୀ କରାଯାଇ ଏହା ମଧ୍ୟରେ ଗଛର ଉପକାର ମୂଲ୍ୟ ବିଷୟରେ ପିଲାମାନଙ୍କୁ ଶିକ୍ଷା ଦିଆଯାଉଛି। ସହର, ନଗର ସାଧାରଣ ସ୍ଥାନରେ ବୃକ୍ଷରୋପଣ ପାଇଁ ସ୍ୱେଚ୍ଛାକୃତ ଶ୍ରମଦାନ ପାଇଁ ମଧ୍ୟ ଏହା ମାଧ୍ୟମରେ ପ୍ରଭାବିତ କରାଯିବା ସଙ୍ଗେ ସଙ୍ଗେ ଏହାଦ୍ୱାରା ସ୍ଥାନୀୟ ଲୋକେ ସିଧାସଳଖ ଭାବେ ଉପକୃତ ହେବେ ବୋଲି କୁହାଯାଉଛି।

ସାମାଜିକ ବନୀକରଣ ବ୍ୟବସ୍ଥା ବିଷୟରେ ଆମ୍ଭେମାନେ ସମସ୍ତେ ଗୁଜୁରାଟବାସୀଙ୍କଠାରୁ ଶିକ୍ଷାଲାଭ କରିବା ଉଚିତ। ପ୍ରତ୍ୟେକ ଖୋଲା ଛୋଟ ଜମିରେ ବୃକ୍ଷରୋପଣ କରାଯିବା ଆବଶ୍ୟକ ଯାହାକି ଆମକୁ ଫଳ, ଜାଳେଣୀ, କାଠ ଓ ଛାୟା ଦେଇପାରିବେ। ଆମେ ପୋତୁଥିବା ଗଛ ଯେପରି ସର୍ବାଧିକ ବୃଦ୍ଧି ଲାଭ କରେ, ତାହା ଦେଖିବା ଉଚିତ। ଏହି ବିଷୟ ସାଧାରଣ ଜଣାପଡୁଥିଲେ ମଧ୍ୟ ଯଦି ଏହାକୁ କାର୍ଯ୍ୟକାରୀ କରାଯାଏ ତେବେ ଆମେ ଦେଶର ସମୃଦ୍ଧି ଆଣି ପାରିବା।

1984 ମସିହାର ସରକାରୀ ହିସାବ ଅନୁସାରେ ସମଗ୍ର ଭୂଭାଗର ମାତ୍ର 19 ଭାଗ ଅଞ୍ଚଳ ହେଉଛି ଜଙ୍ଗଲ। ଏହା ହୁଏତ ଶୁଭଙ୍କର ହୋଇପାରେ, ମାତ୍ର ସରକାରୀଭାବେ ଅନେକ ଭୂମି ଯେଉଁଠି ଜଙ୍ଗଲ ରହିଥିବାର ଦର୍ଶାଯାଇଛି, ତାହା ବୃକ୍ଷଶୂନ୍ୟ ହୋଇ ସମ୍ପୂର୍ଣ୍ଣ ପଦା ହୋଇଗଲାଣି। ରିଜର୍ଭ ଜଙ୍ଗଲ ଲେଖାଥିବା ବୋର୍ଡ ଟଙ୍ଗା ହୋଇଥିବା ଅନେକ ଅଞ୍ଚଳରେ ଗୋଟିଏ ହେଲେ ଗଛ ଦେଖାଯାଉନାହିଁ। ଏପରି ଚିତ୍ର ଏବେ ଦେଖିବା ସମ୍ଭବ ହେଲାଣି। ହିମାଳୟ ପର୍ବତମାଳାର ପାଦଦେଶର କୁମାୟୁଁ ଓ ଗରୱାଲ ଅଞ୍ଚଳ ସମ୍ପୂର୍ଣ୍ଣରୂପେ ବୃକ୍ଷଶୂନ୍ୟ ହେବା ଦ୍ୱାରା ନଦୀ ଶଯ୍ୟାରେ ଅତିମାତ୍ରାରେ ପଟୁମାଟି ଜମି ବନ୍ୟା ଦେଖାଦେବା ଅବସ୍ଥା ସୃଷ୍ଟି ହେଲାଣି। ଏଥିପାଇଁ ପ୍ରତିବର୍ଷ ଉତ୍ତର ପ୍ରଦେଶ ଓ ବିହାରର ବହୁ ଅଞ୍ଚଳ ବନ୍ୟା ପ୍ଲାବିତ ହେଉଛି। ଲକ୍ଷ୍ନୌ, ପାଟନା, ଦିଲ୍ଲୀ ଓ ଛୋଟ ବଡ ଏକ ଡଜନ ସହର ଅଧିକାଂଶ ସମୟରେ ବନ୍ୟାପ୍ଲାବିତ ହେଉଛି। ହଜାର ହଜାର ଏକର ଫସଲ ଧୋଇଯାଉଛି। ଏହାବ୍ୟତୀତ ପରୋକ୍ଷ ଓ ପ୍ରତ୍ୟକ୍ଷଭାବେ ବହୁ ବିପତ୍ତି ଦେଖାଦେଉଛି। ଯାହାର ଗଣନା ଠିକ୍‌ଭାବେ କରାଯାଇପାରୁନାହିଁ। ଏହି ସବୁ ସମସ୍ୟାକୁ ପ୍ରତିରୋଧ କରାଯାଇପାରିବ ଯଦି ପର୍ବତାଞ୍ଚଳର ଜଙ୍ଗଲର ଉଚିତ ସୁରକ୍ଷା ପ୍ରଦାନ କରାଯିବ।

ଏଥିପାଇଁ ତତ୍‌କ୍ଷଣାତ କୌଣସି ପ୍ରତିଷେଧକ ବ୍ୟବସ୍ଥା ଗ୍ରହଣ କରାଯାଇପାରିବ ନାହିଁ। ଯେ ପର୍ଯ୍ୟନ୍ତ ପର୍ବତାଞ୍ଚଳକୁ ବୃକ୍ଷ ଦ୍ୱାରା ଆଚ୍ଛାଦିତ କରାନଯିବ, ସେପର୍ଯ୍ୟନ୍ତ ବନ୍ୟା ଏକ ବିପତ୍ତିରୂପେ ପ୍ରତିବର୍ଷ ଦେଖାଦେବ, ଏଥିରେ ସନ୍ଦେହ ନାହିଁ। ବନ୍ୟା ପ୍ରତିରୋଧ ପାଇଁ ଯେଉଁ କୋଟିକୋଟି ଟଙ୍କା ଖର୍ଚ୍ଚ ହେଉଛି, ତାହା କାର୍ଯ୍ୟକାରୀ ହେବ ଯଦି ପର୍ବତ ଉପତ୍ୟକାରେ ପୁନଃରୋପଣ କରାଯାଏ। ତେଣୁ ପ୍ରଥମେ ବୃକ୍ଷରୋପଣ ପାଇଁ ଅର୍ଥବରାଦ ହେବା ଦରକାର। ସୌଭାଗ୍ୟବଶତଃ ହିମାଳୟ ଅଞ୍ଚଳର ମାଟି ଉର୍ବର ଓ

ଗଭୀର ଏବଂ ଏଠାରେ ନୂତନ ବୃକ୍ଷରୋପଣ କରାଯାଇପାରିବ। ଏହି ଅବସ୍ଥା ପଶ୍ଚିମଘାଟ ଅଞ୍ଚଳରେ ଅତି ଖରାପ। ଏଠାକାର ମାଟି ପତଳା ଓ ପଥୁରିଆ। ଏହା ଶହ ଶହ ବର୍ଷ ଧରି କେବଳ ଗଛର ଚେରଦ୍ୱାରା ବାନ୍ଧି ହୋଇ ରହିଛି। ଥରେ ଏହା ନଷ୍ଟ ହେଲେ ପଶ୍ଚିମଘାଟ ପର୍ବତମାଳାର କୌଣସି ଅଞ୍ଚଳରେ ବୃକ୍ଷରୋପଣ କରାଯାଇପାରିବ ନାହିଁ। କାରଣ ଦୁର୍ବଳ, ପତଳା ମାଟି ଶୀଘ୍ର ଧୋଇ ହୋଇଯାଏ। ଆମ ଦେଶର ପ୍ରାୟ ସବୁଆଡେ ପର୍ବତକତରେ ଥିବା ସୁରକ୍ଷାପ୍ରଦାନକାରୀ ଜଙ୍ଗଲ ହୁଏତ ନଷ୍ଟ ହୋଇଗଲାଣି କିମ୍ବା ନଷ୍ଟ ହେବା ଅବସ୍ଥାରେ ରହିଛି। ଆମେ ଜାଣୁ ଯେ ଯଦି ଗୋଟିଏ ଜଙ୍ଗଲ ସମ୍ପଦର ଶତକଡା 40 ଭାଗ ନଷ୍ଟ ହୋଇଯାଏ, ତେବେ ଏହା ଉପକାରୀ ହୁଏ ନାହିଁ ଓ ବେଶୀଦିନ ମୃତ୍ତିକାକୁ ସଂରକ୍ଷଣ କରିପାରେ ନାହିଁ।

ଆମର ଜଙ୍ଗଲ ଅଞ୍ଚଳର ଆକାର ଓ ଅବସ୍ଥାର ଅବନତି ସହିତ ଜାଣିଶୁଣି ଆମ ଦେଶକୁ ଓ ଆମ ପୃଥିବୀକୁ ଆମେ ଦରିଦ୍ର କରିବାକୁ ଯାଉଛୁ ବୋଲି ବୋଲିବାକୁ ହେବ। ଉପକୃତ ହେଉଥିବା ବ୍ୟକ୍ତିଭାବେ ଆମେ ସବୁ ଯେ ଏ ବିଷୟରେ ଗଭୀରଭାବେ ଚିନ୍ତାକରିବା ତାହାନୁହେଁ, ଏହାର ମୁଖ୍ୟ ପୃଷ୍ଠପୋଷକ ରୂପେ ଜଙ୍ଗଲରୁ ପାଉଥିବା ସମ୍ପଦକୁ ଆମେ ରକ୍ଷା କରିବାର ଦାୟିତ୍ୱ ନେବା ଉଚିତ।

# ନଦୀସମୂହ

## ୧

### *ସେମାନଙ୍କର ବହୁମୁଖୀ ଉପକାର*

ଗୋଟିଏ ନଦୀକୁ ଜାଣିବାର ପ୍ରକୃଷ୍ଟ ପନ୍ଥା ହେଉଛି ଏକ ଛୋଟ ଉଡାଜାହାଜରେ ବସି ଏହାକୁ ଅନୁସରଣ କରିବା। ଏହି ସବୁ ତଥ୍ୟ ଭୂଗୋଳ ବହିର ପୃଷ୍ଠା ମଣ୍ଡନ କରିବା ସହିତ ତିନି ପର୍ଯ୍ୟାୟ ବିଶିଷ୍ଟ ହେବ। ତୁମେ ଦେଖିପାରିବ ଯେ ଛୋଟ ଛୋଟ ଝରଣା ବା ଜଳଧାର ଦୁଇପର୍ବତ ମଝିରେ ପ୍ରବାହିତ ହୋଇ ତଳକୁ ବୋହିଆସୁଛି। ତରଳୁଥିବା ବରଫ କିମ୍ବା ବର୍ଷାପାଣି ହୁଏତ ଏହାର ଜଳଯୋଗାଣକାରୀ। ଝରଣା ଜଳରେ ସୂର୍ଯ୍ୟରଶ୍ମି ପଡି ଚିକ୍‌ଚିକ୍ କରୁଥିବାର ଦୃଶ୍ୟ ଯେ କେହି ଦେଖିପାରିବ। ବହୁ ଛୋଟ ଜଳଧାରା ମିଶି ଏକ ବଡ ଝରଣା ସୃଷ୍ଟି କରିଥାନ୍ତି ଓ ନିମ୍ନ ଉପତ୍ୟକାରେ ଏହି ଜଳଧାରାଗୁଡ଼ିକ ମିଶି ଗୋଟିଏ ନଦୀ ସୃଷ୍ଟି କରିଥିବାର ଦେଖାଯାଏ। ଯଦି ଏହି ନଦୀ ବହିଯାଉଥିବା ପଥରେ ଅନୁସରଣ କରାଯାଏ, ତେବେ ଦେଖାଯିବ ଯେ କେତେକ କ୍ଷେତ୍ରରେ ଏହା ପଛକୁ ଚାଲିଆସି ବୃତ୍ତାକାର 'ଲୁପ୍' ତିଆରି କରିଛି ତ କେଉଁସ୍ଥାନରେ ଏହା ବକ୍ରପଥ ସୃଷ୍ଟି କରିଛି ଏବଂ କେତେକ ସ୍ଥାନରେ ଏହା ଅତ୍ୟଧିକ ଚଉଡା ହୋଇ ଜଳଧାରାର ଏକ ବିସ୍ତୀର୍ଣ୍ଣ ସମତଳ ଅଞ୍ଚଳ ସୃଷ୍ଟି କରିଛି। ଯେଉଁଅଞ୍ଚଳର ଭୂଭାଗ ଏକ ନଦୀ ଅବବାହିକାରେ ପରିବର୍ତ୍ତିତ ହୋଇଛି, କେତେକ ସ୍ଥାନରେ ଯେଉଁଠି ସ୍ଥଳଭାଗ ଅତି ତୀଖ, ସେଠାରେ ପ୍ରବଳ ବେଗରେ ଏହା ଧାଇଁଛି। ମାତ୍ର, ଏହା ବେଗଶାଳୀ ହେଉ ବା ଧୀର ହେଉ, ସିଧାସଳଖ ଗତିକରୁ କିମ୍ବା ବକ୍ରପଥରେ ଗତିକରୁ, ଏହା ଭିତରେ ଗୋଟିଏ ଆଭିମୁଖ୍ୟ ରହିଛି। ତାହା ହେଉଛି, ସାଗର ସହିତ ମିଶିବା।

ତେଣୁ ଏହାର ପ୍ରତ୍ୟେକ ଶଯ୍ୟା ସର୍ବଦା ନିମ୍ନ ଅଞ୍ଚଳକୁ ଧାବମାନ ହେଉଛି, ଏହା ହୁଏତ ଏକ ଇଞ୍ଚ ବି ହୋଇପାରେ। ଯେଉଁଠାରେ ଭୂମି ଓସାରିଆ, ସେଠାରେ ହୁଏତ୍ ଉଚ୍ଚଖାଲ ଖୁବ୍ କମ୍। ଏଠାରେ ଏହା ବିସ୍ତାରିତ, ଅଗଭୀର ଓ ଧୀର ହୋଇଥାଏ। ଯେଉଁଠାରେ ଭୂଭାଗ ଅସମାନ, ଏହା ଛୋଟ ଛୋଟ ବୁଲାଣି ସୃଷ୍ଟି କରିଥାଏ ଏବଂ ସର୍ବଦା ଏକ ନିମ୍ନ ଅଞ୍ଚଳ ଅନୁସନ୍ଧାନରେ ଥାଏ, ଯାହାକି ମଧ୍ୟ ଏହାକୁ ସମୁଦ୍ରର ନିକଟକୁ ବାଟ ଦେଖାଇନେବ। ଯେଉଁଠାରେ ନଦୀ ଚତୁଃପାର୍ଶ୍ୱରେ ପାହାଡ ପର୍ବତ ପରିବେଷ୍ଟିତ ହୋଇଥାଏ, ସେଠାରେ ଏହା ଏକ ସମତଳ ଗୋଲାକାର ଅଞ୍ଚଳରେ ପହଁଚେ ଓ ହ୍ରଦରେ ରୂପାନ୍ତରିତ ହୋଇଯାଏ। ଯଦି ଏହି ହ୍ରଦ ଅତ୍ୟୁଚ୍ଚ ଅଞ୍ଚଳରେ ଥାଏ, ତେବେ ହୁଏତ ଏହା ପର୍ବତ ମଧ୍ୟରେ ଏକ ବାହାରିଯିବା ବାଟ ଖୋଜି ଏକ ଜଳପ୍ରପାତ ସୃଷ୍ଟି କରେ ଯାହାକି ସମୁଦ୍ର ଅନୁସନ୍ଧାନରେ ଗତିକରିଥାଏ।

ଉଡାଜାହାଜ ଉପରୁ ସ୍ଥଳଭାଗ ଉପରେ ବହିଯାଉଥିବା ଏହି ନଦୀ ଗୁଡିକୁ ଦେଖିଲେ ଏଗୁଡିକ ପୁରାତନ ରାସ୍ତାପରି ମନେହୁଏ, ଯାହାକି ବିସ୍ତୀର୍ଣ୍ଣ ଭୂଖଣ୍ଡର ବାହ୍ୟ ସୀମାରେଖା କଡେ କଡେ ପ୍ରବାହିତ ହୋଇଥାଏ। ବସ୍ତୁତଃ ଏହା ମିଥ୍ୟା ନୁହେଁ। ନଦୀମାନେ ହେଉଛନ୍ତି ପୁରାତନ ରାଜପଥ ସଦୃଶ, ବିଶେଷ କରି ଯେଉଁଠାରେ ରାସ୍ତାନିର୍ମାଣର ଆବଶ୍ୟକତା ଉପରେ ବିଶେଷ ସଚେତନତା ସୃଷ୍ଟି ହୋଇନାହିଁ। ବିଗତ ଶତାବ୍ଦୀର ଅନ୍ତର୍ଦ୍ଦେଶୀୟ ଅଭିଯାତ୍ରୀଦଳ, ଅନ୍ଧକାରାଚ୍ଛନ୍ନ ଆଫ୍ରିକା ମହାଦେଶ ଯାତ୍ରା କରିଥିଲେ ଏବଂ ଅଧିକାଂଶ ସମୟରେ ଏକ ଡଙ୍ଗା ବ୍ୟବହାର କରିଥିଲେ। ଅଧିକାଂଶ କମ ପର୍ବତାଚ୍ଛନ୍ନ ଦେଶରେ ନଦୀ ହିଁ ଏକମାତ୍ର ମୁଖ୍ୟ ରାଜପଥ ଯେଉଁବାଟେ ଲୋକେ ଡଙ୍ଗା ସାହାଯ୍ୟରେ ଯାତାୟତ କରିବା ସହିତ ମାଲ ପରିବହନ କରିଥାନ୍ତି। ନଦୀ ପଥରେ ଅତି ସହଜରେ ବଡ ବଡ ପୃଥୁଳ ପଦାର୍ଥ ପରିବହନ କରାଯାଇଥାଏ। ମାଲ ପରିବହନକାରୀ ବଡ ଓ ଓସାରିଆ ନୌକା ସାହାଯ୍ୟରେ ଅତ୍ୟଧିକ ଓଜନିଆ ପଦାର୍ଥକୁ ଧୀରେ ସୁସ୍ଥେ ସହଜରେ ଅଣାଯାଇପାରେ। ରାସ୍ତାପରି ନଦୀ ନିର୍ମାଣ ଓ ପରିଚାଳନା କରିବାପାଇଁ ଆଦୌ ପ୍ରଚୁର ଅର୍ଥ ଖର୍ଚ୍ଚ ହୁଏ ନାହିଁ। ଏହା ମାଗଣାଭାବେ ସବୁଦିନେ ସେହିପରି ରହିଥାଏ।

ଉତ୍ତର ଗାଙ୍ଗେୟ ସମତଳ ଅଞ୍ଚଳର ବହୁ ବରଫ ସଞ୍ଚାଳିତ ନଦୀ ସବୁ ସମୟରେ ଯାତ୍ରୀ ଓ ମାଲ ପରିବହନ ପାଇଁ ବ୍ୟବହୃତ ହୁଏ। ବର୍ଷ ସାରା ପ୍ରବାହିତ ହେଉଥିବା ଧୀର ଓ ପ୍ରଶସ୍ତ ଜଳରାଶି ଛୋଟ ଇଞ୍ଚ ଓ

ବିରାଟକାୟ ନୌକା ପାଇଁ ଉତ୍ତମ। ବୋଟ ସାହାଯ୍ୟରେ ଚା, ଝୋଟ, ଖାଦ୍ୟଶସ୍ୟ, ମହମ, ସିମେଣ୍ଟ ଓ ସାର ପରିବହନ କରିବା ଏକ ସବୁଦିନିଆ ପ୍ରକ୍ରିୟା। ବ୍ରହ୍ମପୁତ୍ର ନଦୀ ମଧ୍ୟ ପରିବହନ ପାଇଁ ଏକ ଉପଯୁକ୍ତ ନଦୀ। ଏହା ଅତି ପ୍ରଶସ୍ତ ହୋଇ ଦେଶରେ ପ୍ରବାହିତ ହେଉଥିବାରୁ ଏହାର ଜଳ ପ୍ରଶସ୍ତ ଓ ଧୀର। ଏହା ଏପରି ସବୁ ଅଞ୍ଚଳ ମଧ୍ୟ ଦେଇ ପ୍ରବାହିତ ହୋଇଛି ଯେଉଁଠାରେ ଚା, ଝୋଟ, ଖାଦ୍ୟଶସ୍ୟ ଓ ସିମେଣ୍ଟ ଭଳି ପୃଥୁଳାକାୟ ପଦାର୍ଥ ଉତ୍ପାଦିତ ହୋଇଥାଏ। ଏହା ଯେହେତୁ ହିମାଳୟରୁ ତରଳୁଥିବା ବରଫ ଉପରେ ନିର୍ଭର କରିଥାଏ, ତେଣୁ କେବେ ଏହା ଶୁଖିଯାଏ ନାହିଁ।

ଭାରତୀୟ ଉପଦ୍ୱୀପର ଅଧିକାଂଶ ନଦୀ ପ୍ରାୟ ବର୍ଷାଜଳ ଉପରେ ନିର୍ଭରଶୀଳ ଏବଂ ଗ୍ରୀଷ୍ମ ଋତୁରେ ଏମାନେ ଶୁଖିଯାଆନ୍ତି। ନର୍ମଦାଭଳି କେତେକ ନଦୀ ବ୍ୟତୀତ ଏହି ଶ୍ରେଣୀର ନଦୀରେ ନୌକା ଚଳାଇବା ସେଥିପାଇଁ ସବୁଦିନେ ସମ୍ଭବ ହୁଏନାହିଁ।

ଦୂର ଦାକ୍ଷିଣାତ୍ୟର କେରଳ ଭଳି ରାଜ୍ୟ ତାର ଜଳସମ୍ପଦର ପୂର୍ଣ୍ଣ ବିନିଯୋଗ କରିଥାଏ। ବହୁ କେନାଲ ରାଜ୍ୟର ବିଭିନ୍ନ ଅଞ୍ଚଳକୁ ସଂଯୋଗ କରୁଥିବାରୁ ଏକ କ୍ଷୁଦ୍ର ନୌକାରେ ବହୁ ଦୂର ଅଞ୍ଚଳକୁ ଅତିକ୍ରମ କରିହୁଏ। ଏଥିରେ ଯାତ୍ରା ବସଯାତ୍ରାଠାରୁ ଯେ କେବଳ ଶସ୍ତା, ତାହା ନୁହେଁ, ବରଂ ଏହା ଶାନ୍ତି, ଆରାମଦାୟକ, ସୁନ୍ଦର ଯାହାକି ଅନ୍ୟ ଯାନ ଦ୍ୱାରା ଯାତ୍ରା ସମୟରେ ପ୍ରାୟ ମିଳେ ନାହିଁ। ନଦୀଦ୍ୱାରା ମିଳୁଥିବା ଅନ୍ୟ ଏକ ଉପକାର ହେଲା ବଡ଼ ବଡ଼ କାଠ ଗଣ୍ଡି ଓ କାଠ ସହଜରେ ନଦୀ ଗର୍ଭରେ ନିମ୍ନ ଅଞ୍ଚଳରେ ଥିବା ସଂଗ୍ରହ ସ୍ଥାନ ଯାଏଁ ଭସାଇ ନିଆଯାଏ। ବର୍ତ୍ତମାନ ସୁଦ୍ଧା ପୃଥିବୀର ଅଧିକାଂଶ ଅନୁକୂଳ କ୍ଷେତ୍ରଥିବା ଅଞ୍ଚଳରେ ଏହି ପଦ୍ଧତି ବ୍ୟବହୃତ ହେଉଛି। ଏହି ପଦ୍ଧତିରେ କାଶ୍ମୀର ଉପତ୍ୟକାରୁ କଟାଯାଇଥିବା କାଠ ପଞ୍ଜାବର ବିଭିନ୍ନ ସହରଯାଏଁ ଅଣାଯାଇପାରୁଛି। ବିସ୍ତୃତ ଜଳରାଶି ଏହି ପ୍ରକ୍ରିୟାରେ ସାହାଯ୍ୟ କରି ଅନ୍ୟ ପଦ୍ଧତି ଦ୍ୱାରା ହେଉଥିବା ପ୍ରଚୁର ଖର୍ଚ୍ଚ ବଞ୍ଚାଇବା ସହିତ ପର୍ବତ କଡ଼େ କଡ଼େ ଏଥିପାଇଁ ନିର୍ମାଣ କରାଯାଉଥିବା ରାସ୍ତା ନିର୍ମାଣକୁ ଏଡ଼ାଇଦେଇ ତଦ୍‌ଜନିତ ପରିବେଶଜନିତ କ୍ଷତିକୁ ରୋକିପାରିଛି।

ମୋଟରଯାନର ବ୍ୟବହାର ପରେ ଓ ବର୍ତ୍ତମାନ ଗତିଶୀଳତାକୁ ଗୁରୁତ୍ୱ ଦିଆଯାଉଥିବାରୁ ଆମର ନଦୀ ପରିବହନ ଅବସ୍ଥା ଦ୍ୱିତୀୟ ଶ୍ରେଣୀକୁ ଖସି ଆସିଛି। ସେ ଯାହା ହେଲେ ବି ବର୍ତ୍ତମାନର ପେଟ୍ରୋଲ ନିଅଣ୍ଟ ସମୟରେ

ଆମେ ଅନ୍ୟ କେତେକ ଦେଶ ଭଳି ଏବେ ନଦୀ ପଥର ଅବମାନନା କରିବା ଠିକ ଭାବେ ବୁଝିଲୁଣି ଏବଂ ଖୁସିର ବିଷୟ ହେଉଛି ଯେ ନଦୀପଥକୁ ପୁଣି ଗତିଶୀଳ କରିବାପାଇଁ ଏବେ କିଛି ଅର୍ଥ ବ୍ୟବସ୍ଥା କରିବାର ଯୋଜନା ହେଲାଣି। ମୋଟାମୋଟି ଭାବେ ହିସାବ କରି ଦେଖାଯାଇଛି ଯେ ଆମର ନଦୀ ସମ୍ପଦର ମୋଟ ଏକ ପଞ୍ଚମାଂଶ ଜଳ ନଦୀ ପରିବହନ ଉପଯୋଗୀ। ଏହି ପ୍ରଚ୍ଛନ୍ନ ସମ୍ପଦର ସମ୍ପୂର୍ଣ୍ଣ ସଦୁପଯୋଗ ବର୍ତ୍ତମାନ ଜରୁରୀ ହେଲାଣି। ଏକ ସୁନିୟନ୍ତ୍ରିତ ଓ ସୁପରିଚାଳିତ ଜଳପରିବହନ ବ୍ୟବସ୍ଥା ଅତି ସହଜରେ ପେଟ୍ରୋଲ ଡ଼ିଜେଲ ସମସ୍ୟା ନିରାକରଣ ସହିତ ରାସ୍ତା ପରିବହନଜନିତ ଚାପ, ରାସ୍ତା ନିର୍ମାଣ ଓ ରାସ୍ତା ସଂରକ୍ଷଣ ବ୍ୟବସ୍ଥାକୁ କମାଇପାରିବ। ଭାସମାନ ନୌକା ଓ ବଡ଼ ଡ଼ଙ୍ଗା ମଧ ପବନ ଓ ଜଳର ଗତିରେ ଚାଲିପାରିବ। ଆମର ଈଶ୍ୱରଦତ୍ତ ସମ୍ପଦକୁ ଯଦି ବିନିଯୋଗ କରିବାର ପୂର୍ଣ୍ଣ ଇଚ୍ଛା ଥାଏ, ତେବେ ଏହା ସୁସ୍ପଷ୍ଟ ଯେ ଆମକୁ ·ରାସ୍ତାରେ ଯାନବାହାନ ଚଳାଚଳକୁ ନିୟନ୍ତ୍ରିତ କରିବାକୁ ଜଳ ପରିବହନ ଅବସ୍ଥାକୁ ଅଧିକ ସୁପରିଚାଳିତ ଓ ନିୟନ୍ତ୍ରିତ କରିବାକୁ ହେବ।

କୃଷିପାଇଁ ନଦୀକୂଳ ଅଞ୍ଚଳ ହିଁ ଅଧିକ ଉର୍ବର କ୍ଷେତ୍ର। ଆମେ ଯାହା ଜାଣୁ ନଦୀ ସାଧାରଣତଃ ଅଙ୍କାବଙ୍କା ହୋଇ ଉପତ୍ୟକା ମଧ ଦେଇ ପ୍ରବାହିତ ହୋଇଥାଏ। ସାଧାରଣତଃ ପର୍ବତାଞ୍ଚଳରୁ ଏହା ବହୁ ଉପରମାଟି ଧୋଇ ଆଣିଥାଏ ଏବଂ ଏହା ଯେତେବେଳେ ଏକ ବିସ୍ତୀର୍ଣ୍ଣ ସମତଳ ଅଞ୍ଚଳରେ ପହଁଞ୍ଚେ ଓ ଏହାର ବେଗ ଧୀର ହୋଇଯାଏ, ସେତେବେଳେ ଏହି ପଟୁମାଟି ତଳକୁ ବସିଯାଏ। କେତେକ ଋତୁରେ ନଦୀରେ ପ୍ରବଳ ଜଳ ଆସି କୂଳ ଲଘି ମାଡ଼ିଯାଏ। ସେତେବେଳେ ଏହି ପଟୁମାଟି ନଦୀ ଶଯ୍ୟାରେ ଜମା ନ ହୋଇ ନଦୀକୂଳ ଜମି ଉପରେ ବସିଯାଏ। ଏହାର ଏକ ଜଣାଶୁଣା ଉଦାହରଣ ହେଉଛି ନୀଳନଦୀର ତ୍ରିକୋଣଭୂମି, ଯାହାକି ନୀଳନଦୀ ଦ୍ୱାରା ଆସିଥିବା ବହୁ ପଟୁମାଟି ଦ୍ୱାରା ଉର୍ବର ଅଞ୍ଚଳରେ ପରିଣତ ହୋଇଥାଏ। ହିମାଳୟ ପର୍ବତାଞ୍ଚଳରୁ ଆସୁଥିବା ଉର୍ବର ପଟୁମାଟି ଦ୍ୱାରା ମଧ ଗାଙ୍ଗେୟ ସମତଳ ଭୂମି ଏହିପରି ଭାବେ ଉର୍ବର କ୍ଷେତ୍ରରେ ପରିଣତ ହୋଇଛି।

ଯେଉଁ ଚାଷୀ ନିକଟରେ ନଦୀଟିଏ ପ୍ରବାହିତ ହେଉଥାଏ ସେ ପ୍ରକୃତରେ ଭାଗ୍ୟବାନ। ତାକୁ ମୌସୁମୀ ବାୟୁ ଉପରେ ନିର୍ଭର କରିବାକୁ ପଡ଼େ ନାହିଁ ଏବଂ ଗୋଟିଏ ଶସ୍ୟ ସ୍ଥାନରେ ସେ ଦୁଇଟି ଶସ୍ୟ ଉତ୍ପାଦନ କରିପାରେ।

ଅବଶ୍ୟ ସେ ଯଦି ଏକ ବିରାଟ ଅଞ୍ଚଳକୁ ଜଳସେଚିତ କରିବାକୁ ଇଚ୍ଛା କରେ, ତେବେ ତାକୁ କେନାଲ ଓ ଉପକେନାଲ ଖୋଳାଇବାକୁ ହୁଏ। ଅଧିକାଂଶ ସରକାରୀ ଯୋଜନା ବୃହତ୍ ଏବଂ ବିସ୍ତୃତ ଏବଂ ଚାଷୀମାନେ ଯେପରି ନଦୀ ଜଳକୁ ବ୍ୟବହାର କରିପାରିବେ, ଏହା ସେ ଦିଗରେ ସଚେତନ। ସରକାର ବହୁ ଲମ୍ବା ଓ ଓସାରିଆ କେନାଲ ଖୋଳି ନଦୀଜଳକୁ ବହୁ ଜଳକ୍ଳିଷ୍ଟ ଅଞ୍ଚଳକୁ ନେବାର ବ୍ୟବସ୍ଥା କରିଛନ୍ତି। ତେଣୁ ଦେଶର ହଜାର ହଜାର ଏକର ଜମି ଜଳସେଚିତ ହୋଇପାରୁଛି, ବହୁ ଶୁଖିଲା ଓ ଅର୍ଦ୍ଧମରୁ ଅଞ୍ଚଳ ସୁନ୍ଦର କୃଷିକ୍ଷେତ୍ରରେ ପରିଣତ ହୋଇଛି। କେନାଲ ଖୋଳାଇବା ଅର୍ଥ ଚାଷୀମାନଙ୍କଠାରୁ ଜଳବ୍ୟବହାର ପାଇଁ ଶୁଳ୍କ ଆଦାୟ କରିବା। ଠିକ୍ ଭାବେ ବ୍ୟବହାର କଲେ ଗୋଟିଏ ନଦୀ ଯେ କେବଳ ଏହାର କୂଳ ଅଞ୍ଚଳ ଜମିକୁ ଉନ୍ନତ ସବୁଜ କ୍ଷେତ୍ରରେ ପରିଣତ କରିବ, ତାହା ନୁହେଁ, ଏହା ଦେଶର ବିସ୍ତୀର୍ଣ୍ଣ ଅଞ୍ଚଳ ଦ୍ୱାରା ବ୍ୟବହୃତ ହୋଇ ପାରିବ। ଭାଗ ଭାଗ ହେବା ପୂର୍ବରୁ ପଞ୍ଜାବର (*ପଞ୍ଜ ଅର୍ଥ* ପାଞ୍ଚ ଓ *ଆବ ଅର୍ଥ* ଜଳ) ଉନ୍ନତି ମୂଳରେ ମୁଖ୍ୟତଃ ଏହାର ନଦୀଗୁଡ଼ିକ ହିଁ ରହିଥିଲା।

ଏହା ବୁଝିବା ସହଜ ଯେ ଏକ ବିସ୍ତୀର୍ଣ୍ଣ ଜଳଭାଗ ଗତିକରିବା ବେଳେ ପ୍ରଖର ବେଗଶାଳୀ ହୋଇ ଏକ କ୍ଷୁଦ୍ର ଜଳପ୍ରପାତରେ ରୂପାନ୍ତରିତ ହୋଇ ହୁଏତ ଅଳ୍ପ ଶକ୍ତି ଉତ୍ପାଦନ କରିପାରେ ଯାହାକି ଏକ ଛୋଟ କାରଖାନା ଚଳାଇପାରେ। ବଡ଼ ଜଳପ୍ରପାତ ବହୁ ଶକ୍ତି ଉତ୍ପାଦନ କରିବାକୁ ସକ୍ଷମ ଯାହାକି ବୋଧହୁଏ ସାରା ଜିଲ୍ଲାକୁ ଶକ୍ତି ଯୋଗାଇପାରେ। ଜଳପ୍ରପାତ ପାଦ ଦେଶରେ ଏକ ଗୋଲାକାର ଚକ୍ର ପ୍ରତିଷ୍ଠା କରାଯାଇଥାଏ ଯାହାକି ସବୁବେଳେ ବୁଲି ଶକ୍ତି ଉତ୍ପାଦନ କରିଥାଏ। ଜଳପ୍ରପାତଟି ଯେତେ ବଡ଼ ହୁଏ ଏହି ଚକା ସେତେ ଜୋରରେ ବୁଲେ ଏବଂ ସେତେ ଅଧିକ ପରିମାଣର ଶକ୍ତି ବା ବିଦ୍ୟୁତଶକ୍ତି ଉତ୍ପାଦିତ ହୁଏ। ଯୋଗ ଓ ଶିବ ସମୁଦ୍ରମ୍ ପରି ପ୍ରସିଦ୍ଧ ଜଳପ୍ରପାତ ସେହି ଅଞ୍ଚଳକୁ ଶକ୍ତି ଯୋଗାଇଥାଏ। କିନ୍ତୁ ଯଦି ସମଗ୍ର ଦେଶକୁ ବିଦ୍ୟୁତଶକ୍ତି ଯୋଗାଇବା କଥା ଚିନ୍ତା କରାଯାଏ ଏବଂ ଏଥିପାଇଁ ଅଧିକ ପ୍ରାକୃତିକ ଜଳପ୍ରପାତ ନ ଥାଏ, ତେବେ କୃତ୍ରିମ ପ୍ରପାତ ସୃଷ୍ଟି କରିବା ଆବଶ୍ୟକ ହୁଏ।

ଏଥିପାଇଁ ନଦୀରେ ଏକ ବନ୍ଧ ତିଆରି କରାଯାଏ। ଏଠାରେ ଜଳ ସଂଗୃହୀତ ହୁଏ ଓ ନଦୀବନ୍ଧ ଉପରଯାଏଁ ବିସ୍ତୃତ ହୋଇ ରହେ। ଯାହାକି

ନଦୀ ବନ୍ଧ ତଳେ ଖଞ୍ଜା ଯାଇଥିବା ଚକ୍ରକୁ ବୁଲାଇବାକୁ ସକ୍ଷମ ହୁଏ। ଏହି ଜଳ ନିମ୍ନ ଅଞ୍ଚଳର ଜମିକୁ ଜଳସେଚିତ କରିବାକୁ କେନାଲ ଆକାରରେ ମଧ୍ୟ ଯୋଗାଇ ଦିଆଯାଏ। ଅଧିକାଂଶ ନଦୀବନ୍ଧ ବହୁମୁଖୀ। ଏମାନେ ବିଦ୍ୟୁତ ଶକ୍ତି ଉତ୍ପାଦନ କରିବା ସଙ୍ଗେ ସଙ୍ଗେ ଜଳ ମଧ୍ୟ ଯୋଗାଇଥାନ୍ତି। ଏହା ହିଁ ବନ୍ଧ ତିଆରିର ମୂଳ ଲକ୍ଷ୍ୟ। ପର୍ବତାଞ୍ଚଳର ଉପତ୍ୟକା ହିଁ ଏହିପରି ଜଳବିଦ୍ୟୁତ ଓ ଜଳସେଚନ ପାଇଁ ବ୍ୟବହୃତ ନଦୀବନ୍ଧ ତିଆରି କରିବାର ପ୍ରକୃଷ୍ଟ କ୍ଷେତ୍ର, ଯେଉଁଠାରେ କି ନଦୀ ଉଚ୍ଚ, ଆବଡ଼ାଖାବଡ଼ା ଅଞ୍ଚଳ ଦେଇ ପ୍ରବାହିତ ହୋଇଥାଏ। ଏଠାରେ ନଦୀ ସାଧାରଣତଃ ଅଣ ଓସାରିଆ ହୋଇଥାଏ ଯାହାକି ବନ୍ଧ ନିର୍ମାଣ ପାଇଁ ସୁବିଧାଜନକ। ଏହାର ତିନିପାଖ ଅଞ୍ଚଳ ପର୍ବତମାଳା ଦ୍ୱାରା ଆବୃତ୍ତ ରହିଥାଏ, ଯାହାକି ଏହାକୁ ଏକ ଗଭୀର ପାର୍ବତ୍ୟ ହ୍ରଦରେ ପରିଣତ କରିପାରେ। ଯଦି ଏହାକୁ ଏକ ଉଚ୍ଚ ବନ୍ଧ ଦ୍ୱାରା ବନ୍ଧାଯାଏ, ଜଳସ୍ତର ଅଧିକ ଉଚ୍ଚ ହୋଇ ଅଧିକ ଚାପ ସୃଷ୍ଟି କରିଥାଏ। ଦୁର୍ଭାଗ୍ୟବଶତଃ ଏହି ସବୁ ଅଞ୍ଚଳରେ ପ୍ରାୟ ଘଞ୍ଚ ଜଙ୍ଗଲ ପୂର୍ଣ୍ଣ ହୋଇ ରହିଥାଏ। ଏଠାରେ ବହୁ ପୁରାତନ ଓ ମୂଲ୍ୟବାନ ଗଛ ସହିତ ବହୁ ସଂଖ୍ୟାରେ ବଣ୍ୟପ୍ରାଣୀ ରହିଥାନ୍ତି।

ସେ ଯାହା ହେଉନା କାହିଁକି, ଯେଉଁଠାରେ ନିରୂପିତ ସ୍ଥାନକୁ ସତର୍କତାର ସହିତ ସ୍ଥିର କରାଯାଏ ଏବଂ ଯେଉଁଠାରେ ଯୋଜନାର ରୂପରେଖ ପ୍ରସ୍ତୁତିବେଳେ ବିଭିନ୍ନ କାର୍ଯ୍ୟକ୍ରମ ପ୍ରତି ଉଚିତ ଧ୍ୟାନ ଦିଆଯାଇ ସତର୍କତା ଅବଲମ୍ବନ କରାଯାଏ, ସେଠାରେ ଭଲ ନଦୀବନ୍ଧ ନିର୍ମିତ ହୋଇ ବହୁ ସୁବିଧା ଯୋଗାଇଦିଏ। ଏହି ପ୍ରକାର ଏକ ବହୁମୁଖୀ ଫଳପ୍ରଦ ଯୋଜନା ହେଉଛି ଆମ ଦେଶରେ ବହୁଦିନରୁ ପ୍ରଥମ ଅବସ୍ଥାରେ ନିର୍ମିତ ହୋଇଥିବା କେରଳର ପେରିୟର ନଦୀବନ୍ଧ। ଏଠାରେ ନଦୀବନ୍ଧ ଯୋଜନାରେ ବୁଡ଼ିଯାଇଥିବା ଜଙ୍ଗଲ ସମ୍ପଦ ପରିବର୍ତ୍ତେ ନଦୀବନ୍ଧ କଡ଼ର ବିସ୍ତୀର୍ଣ୍ଣ ଅଞ୍ଚଳକୁ ଏକ ବଣ୍ୟଜନ୍ତୁ ଅଭୟାରଣ୍ୟରେ ପରିଣତ କରାଯାଇଛି। ଏଠାରେ ଗୟଳ, ହାତୀ, ହରିଣ ଏପରିକି ପାର୍ଶ୍ୱସ୍ଥ ପର୍ବତ ଶିଖରରୁ ବାଘ ଗର୍ଜନ ଶୁଭେ ଏବଂ ଏମାନେ ଅଧିକାଂଶ ସମୟରେ ଏହି କୃତ୍ରିମ ହ୍ରଦ କୂଳରେ ବୁଲୁଥିବାର ଦେଖାଯାଏ। ଏହି ହ୍ରଦ ପର୍ଯ୍ୟଟକଙ୍କୁ ଆକୃଷ୍ଟ କରେ, ଯେଉଁମାନେ ଏହାର ଜଳରାଶିରେ ଛୋଟ ମଟର ଲଞ୍ଚରେ ଜଳଯାତ୍ରା କରି କୂଳରେ ବୁଲୁଥିବା ବଣ୍ୟ ଜୀବଜନ୍ତୁଙ୍କୁ ଦେଖିବାର ସୁଯୋଗ ଲାଭ କରିଥାନ୍ତି। ଯେହେତୁ ଏହି ଅଞ୍ଚଳକୁ ଏକ ସଂରକ୍ଷିତ ଅଞ୍ଚଳରୂପେ

ଚିହ୍ନିତ କରାଯାଇଥାଏ, ତେଣୁ ସ୍ଥାନୀୟ ଉଦ୍ଭିଦରାଜି ଏଠାରେ ବଞ୍ଚି ରହି ବଢ଼ିଥାନ୍ତି ଏବଂ ଏହି ଜଳଭଣ୍ଡାରରେ ପଟୁମାଟି ସମସ୍ୟା ଖୁବ କମ୍ ପରିମାଣରେ ଦେଖାଯାଏ। ପ୍ରାୟ ଏକ ଶହ ବର୍ଷର କ୍ରମାଗତ ସୁସେବା ପରେ ମଧ୍ୟ ଏହି ହ୍ରଦ ଏବେ ସୁଦ୍ଧା ଏହାର କାର୍ଯ୍ୟ ସୁଚାରୁରୂପେ ପରିଚାଳନା କରିବାକୁ ସକ୍ଷମ।

ଯେ କୌଣସି ଯୋଜନା, ଯେଉଁଠାରେ ଏକ ନଦୀବନ୍ଧ ନିର୍ମାଣ କରିବାର ଆବଶ୍ୟକତା ଥାଏ, ସେଠାରେ ଏକ ବିରାଟ ଅଞ୍ଚଳ ଏହା ଦ୍ୱାରା ଆକ୍ରାନ୍ତ ହୋଇଥାଏ। ଭଲ ଫଳ ମିଳିବାକୁ ବିଶେଷ କରି ବିଦ୍ୟୁତ ଉତ୍ପାଦନ ଓ ଜଳସେଚନ ପାଇଁ ନଦୀବନ୍ଧ ନିର୍ମାଣ ବେଳେ ବନ୍ଧ ମୁହଁରେ ବହୁ ପ୍ରକାର ମାଟି କାମ ଓ ଅନ୍ୟ କାମ ହୋଇଥାଏ। ଏହି ଅଞ୍ଚଳର ସମୃଦ୍ଧି ଆଣିବା ପାଇଁ ସ୍ଥାନୀୟ ପରିବେଶର ବିଶେଷ କିଛି କ୍ଷତି ନ କରି ଏହା କରାଯାଇପାରିବ। ମାତ୍ର ଏହାର ସୁଫଳ କେବଳ ଯେ ବୈଷୟିକ କାର୍ଯ୍ୟ ଉପରେ ନିର୍ଭର କରେ, ତାହା ନୁହେଁ, ସ୍ଥାନୀୟ ଜନସାଧାରଣଙ୍କର ଦୀର୍ଘମିଆଦୀ ଉପକାର, ସର୍ବୋପରି ସ୍ଥାନୀୟ ପଲ୍ଲୀ ଅଞ୍ଚଳର ଲୋକଙ୍କ ମନରେ ଦୁଃଖ ସୃଷ୍ଟି କରିବା ଭଳି କୌଣସି କାର୍ଯ୍ୟ ନ ହେବା ବିଷୟରେ ନିଶ୍ଚିତ ହେବା ଆବଶ୍ୟକ।

ଉଦାହରଣ ସ୍ୱରୂପ ଏଠାରେ ଜଳସେଚନ ପାଇଁ ହେଉ କିମ୍ବା ଶକ୍ତି ଉତ୍ପାଦନ ପାଇଁ ବ୍ୟବହୃତ ହେଉ ନା କାହିଁକି, ସ୍ଥାନୀୟ ଚାଷୀମାନେ ଏହା ବୁଝିବା ଉଚିତ ଯେ ନୂତନ ଭାବେ ସେମାନଙ୍କୁ ମିଳୁଥିବା ଜଳ ସେମାନଙ୍କୁ ଗୋଟିଏ ପରିବର୍ତ୍ତେ ଦୁଇ ତିନୋଟି ଶସ୍ୟ ଉତ୍ପାଦନ କରିବାରେ ସାହାଯ୍ୟ କରିପାରିବ। ଏକ ନିର୍ଭରଶୀଳ ଜଳ ଯୋଗାଣ ମାଧ୍ୟମରେ ସେମାନେ ଅଧିକ ସାର ବ୍ୟବହାର କରି ଅପେକ୍ଷାକୃତ ଅଧିକ ଶସ୍ୟ ଉତ୍ପାଦନ କରିପାରିବେ। ଚାଷୀମାନେ ସେଥିପାଇଁ ଯେ କେବଳ ମାନସିକ ସ୍ତରରେ ନିଜକୁ ପ୍ରସ୍ତୁତ କରିବେ ତାହା ନୁହେଁ, ବରଂ ସେମାନେ ଯେପରି ଯଥାର୍ଥଭାବେ ସାହାଯ୍ୟ ପାଇବେ ବା ଅଧିକ ମଞ୍ଜି ଓ ସାର ସଂଗ୍ରହ କରିପାରିବେ, ତାହା ଦେଖିବା ଦରକାର। ଏଥିପାଇଁ ସେମାନେ ଋଣ ଆବଶ୍ୟକ କରନ୍ତି। କେନାଲ ପ୍ରସ୍ତୁତ ହେବା ପୂର୍ବରୁ ସେମାନଙ୍କ ପାଇଁ ଋଣ ବ୍ୟବସ୍ଥା କରାଯିବା ଉଚିତ। କେନାଲ ଖୋଳାଯିବା ପୂର୍ବରୁ ଏହାର ସଂରକ୍ଷଣ ବିଷୟରେ ଯୋଜନା ହେବା ଦରକାର। ମୃତ୍ତିକାର ଅବସ୍ଥା ଠିକ ରଖିବା ପାଇଁ ମିଳୁଥିବା ପଙ୍କକୁ ଗଛ ମୂଳରେ ଢ଼ାଳି ମାଟିକୁ ଘୋଡ଼ାଇ ରଖାଯିବା ଦରକାର। ଉଚିତ ଜାତିର ଗଛ ସ୍ଥିର

କରି ଏଠାରେ ପୋତିବା କାମ କିଏ ଠିକ କରି ସେମାନଙ୍କର ଯତ୍ନ ନେବ ? ଏହି ଜିଲ୍ଲାର ଖାଦ୍ୟ ଯୋଗାଣ ବ୍ୟବସ୍ଥାର ଉନ୍ନତି ଘଟାଇବାକୁ ଏଠାରେ ଫଳଗଛ ଲଗାଯିବା ଦରକାର ଯାହାକି ମଧ୍ୟ ଛାୟା ପ୍ରଦାନ କରିପାରିବ। ଉଚିତ ପନ୍ଥା ହେଉଛି ଗଛରୁ ମିଳୁଥିବା ପଦାର୍ଥକୁ ନିଲାମ କରିଦେବା। ଯଦ୍ୱାରା କିଣୁଥିବା ବ୍ୟକ୍ତି ଏହି ଗଛ ଓ ଫଳକୁ ଜଗି ପାରିବ। ଯେତେବେଳେ ଏହି ଗଛଗୁଡ଼ିକ ଛୋଟ ଥାଆନ୍ତି, ସେତେବେଳେ ଏହାକୁ ବୁଲା ଗାଈଗୋରୁ ଓ ଜାଳେଣି ସଂଗ୍ରହକାରୀଙ୍କ ଠାରୁ ସୁରକ୍ଷିତ ରଖାଯାଇ ବଢ଼ାଯିବା ଦରକାର।

କେନାଲଗୁଡ଼ିକ ଯେପରି ସିଧାଭାବେ ଖୋଳାଯାଇ ଯେପରି ଜଳ ମାଟିରେ ଭିଜି ନଯିବ ଓ ନଷ୍ଟ ନହେବ, ତାହା ଦେଖିବା ଗୁରୁତ୍ୱପୂର୍ଣ୍ଣ। ସିଧାସଳଖ ଖୋଳା ହୋଇନଥିବା ବହୁ ଅଞ୍ଚଳରେ ଅତ୍ୟଧିକ କ୍ଷତି କରି ବିସ୍ତୀର୍ଣ୍ଣ ଅଞ୍ଚଳକୁ ଜଳପୂର୍ଣ୍ଣ କରିଦେଇଥାଏ।

ଗୋଟିଏ ଭଲ ଜଳଭଣ୍ଡାର ସେତେବେଳେ ଉତ୍ପାଦନ ବୃଦ୍ଧିରେ ସହାୟକ ହୋଇପାରିବ ଯେତେବେଳେ ନିଶ୍ଚିତ ଭାବେ ଏହା ଏହି ଅଞ୍ଚଳରେ ଜଳ ଯୋଗାଇ ଜୀବନ୍ତ ଅବସ୍ଥା ସୃଷ୍ଟି କରିପାରିବ। ଅନ୍ୟ ଭାଷାରେ ଅଣଯୋଜନା ପ୍ରସ୍ତୁତ ଓ କୁ ପ୍ରକାରେ ନିର୍ମିତ ହୋଇଥିବା ଜଳଭଣ୍ଡାର ଏକ ବିପର୍ଯ୍ୟୟ ପାଇଁ ଦାୟୀ ହୋଇଥାଏ। ଏହା ସମସ୍ତ ଜଙ୍ଗଲ ନଷ୍ଟ କରିବା ସହିତ ଅସଂଖ୍ୟ ପ୍ରାଣୀଙ୍କ ଜୀବନ ନେବା ସହ ଜଳପ୍ଲାବିତ କରି ମୃତ୍ତିକାକୁ ନଷ୍ଟ କରିଦେଇଥାଏ।

ଯଦି ପ୍ରକୃତ ଭାବେ ଦୃଷ୍ଟି ଦିଆଯାଏ, ତେବେ ଏକ ଜଳସେଚନ ପାଇଁ ଉଦ୍ଦିଷ୍ଟ କେନାଲ ମାଛ ଚାଷ ପାଇଁ ଏକ ପ୍ରକୃଷ୍ଟ କ୍ଷେତ୍ର ହୋଇପାରେ। ସେତେବେଳେ ଏହି କେନାଲ କେବଳ ଯେ ଶସ୍ୟକ୍ଷେତ୍ରକୁ ଜଳଯୋଗାଏ ତାହା ନୁହେଁ, ବରଂ ଏହା ପ୍ରଚୁର ପ୍ରୋଟିନଯୁକ୍ତ ଖାଦ୍ୟ ଯୋଗାଇଥାଏ। କେନାଲରୁ ମାଛ ଧରିବା ମଧ୍ୟ ନଦୀଠାରୁ ସହଜ। କେତେକ କେନାଲରେ ମାଛମାନଙ୍କ ଚଳପ୍ରଚଳରେ ବାଧା ସୃଷ୍ଟି ନ କରିବାକୁ ମାଛଧରା ନିଶୁଣି ଯୋଗାଇ ଦିଆଯାଇଥାଏ। ନଈ ମାଛ ସବୁବେଳେ ଏକ ସୁସ୍ୱାଦୁ ଖାଦ୍ୟଭାବେ ପରିଚିତ ଏବଂ ଏକ ଭଲ ଜଳଭଣ୍ଡାର ବହୁ ପରିମାଣର ମାଛ ଯୋଗାଇପାରେ। ପ୍ରତ୍ୟେକ ଜାତିର ମାଛ କେତେକ ସ୍ୱତନ୍ତ୍ର ପରିବେଶ ଦରକାର କରିଥାନ୍ତି। ଅନ୍ୟ କେତେକ ଜାତିର ମାଛ ଅଛନ୍ତି ଯେଉଁମାନେ ପ୍ରଖର ସ୍ରୋତ ଥିବା ଜଳରେ ବାସ କରନ୍ତି। କେତେକ ସ୍ଥିର ମନ୍ଥର ପାଣିରେ ବାସ କରନ୍ତି। ଅନ୍ୟ କେତେକ ଗଭୀର ନଦୀରେ ବାସ କରୁଥିବା ବେଳେ କେତେକ ବହଳିଆ ମୋଟା ଜଳରେ ଓ ଆଉ କେତେକ ଥଣ୍ଡା ଜଳବାୟୁରେ ଓ କେତେକ

ଗରମ ଅଞ୍ଚଳରେ ବାସ କରିଥାନ୍ତି। ଏହିପରି ଭାବେ ବିଭିନ୍ନ ପ୍ରକାର ଅଞ୍ଚଳ ଓ ପରିବର୍ତ୍ତିତ ଜଳବାୟୁର ସମ୍ମୁଖୀନ ହୋଇ ଆସୁଥିବା ନଦୀରେ ବିଭିନ୍ନ ଜାତିର ଶହ ଶହ ପ୍ରକାରର ମାଛ ଦେଖାଯାଆନ୍ତି। ଯେହେତୁ ସମୁଦ୍ରରେ ବହୁ ଜାତିର ଅସଂଖ୍ୟ ମାଛ ଥାଆନ୍ତି, ତେଣୁ ନଦୀରେ ମଧ୍ୟ ବହୁ ଜାତିର ମାଛ ରହିଥିବାର ଆଶା କରାଯାଏ। ଏହି ମାଛମାନଙ୍କୁ ପରିଚାଳିତ କରିବାର ଆବଶ୍ୟକତା ନାହିଁ, ମାତ୍ର ଏକମାତ୍ର ବିପଦ ହେଉଛି ଅତ୍ୟଧିକ ମାଛ ଧରିବା। ଯେ ପର୍ଯ୍ୟନ୍ତ କୌଳିକ ଗତାନୁଗତିକ ମାଛଧରା ପଦ୍ଧତି ଆମେ ଅନୁସରଣ କରୁଥିବା, ଏହା ହୁଏତ ମାଛ ଧରା ଡଙ୍ଗା ସାହାଯ୍ୟରେ ଜାଲ ନେଇ ମାଛ ଧରିବା କିମ୍ବା କେଉଟମାନେ ଡ଼ୋର ପକାଇ ମାଛ ଧରିବା ହୋଇପାରେ, ସେପର୍ଯ୍ୟନ୍ତ ଏହି ସମ୍ପଦ ଉପରେ କୌଣସି ପ୍ରକାର ଭୟ ବା ବିପତ୍ତି ନାହିଁ। ବିପତ୍ତି ଅନ୍ୟ ସୂତ୍ରରୁ ଆସିଥାଏ ଯାହା କି ଆସନ୍ତା ପରିଚ୍ଛେଦରେ ଆଲୋଚିତ ହେବ।

ଏକ ପରିଷ୍କାର ନଦୀ ବହୁ ଜଳଜ ଉଭିଦ ଓ ଘାସପୂର୍ଣ୍ଣ ଗଛର ଆଶ୍ରୟସ୍ଥଳ ଯାହାକି ଛୋଟ ଛୋଟ ମାଛଙ୍କୁ ଖାଦ୍ୟ ଓ ସୁରକ୍ଷା ପ୍ରଦାନ କରିଥାଏ। ଏହା ଅନ୍ଧବିଶ୍ୱାସ ରହିଛି ଯେ କୁମ୍ଭୀର, ଘଡ଼ିଆଳ ଓ ପକ୍ଷିମାନେ ମାଛର ବଂଶକୁ କମାଇ ଦେଇଥାନ୍ତି। ମାତ୍ର ଏହା ସତ୍ୟର ଅପଳାପ। ପ୍ରକୃତରେ କୁମ୍ଭୀର ବଡ଼ ବଡ଼ ଆକ୍ରମଣକାରୀ ମାଛଙ୍କୁ ଖାଇଥାନ୍ତି, ଯେଉଁମାନେ କି ମଣିଷ ଭଲ ପାଉଥିବା ମାଛମାନଙ୍କୁ ଖାଇଯାଇଥାନ୍ତି। ତେଣୁ ନଦୀରେ କୁମ୍ଭୀର ରହିଲେ ଆମେ ଚାହୁଁଥିବା ଭଲ ମାଛ ଧରିପାରିବା ବୋଲି ନିଶ୍ଚିତ ହୋଇପାରିବା। ଏହା ମଧ୍ୟ ସତ୍ୟ ଯେ ପ୍ରତ୍ୟେକ ଖାଦ୍ୟ ଚକ୍ର ଭଳି ଏଠାରେ ମଧ୍ୟ ଦୁର୍ବଳ ଏବଂ ଅସୁସ୍ଥ ଜୀବ ଶତ୍ରୁର ପ୍ରଥମ ଖାଦ୍ୟ ବନିଯାଆନ୍ତି। ତେଣୁ ଆମକୁ ଯୁକ୍ତିଯୁକ୍ତ ଭାବେ ଜାଣିବାକୁ ହେବ ଯେ ଯେତେବେଳେ ସେମାନଙ୍କ ଶତ୍ରୁ ଉପସ୍ଥିତ ରହିଛି, ସେତେବେଳେ କେବଳ ସୁସ୍ଥ ମାଛ ଆମେ ପାଇ ପାରିବା। କେତେକ ସ୍ୱତନ୍ତ୍ର ମାଛ ଓ ଜଳଜ ଉଭିଦ ବହୁ ଶ୍ରେଣୀର ଉଭିଦଙ୍କୁ ଆକୃଷ୍ଟ କରିଥାନ୍ତି, ଫଳତଃ ମାଛରଙ୍କା ଓ ମାଛଖିଆ ପକ୍ଷୀପରି କେତେକ ପକ୍ଷୀ ଉଡ଼ିଆସି ସେମାନଙ୍କ ଗୋଡ଼ ସାହାଯ୍ୟରେ ମାଛ ଧରିଥାନ୍ତି। ବଗ, ଗେଣ୍ଡାଳିଆ ଓ କାଣ୍ଡିଆ ପରି ଅନ୍ୟ କେତେକ ଲମ୍ବା ଗୋଡ଼ଥିବା ପକ୍ଷୀ ମାଛ ଧରିବା ପାଇଁ ଧୀର ସ୍ରୋତ ଥିବା ନଦୀର କର୍ଦ୍ଦମାକ୍ତ କୂଳରେ ବସିଥାନ୍ତି।

ଏହି ପ୍ରାକୃତିକ ପଦ୍ଧତି ଜଳ ଭିତରେ ଏକ ଅନବରତ ଜୀବନଚକ୍ରର ଚିତ୍ର ସୃଷ୍ଟି କରିଥାଏ। ଏପରିକି କୃତ୍ରିମ ଭାବେ ସୃଷ୍ଟ ପୋଖରୀ ଓ କେନାଲ ଭଳି ଜଳାଶୟକୁ କିଛିଦିନ ଛାଡ଼ି ଦେବା ପରେ ସେଠାରେ ମଧ୍ୟ ନିଜସ୍ୱ



ପାହାଡ଼ଆଡୁ ଜଙ୍ଗଲ କଟା ଚାଲିବା ଫଳରେ ମାଟି ଧସିବାକୁ ଉତ୍ସାହିତ କରାଯାଉଛି।



ଉଟୀର ନୂଆ କୋଠାଘରମାନ। ସେମାନଙ୍କ ଆକୃତି ଓ ରୂପ ଏକ ଶୈଳନିବାସର ସ୍ୱରୂପ ପରିପନ୍ଥୀ।



ଘନ ଜଙ୍ଗଲ ।



[illegible] ସ୍ଥାନରୁ ଗଛ କଟାଯିବା ଫଳରେ ମାଟିରେ ଗଭୀର ଫାଟ ସୃଷ୍ଟି ହୁଏ ।



ଗାଈବାଛୁରୀ ପଲ ଜଙ୍ଗଲକୁ ଚରିବା ପାଇଁ ଯିବା ଫଳରେ ବାଟ ସିମେଣ୍ଟ ପରି ମୋଟା ହୋଇଯାଏ ଯେଉଁଠିକି ଦୂବ ବି ଜଅଁଳିବ ନାହିଁ।



ରାସ୍ତାକଡ଼ର ଗଛ ସାରାଦେଶରେ ଆବଶ୍ୟକସ୍ଥଳେ ଆଂଶିକ ବା ପୂରା କଟାଯାଏ।



ଦୁଇ ପାଖରେ ଜଙ୍ଗଲଭରା କୂଳ ଥିଲେ ନଦୀ ଗତିପଥ ହରାଏ ନାହିଁ ବା କୂଳ୍ ଲଙ୍ଘେ ନାହିଁ।



ଦକ୍ଷିଣ ଭାରତର ଏକ ବୃହତ୍ ଓ ସମୃଦ୍ଧିଶାଳୀ ଗ୍ରାମର ମୁଖ୍ୟ ରାସ୍ତାର ଦୃଶ୍ୟ।



କର୍ବେଟ ପାର୍କ ଦେଇ ବହୁଥିବା ରାମଗଙ୍ଗା ନଦୀ ହିମାଳୟର ବରଫ ଖଣ୍ଡ ଯୋଗୁଁ ବର୍ଷସାରା ପାଣି ପାଏ ।



କର୍ଣ୍ଣାଟକର ପଶ୍ଚିମଘାଟ ପର୍ବତମାଳାର ଚିରହରିତ ଜଙ୍ଗଲ ।



ସଂଖ୍ୟା ହ୍ରାସ ପାଇ ଆସୁଥିବା ଭାରତର ବର୍ଷାପ୍ଳୁତ ଚିରହରିତ ଜଙ୍ଗଲରୁ ଅନ୍ୟତମ କଲାକ୍କଡୁ ଅଭୟାରଣ୍ୟ।



ପଶ୍ଚିମଘାଟ ପର୍ବତମାଳା ଅଭ୍ୟନ୍ତରର ଜଙ୍ଗଲ ଯାହା କ୍ଷତିଗ୍ରସ୍ତ ହୁଟିକ୍ ହୋଇଛି।
ଏହାର ସୁନ୍ଦର ବିକାଶ ଲକ୍ଷଣୀୟ।



ପୂର୍ବଘାଟ ପର୍ବତମାଳାର ଏକ ଝରଣା - ସ୍ରୋତ ଯେତେ ଜୋର୍‌ରେ ବହିବ,
ପାଣି ସେତେ ନିର୍ମଳ ରହିବ।



ମହାରାଷ୍ଟ୍ରରେ ଶୁଖିଲାଜମିରେ ଚାଷ। ସବୁଠୁ ପରିଚିତ ଫସଲ ହେଉଛି ଗହମ ଯାହାକି ଏଠାରେ ଜୁନ୍‌ଠାରୁ ଅକ୍ଟୋବରଯାଏଁ ବର୍ଷାଋତୁର ଚାରିଟି ମାସରେ ଚାଷ କରାଯାଏ।

ଜୀବନଚକ୍ର ପଙ୍କ, କାଦୁଅ ସହିତ ଜଡ଼ିତ ହୋଇ ଆସେ ହୋଇଥାଏ। ଖୁବ କମ ସମୟ ଭିତରେ ଛୋଟ ଛୋଟ ଅଣୁଜୀବମାନେ ଜୀବ ସେଠାରେ ପହଁଞ୍ଚି ଯାଇଥାନ୍ତି ଏବଂ ସେଠାରେ ଏକ ଆସେ ଆସ୍ତେ ଜୈବିକ ପ୍ରକ୍ରିୟା ଆରମ୍ଭ ହୋଇଯାଇଥାଏ। ଯେ କୌଣସି ଜଳ ତାହା ସ୍ଥିର ହେଉ କିମ୍ବା ଗତିଶୀଳ ହେଉ ଅତି ଉତ୍ପାଦନକ୍ଷମ ଅଟେ। ତେଣୁ ଯେଉଁଠାରେ ଜଳ ଥାଏ, ସେଠାରେ ଜୀବ ଥାଏ। ବହୁ ସମୟରେ ଦେଖାଯାଏ ଯେ ଲୋକେ ଅଣ ଓସାରିଆ ଗାଡ଼ିଆ, କାଦୁଅ ଓ ବର୍ଷାଜଳ ଦ୍ୱାରା ସୃଷ୍ଟ ଛୋଟ ଜଳାଶ୍ରୟ ଏବଂ ନାଳ ପରି ଦିଶୁଥିବା ଜଳାଶୟରୁ ମାଛ ଧରୁଥାନ୍ତି ଏବଂ ଅଧିକାଂଶ ସମୟରେ ସେମାନେ ମାଛ ଧରିବାରେ ସଫଳ ହୋଇଥାନ୍ତି। ଜଳ ଓ କେତେକ ଜୈବ ପଦାର୍ଥ ମିଶ୍ରଣ ଉପରେ ଅନେକ ସମୟରେ କେତେକ ଜୀବନ୍ତ ପଦାର୍ଥର ସୃଷ୍ଟି ନିର୍ଭର କରିଥାଏ। ଯେହେତୁ ପ୍ରତ୍ୟେକ ଜୀବନ୍ତ ବସ୍ତୁ ଅମ୍ଳଜାନ ଆବଶ୍ୟକ କରିଥାନ୍ତି, ତେଣୁ ଜଳରେ ଅମ୍ଳଜାନ ରହିବା ବିଧେୟ। ଅନ୍ୟ ଭାଷାରେ ଏହା କେବେ ବି ରାସାୟନିକ ପଦାର୍ଥ ଦ୍ୱାରା ପ୍ରଦୂଷିତ ହେବା ଉଚିତ ନୁହେଁ।

ନଦୀର ଶେଷ ସ୍ଥାନ ଯେଉଁଠାରେ ଏହା ସମୁଦ୍ର ସହିତ ମିଶିଥାଏ ଏବଂ ଏହାର ମଧୁର ଜଳ ଯେଉଁଠାରେ ଲୁଣିପାଣି ଓ ଉଚ୍ଚ ଢେଉ ସହିତ ମିଶିଯାଏ, ସେଠାରେ ଗୋଟିଏ ଶ୍ରେଣୀର ସନ୍ତସନ୍ତିଆ ଅଞ୍ଚଳ ଦେଖାଯାଏ ଏବଂ ଏଠାରେ ବହୁ କର୍ଦ୍ଦମାକ୍ତ ଜଳଧାରା ମିଶିଥାଏ। ଏହି ତ୍ରିକୋଣଭୂମିକୁ ଏକ ପତିତ ଭୂମି କୁହାଯାଏ। ଆମେ ଏ ପ୍ରକାର କର୍ଦ୍ଦମାକ୍ତ ସମତଳ ଅଞ୍ଚଳରେ କଣ କରିପାରିବା ? ପ୍ରକୃତରେ ଏହିପରି ସନ୍ତସନ୍ତିଆ ସ୍ଥାନ ବହୁଭାବେ ଉପକାରୀ। ଏହା ବହୁ ଜାତିର ମାଛଙ୍କର ପ୍ରଜନନ କ୍ଷେତ୍ର। ଏହି ଭଳି ଏକ ବହଳିଆ, ସ୍ଥିର ଜଳରାଶି ନିକଟକୁ ମାଛମାନେ ଆସି ଅଣ୍ଡା ଦେଇଥାନ୍ତି ଏବଂ ଛୋଟ ଛୋଟ ମାଛ ଏହିଁଠାରୁ ସମୁଦ୍ରକୁ ଯିବା ପୂର୍ବରୁ ବଡ଼ ହୋଇଥାନ୍ତି। ବାସ୍ତବିକ ଆମେ ଯଦି ପ୍ରାକୃତିକ କର୍ଦ୍ଦମାକ୍ତ ସ୍ଥାନକୁ ଅଦରକାରୀ ଭାବି ପରିବର୍ତ୍ତନ କରିଦେବା ତେବେ ଆମେ ହୁଏତ ଦେଖିବା ଯେ ଆମେ ମାଛଙ୍କ ସଂଖ୍ୟା କମାଇ ଦେଇଛୁ, ବିଶେଷ କରି ଆମେ ବିଶେଷ ଭାବେ ଖାଉଥିବା ଚିଙ୍ଗୁଡ଼ି ଓ କଙ୍କଡ଼ା ଜାତୀୟ ଖାଦ୍ୟଙ୍କୁ ହରାଇବା।

ଆଜିଯାଏଁ ଆମେ ନଦୀକୁ ଏକ ବ୍ୟବହାରକାରୀ ଜିନିଷରୂପେ ଚିନ୍ତାକରି ଆସିଛୁ ଯେ କି ଆମର ଉନ୍ନତିରେ ସହାୟକ ହୋଇପାରିବ ଓ ବୋଧହୁଏ ଏହା ହିଁ ଗୋଟିଏ ଦିଗ ଯେଉଁ ବିଷୟରେ ଆମେ ସାବଧାନତାର ସହ ବିଚାର କରିବା ଆବଶ୍ୟକ। ନଦୀର ଅନ୍ୟ ଏକ ପରିଚୟ ହେଉଛି ନଦୀ

ଯେଉଁଠାରେ ଥାଉ; ଯେପରି ଭାବେ ଥାଉ, ଏହା କ୍ଷୁଦ୍ର ଜଳଧାରା ହୋଇଥାଉ ବା ମାଇଲ ମାଇଲ ପ୍ରସ୍ଥ ବିଶିଷ୍ଟ ହୋଇଥାଉ, କିନ୍ତୁ ଏହା ମଣିଷକୁ ଆନନ୍ଦ ଓ ଉପଭୋଗ ପ୍ରଦାନ କରିଥାଏ। ଆମେ ଏଥିରେ ନୌକା ଚଳାଇବାକୁ, ପହଁରିବାକୁ ଓ କାଗଜ ଡ଼ଙ୍ଗା ଭସାଇବାଠାରୁ ଆରମ୍ଭ କରି ମାଛ ଧରିବା, ନୌକାବିହାର କରିବା ଓ ଯାତ୍ରା କରିବାକୁ ଭଲ ପାଇଥାଉ। ଗତିଶୀଳ ଜଳଧାରା ଅଫୁରନ୍ତ ଆନନ୍ଦ ସୃଷ୍ଟିକରିବାର ପ୍ରତୀକ ଏବଂ ଶାନ୍ତି ପ୍ରଦାନକାରୀ ପଦାର୍ଥର ଉତ୍ସ। ଏପରିକି ଏହାର ଗତିଶୀଳତା ନଥିଲେ ମଧ୍ୟ ଚତୁଃପାର୍ଶ୍ୱସ୍ଥ ପ୍ରାକୃତିକ ଦୃଶ୍ୟରାଜି ଭିତରେ ଜଳରାଶିକୁ ଦେଖିବାରେ ଯେଉଁ ଆନନ୍ଦ ମିଳେ, ତାହା ମନକୁ ଆହ୍ଲାଦିତ ଓ ଚଞ୍ଚଳ କରି ସ୍ୱତନ୍ତ୍ର ଉନ୍ମାଦନା ସୃଷ୍ଟି କରିଥାଏ। ବାସ୍ତବିକ ବହୁ ନଦୀ ସଂଯୁକ୍ତ ସ୍ଥଳଭାଗ ହିଁ ଶୁଭଙ୍କର ବୋଲି ପୂର୍ବେ ବିଚାର କରାଯାଉଥିଲା। ପୃଥିବୀର ବୃହତ୍ତର ନଦୀ ସିନ୍ଧୁ, ନୀଳ, ଟାଇଗ୍ରୀସ ଓ ଇଉଫ୍ରିଟିସ କୂଳରେ ଅତୀତରେ ବହୁ ପୁରାତନ ସଭ୍ୟତା, ସଂସ୍କୃତି ଗଢ଼ି ଉଠି ବୃଦ୍ଧିପ୍ରାପ୍ତ ହୋଇଥିଲା। ସେଠାରେ ଲୋକେ ସ୍ଥାୟୀ ଭାବେ ବହୁଦିନ ଯାଏ ବସତି ସ୍ଥାପନ କରି ରହିଥିଲେ। ଏହା ଯାଯାବର ଭାବେ ଜୀବନ ଯାପନ କରୁଥିବା ଲୋକଙ୍କଠାରୁ ବହୁ ଗୁଣରେ ଭଲ, କାରଣ ସେ କ୍ଷେତ୍ରରେ ପାଣି ମିଳିବାର କୌଣସି ସ୍ଥାୟୀ ସୂତ୍ର ନ ଥିଲା। ସେମାନେ ଭୂମିରେ କାମ କରି ଶସ୍ୟ ଉତ୍ପାଦନ କରି ସରସ ଜୀବନ ଯାପନ କରୁଥିଲେ। ଥରେ ସମସ୍ତ ପ୍ରକାର ଆବଶ୍ୟକତା ମିଳିଯିବା ପରେ ସେମାନଙ୍କୁ ଏକତ୍ରଭାବେ ସଭ୍ୟତାର ବିକାଶ ଦିଗରେ ସମୟ ଓ ଶକ୍ତି ବିନିଯୋଗ କରିବାକୁ ସୁଯୋଗ ମିଳୁଥିଲା।

ଏହା ମଧ୍ୟ ଦେଖାଯାଏ ଯେ ପୃଥିବୀର ବହୁ ସମୃଦ୍ଧିଶାଳୀ ସହର ବଡ଼ ବଡ଼ ନଦୀକୂଳରେ ଗଢ଼ି ଉଠିଛି। ଲଣ୍ଡନ, ପ୍ୟାରିସ, ରୋମ, ଫ୍ଲୋରେନ୍ସ, କାଇରୋ ଓ ଆମର ଦିଲ୍ଲୀ ଭଳି ସହର କଥା ବିଚାର କଲେ ଆମେ ଏହାର ସତ୍ୟତା ଉପଲବ୍ଧି କରିପାରିବା। ଏହି ସବୁ ସହରେ ମଧ୍ୟଦେଇ ପ୍ରବାହିତ ହେଉଥିବା ଜଳଧାରା ଏସବୁ ସହରର ବିକାଶ ଓ ପ୍ରାଚୁର୍ଯ୍ୟ ପାଇଁ ପ୍ରତ୍ୟକ୍ଷ ଓ ପରୋକ୍ଷ ଭାବେ ଦାୟୀ। ଏହି ବିଶେଷ ପ୍ରକ୍ରିୟାକୁ ଚାଲୁ ରଖିବାକୁ ହେଲେ ଏହି ଜଳଧାରାକୁ ସ୍ୱଚ୍ଛ, ନିର୍ମଳ ଓ ଭଲ ରଖିବାର ଆବଶ୍ୟକତା ରହିଛି।

# ନଦୀସମୂହ

## II

### *ସେମାନେ କଣ ଅପବ୍ୟବହୃତ ?*

ପ୍ରଥମ ପରିଚ୍ଛେଦରେ ନଦୀ ଆମକୁ କି ପ୍ରକାର ସାହାଯ୍ୟ କରେ, ସେ ବିଷୟରେ ଆଲୋଚନା କଲେ। ଏହା ଆମକୁ କୃଷି ପାଇଁ ଜଳ, ମାଛ ଇତ୍ୟାଦି ଯୋଗାଇବା ସହ ଶସ୍ତା ପରିବହନ ଓ ବିଦ୍ୟୁତଶକ୍ତି ଏବଂ ସର୍ବୋପରି ଏକ ସବୁଦିନିଆ ଜଳଯୋଗାଣ ବ୍ୟବସ୍ଥା ଚାଲୁରଖି ଏହା କୂଳରେ ଏକ ସୁନ୍ଦର ସହର ଗଢ଼ି ଉଠିବାକୁ ସୁବିଧା ପ୍ରଦାନ କରିଥାଏ।

ବର୍ତ୍ତମାନ ଆମେ ଦେଖିବା ଭାରତରେ ଏଥି ମଧ୍ୟରୁ କେତେ କଣ ନଦୀମାନେ କରିଥାନ୍ତି, ଯେଉଁଠାରେ ସୁଫଳ ଓ ବିଫଳ ଅତିଶୀଘ୍ର ଆସେ, ଯେଉଁଠାରେ ଫଳାଫଳକୁ ଉନ୍ନତିବିଧାନ କରାଯିବାର ଆବଶ୍ୟକତା ରହିଛି ଏବଂ ଯେଉଁଠାରେ ବ୍ୟବହାର କୌଶଳ ପରିବର୍ତ୍ତନର ଆବଶ୍ୟକତା ରହିଛି।

ପ୍ରାରମ୍ଭରେ ଧରାଯାଉ ଏକ ନଦୀ ଏପରି ଏକ ଭୂଭାଗ ମଧ୍ୟ ଦେଇ ଗତି କରୁଛି, ଯାହାକି କୃଷି ପାଇଁ ଅତି ଉପଯୁକ୍ତ, ମାତ୍ର ନଦୀ ଭିତରୁ କୃଷକ କିପରି ଭାବେ ତାର ଚାଷ ଜମିକୁ ଜଳ ନେଇ ପାରିବ ? ସମ୍ଭବତଃ ସେ ଏକ ପମ୍ପ ବସାଇ ପାଣି ଉଠାଇ ସେଥିରୁ ନାଳଖୋଳି ଆବଶ୍ୟକ ସ୍ଥାନକୁ ଜଳ ନେଇ ପାରିବ। ଏସବୁ ଅଣଓସାରିଆ *ମାଟିନାଳ* ଏବଂ ଜଳ ମଧ୍ୟରୁ ବହୁ ଭାଗ କାଦୁଆ ଶଯ୍ୟାରେ ଭେଦି ଯାଇ ନଷ୍ଟ ହୋଇଯିବ। ଏହା ସୁସ୍ପଷ୍ଟ ଯେ ଏପ୍ରକାର ହାତ ତିଆରି ଜଳସେଚନ ବ୍ୟବସ୍ଥା କେବଳ ନଦୀକୂଳକୁ ଲାଗିଥିବା ଜମି ପାଇଁ ଉଦ୍ଦିଷ୍ଟ। ମାତ୍ର ଯେଉଁ ଜମି ନଦୀକୂଳରୁ ଦୂରରେ ଅବସ୍ଥିତ ସେଠାକୁ ଜଳସେଚନ ପାଇଁ ଶୃଙ୍ଖଳିତ ଭାବେ ସରକାରଙ୍କ

ଦ୍ୱାରା ନାଳ ନିର୍ମାଣ କରାଯିବା ଆବଶ୍ୟକ।

ଯେତେବେଳେ ସରକାର ନଦୀଜଳ ଦ୍ୱାରା କୃଷିକ୍ଷେତ୍ରକୁ ଜଳସେଚନ ବ୍ୟବସ୍ଥା କରିବାକୁ ସ୍ଥିର କରନ୍ତି, ସାଧାରଣତଃ ସେଠାରେ ଏକ କ୍ଷୁଦ୍ର କିମ୍ବା ବଡ଼ ନଦୀବନ୍ଧ ନିର୍ମାଣ କରାଯାଏ ଯଦ୍ୱାରା ଅଳ୍ପ ବା ବେଶୀ ପରିମାଣର ଜଳ ସଂଗୃହୀତ ହୋଇଥାଏ। ଏହାପରେ ସରକାରଙ୍କ ଦ୍ୱାରା ବିଭିନ୍ନ ଦିଗରେ ଅନୁକୂଳ ବାତାବରଣରେ କେନାଲ ନିର୍ମାଣ କରାଯାଇଥାଏ। ନିକଟବର୍ତ୍ତୀ ଅଞ୍ଚଳର ଚାଷୀମାନେ ନିଜ ନିଜ ଜମିକୁ କେନାଲ ଓ ନିଜ ଜମି ମଧ୍ୟରେ ନାଳ ଖୋଳି ପାଣି ନେଇ ଯାଇଥାନ୍ତି। ଏହା ହେଉଛି ଏକ ସମ୍ବାଦପତ୍ରରେ ପ୍ରକାଶ ପାଉଥିବା ଏକ ଜଳସେଚନ ଯୋଜନା ସମ୍ପର୍କରେ ତଥ୍ୟ, ଯେଉଁଠାରେ କେତେ ଲକ୍ଷ ହେକ୍ଟର ଜମି କୃଷି ଉପଯୋଗୀ ହୋଇଥାଏ। ଏହି ଯୋଜନା କାଗଜପତ୍ରରେ ଉତ୍ତମ ମାତ୍ର ଭାରତରେ କାର୍ଯ୍ୟକାରୀ କରିବାରେ ମୁଖ୍ୟତଃ ଏହାର ଦୁଇଟି ଅସୁବିଧା ରହିଛି।

ପ୍ରଥମ ଅସୁବିଧା ହେଉଛି କୃଷକମାନଙ୍କୁ ଜଳ ଯୋଗାଉଥିବା ଏକ ଲମ୍ବା ନାଳ ଖୋଳିବାକୁ ସେମାନେ କୁଣ୍ଠା ପ୍ରକାଶ କରିଥାନ୍ତି କାରଣ ଏହା ଛୋଟ ଏବଂ ଆବଶ୍ୟକ ପ୍ରସ୍ତୁତି ସେମାନଙ୍କ କାର୍ଯ୍ୟ ବହିର୍ଭୂତ ହୋଇଥାଏ ଏବଂ ସେମାନେ ମଧ୍ୟ ବିଶ୍ୱାସ କରିବାକୁ ଦ୍ୱିଧା ବୋଧ କରନ୍ତି ଯେ, ଏଥିରୁ ମିଳିବା ସୁଫଳ ସେମାନଙ୍କ ଅସୁବିଧା ଓ ଖର୍ଚ୍ଚକୁ ସମତୁଲ କରିପାରିବ। ଏହିପରି ଅବସ୍ଥାରେ ଦେଖାଯାଏ ଯେ ବହୁ ମାଇଲ ବିଶିଷ୍ଟ ନାଳଦ୍ୱାରା ଯାଉଥିବା ପାଣିର କୌଣସି ବ୍ୟବହାରକାରୀ ନଥାନ୍ତି ଏବଂ ଶେଷରେ ଏହା ନଷ୍ଟ ହୋଇଥାଏ। ବାସ୍ତବରେ ଏହା ବାଷ୍ପିକରଣ ହୋଇଯିବା ଓ ମାଟି ଭିତରକୁ ଭେଦିଯିବାଠାରୁ ମଧ୍ୟ ଅଧିକ ଖରାପ। ଯେହେତୁ କେନାଲଗୁଡ଼ିକ ସମତଳ ଅଞ୍ଚଳରେ ଅବସ୍ଥିତ ଏବଂ ସିଧାସଳଖ, ତେଣୁ ଏଠାରେ ପାଣିନାଳ ସବୁ କାଦୁଅ, ପଙ୍କ ଜମା ହୋଇଯିବାରୁ ଏହା ଉପରେ ପାଣି ଧୀରେ ଧୀରେ ପ୍ରବାହିତ ହୋଇଥାଏ ଏବଂ ଏହା ଜମିଯାଇ ଶେଷରେ ନଷ୍ଟ ହୋଇଯାଏ। ଏହି ପ୍ରକ୍ରିୟାକୁ ଜଳଧାରକ କୁହାଯାଏ ଓ କିଛିଦିନ ପରେ ଦେଖାଯାଏ ଯେ ଉଭୟ ପାର୍ଶ୍ୱର ଜମି ଜଳପୂର୍ଣ୍ଣ ହୋଇଯାଇଛି। ଜମା ହୋଇ ରହିଥିବା ଜମି କେତେକ ଲବଣ ଛାଡ଼ିଯାଏ, ଅନ୍ୟଭାଷାରେ ଏହି ଜମି କୃଷିପାଇଁ ଅନୁପଯୁକ୍ତ ହୋଇଥାଏ। ଏହାକୁ ବନ୍ଦ କରାଯାଇ ପାରିବ ଯଦି ନାଳଗୁଡ଼ିକ ସିମେଣ୍ଟ କିମ୍ବା କୌଣସି ଜଳ ନିରୋଧକ ପଦାର୍ଥରେ ତିଆରି ହେବ। ମାତ୍ର ଏହା

ଏହି ଯୋଜନାକୁ ଏତେ ବ୍ୟୟସାଧ୍ୟ କରିଦେବ ଯେ ଏଠାରେ କାର୍ଯ୍ୟକରିବା ସମ୍ଭବ ହେବ ନାହିଁ। ଦେଖାଯାଉଛି ଯେ ପଞ୍ଚହଟ ଜଳଭଣ୍ଡାରର ମାତ୍ର ଶତକଡ଼ା ଛଅଭାଗ ଜଳ ବ୍ୟବହୃତ ହେଉଛି, ମାତ୍ର ଅନ୍ୟ କେତେକ ଜଳଭଣ୍ଡାର କ୍ଷେତ୍ରରେ ଏହା ଅଧିକ।

ବର୍ତ୍ତମାନ ଦେଖାଯାଉଛି ଯେ ପ୍ରତିବର୍ଷ ବହୁ ଏକର ଜଳସେଚିତ କୃଷିକ୍ଷେତ୍ର କ୍ରମାଗତ ପାଣି ଜମା ହେବା ଓ ଲବଣାଂଶ ଜମିବା ଦ୍ୱାରା କୃଷିପାଇଁ ଅନୁପଯୁକ୍ତ ହୋଇପଡୁଛି ଏବଂ ଏଥିପାଇଁ ନୂତନ ଜଳସେଚନ ଯୋଜନା ପ୍ରସ୍ତୁତ କରାଯାଇ ନଷ୍ଟ ହୋଇଥିବା ଜମି ପରିବର୍ତ୍ତେ ନୂତନ ଅଞ୍ଚଳକୁ ପାଣି ଯୋଗାଇବାର ବ୍ୟବସ୍ଥା ହେଉଛି। ଏହା ଦେଖାଯାଇଛି ଯେ ଯେଉଁ ଅଞ୍ଚଳ କେନାଲ ଜଳସେଚନ ଦ୍ୱାରା ନଷ୍ଟ ହେଉଛି ତାର ପରିମାଣ ପ୍ରତିବର୍ଷ ନୂତନ ଭାବେ ଜଳସେଚିତ ଅଞ୍ଚଳ ସହିତ ପ୍ରାୟ ସମାନ। ଏଥିରୁ ସ୍ପଷ୍ଟ ହୁଏ ଯେ ଏ ପ୍ରକାର ଜଳସେଚନ ବ୍ୟବସ୍ଥା ଦୀର୍ଘମିଆଦୀ ସଫଳତା ପ୍ରଦାନ କରିପାରିବ ବୋଲି କୁହାଯାଇ ପାରିବ ନାହିଁ। ବିଶେଷଜ୍ଞ ଓ ସଂରକ୍ଷଣକାରୀମାନେ ଏ ପ୍ରକାର ଜଳସେଚନ ଯୋଜନା ବିରୋଧରେ ତେଣୁ କଟୁ ମନ୍ତବ୍ୟ ଦେଉଛନ୍ତି। ସେମାନେ ବିଶ୍ୱାସ କରନ୍ତି ଯେ ଭୂଭାଗ ଜଳ, ଯାହାକି ସମସ୍ତଙ୍କ ପାଇଁ ହିତକର, ଏହାର ଏକ ଭଲ ସମାଧାନ କରିପାରିବ।

ବହୁକ୍ଷେତ୍ରରେ ଯଦିଓ ଜଳସେଚନ ପାଇଁ ନଦୀବନ୍ଧ ନିର୍ମାଣ କରିବା ମୁଖ୍ୟ କାରଣ ନୁହେଁ, ଏ କ୍ଷେତ୍ରରେ ଏହାର ମୁଖ୍ୟ ଉଦ୍ଦେଶ୍ୟ ହେଉଛି ଶକ୍ତି ବା ବିଦ୍ୟୁତଶକ୍ତି ଉତ୍ପାଦନ କରିବା। ଯେତେ ପାଣି ଆସି ଏକ ଉଚ୍ଚ ଓ ବିରାଟ ନଦୀବନ୍ଧର ପଛରେ ଜମା ହୁଏ, ତାହା ତଳକୁ ଗଡ଼ି ଆସିବା ବେଳେ ବିଦ୍ୟୁତଶକ୍ତି ଉତ୍ପାଦନ କରିଥାଏ, ଯାହାକି ବହୁମୁଖୀ ନଦୀବନ୍ଧର ମୁଖ୍ୟ ଉଦ୍ଦେଶ୍ୟ।

ଶକ୍ତି ଉତ୍ପାଦନ ପାଇଁ ଆମେ ପର୍ବତପାର୍ଶ୍ୱ ଓ ନଦୀଗୁଡ଼ିକୁ ଅମାନୁଷିକ ଭାବେ ଇଚ୍ଛା ଅନୁସାରେ ବ୍ୟବହାର କରୁଛୁ କିମ୍ବା ପ୍ରକୃତିକୁ ଆମର କାର୍ଯ୍ୟରେ ନିଜର ସୁବିଧା ପାଇଁ ଲଗାଇ ଏକ ଚାଲାଖ ଓ ସାହସିକ କାର୍ଯ୍ୟ କରୁଛୁ। ଯେହେତୁ ଆମର ଆବଶ୍ୟକତା ବଢ଼ି ବଢ଼ି ଚାଲିଛି; ବୈଷୟିକ ଜ୍ଞାନ ମଧ ବଢ଼ି ଚାଲିଛି। ସେତେବେଳେ ହସ୍ତ ନୈପୁଣ୍ୟ ବଢ଼ି ଚାଲିଛି, ଜଳଭଣ୍ଡାରର ଆକାର ବଢୁଛି ଓ ଜଳସ୍ତର କ୍ରମେ ଗଭୀର ଓ ଅଧିକ ହେଉଛି ଓ ତତ୍‌ସହିତ ଶକ୍ତି ଉତ୍ପାଦନ ଆକର୍ଷଣୀୟ ଭାବେ ବଢୁଛି। ଯେହେତୁ ମଣିଷ କ୍ରମେ ବେଶି

ଆତ୍ମବିଶ୍ୱାସୀ ହେଉଛି ଏବଂ ପ୍ରାକୃତିକ ସମ୍ପଦକୁ ବଦଳାଇବାକୁ ଗର୍ବର ସହିତ ଆଗଉଛି, ପ୍ରକୃତି ଏହା ସହିତ ସମ୍ପୂର୍ଣ୍ଣ ଅସହଯୋଗ ଭବିଷ୍ୟତରେ ବିଭିନ୍ନ ଉପାୟରେ କରିବା ଆଶା କରାଯାଉଛି। ଯେଉଁ ସବୁ ସମସ୍ୟା ଆସୁଛି, ସେଗୁଡ଼ିକ ସାଧାରଣ ଭାବେ ଏପରି ଆଲୋଚନା କରାଯାଇପାରେ:

(1) ସାଧାରଣତଃ ନଦୀବନ୍ଧ ଏପରି ସ୍ଥାନରେ ନିର୍ମାଣ କରାଯାଇଥାଏ, ଯେଉଁଠାରେ ନଦୀ ଦୁଇ ଉଚ୍ଚ ପର୍ବତର ମଧ୍ୟବର୍ତ୍ତୀ ଉପତ୍ୟକାରେ ପ୍ରବାହିତ ହେଉଥାଏ। (2) ସ୍ଥାନୀୟ ଅଞ୍ଚଳରେ ରହିଥିବା ଲୋକଙ୍କୁ ପୁନଃବସତି କରାଯାଏ। (3) ନଦୀବନ୍ଧ ଯେତେବଡ଼ ହୁଏ, ସେତେ ଅଧିକ ଯନ୍ତ୍ରପାତି ଓ ନିର୍ମାଣକାରୀ ନିର୍ମାଣ କାର୍ଯ୍ୟପାଇଁ ଆବଶ୍ୟକ ହୋଇଥାନ୍ତି। (4) ପୂର୍ବ ପରିଚ୍ଛେଦ ଅନୁସାରେ ନଦୀବନ୍ଧ ଅଞ୍ଚଳକୁ ଯନ୍ତ୍ରପାତି ଓ ଶ୍ରମିକଙ୍କୁ ନେବାପାଇଁ ପ୍ରଥମେ ରାସ୍ତା ନିର୍ମାଣ କରିବାକୁ ହୁଏ, ଯଦ୍ୱାରା ଜଙ୍ଗଲ ସମ୍ପଦକୁ ନଷ୍ଟ କରିବାକୁ ପଡ଼ିଥାଏ। (5) ନଦୀବନ୍ଧ ଅଞ୍ଚଳରେ ବହୁ ଶ୍ରମିକ ବସତି ଯୋଗୁଁ ନିକଟସ୍ଥ ଜଙ୍ଗଲ ଲଣ୍ଡା ହୋଇଯାଏ। ଏମାନେ ଘର ତିଆରି କରିବାକୁ ଓ ଜାଳେଣି ପାଇଁ ଏହା ଆବଶ୍ୟକ କରିଥାନ୍ତି। ନିର୍ମାଣ କାର୍ଯ୍ୟ ଯେତେ ଅଧିକ ହୁଏ, ନଷ୍ଟ ସେତେ ଅଧିକ ହୁଏ। ଅର୍ଥାତ ନଦୀବନ୍ଧ ଯେତେ ବଡ଼ ହୁଏ, କ୍ଷୟ ସେତେ ଅଧିକ ହୁଏ। (6) ପ୍ରତ୍ୟେକ ଥର ବର୍ଷା ସମୟରେ ପର୍ବତ କଡ଼ର ଅସୁରକ୍ଷିତ ମାଟି ଧୋଇ ହୋଇ ନୂତନ ହ୍ରଦ ଭିତରକୁ ଚାଲିଯାଏ। (7) ହ୍ରଦର ନିମ୍ନଭାଗ ପଟୁମାଟି ଦ୍ୱାରା ପୋତି ହୋଇ ପଡ଼େ ଓ ଖୁବଶୀଘ୍ର ଏହା ଏତେ ପରିମାଣରେ ପୋତି ହୋଇପଡ଼େ ଯେ ଏହା ବେଶୀଦିନ ଯାଏ ନିଜର କାମ ଠିକ ଭାବେ କରିପାରେ ନାହିଁ।

ଆମର ବହୁ ନଦୀବନ୍ଧ ବା ଜଳଭଣ୍ଡାର ଏହିପରି ଭାବେ ଅକାମୀ ହୋଇପଡୁଛି। ବହୁଦିନର ପରିଶ୍ରମ ପରେ ଆମେ ଦେଖୁ ଯେ ଆମେ ଏକ ସୁନ୍ଦର ପର୍ବତାଞ୍ଚଳକୁ ନଷ୍ଟକରି ଦେଇଛୁ ମାତ୍ର ଆମେ ଆଶା କରୁଥିବା ପରିମାଣର ବିଦ୍ୟୁତଶକ୍ତି ପାଇପାରୁ ନାହୁଁ। ଅତିବେଶୀରେ ଆମେ ଦେଖୁ ପ୍ରକୃତରେ ଗୋଟିଏ ନଦୀବନ୍ଧ ଯୋଜନା ଆମକୁ ଯେତେ ପରିମାଣର ବିଦ୍ୟୁତଶକ୍ତି ଯୋଗାଇବା କଥା, ତାର ଅଧା ପ୍ରସ୍ତୁତ କରିପାରୁଛି।

ଅତୀତର ଘଟଣାରୁ ଯାହା ଦେଖାଯାଉଛି, ଏହି ଯୋଜନାର ପ୍ରକୃତ ଦୋଷୀ ନଦୀବନ୍ଧ ଯେତେ ପରିମାଣରେ ନୁହେଁ, ଏଠାକାର ଘଟଣାବଳୀ ଯଥା ବିପୁଳ ଶ୍ରମିକଗୋଷ୍ଠୀ ଏବଂ ସେମାନଙ୍କର ବେପରୁଆ ଜଙ୍ଗଲ ଧ୍ୱଂସ,

ଗୃହ ଓ ରାସ୍ତା ନିର୍ମାଣ ଓ ତଦ୍‌ଜନିତ ଜଙ୍ଗଲ ଲୁଟ ତତୋଽଧିକ ପରିମାଣରେ ଦାୟୀ। ଅନ୍ୟ ଏକ ଘଟଣା, ଯାହାକି ଅତି ପରିଷ୍କାର, ତାହା ହେଉଛି ଗଛର ଉପସ୍ଥିତିର ଆବଶ୍ୟକତା। ଏସବୁ ହେଉଛି ବହୁ ଜଙ୍ଗଲୀ ଗଛ, ଯେଉଁଗୁଡ଼ିକ ଆପଣାଛାଏଁ ଅଣ ଉତ୍ସାହିତ ହୋଇ ବଢ଼ିଥାଏ ଓ ସେଗୁଡ଼ିକ ମାଟିକୁ ଜୀବନ, ସ୍ୱାସ୍ଥ୍ୟ ଓ ସୁରକ୍ଷା ପ୍ରଦାନ କରିଥାଏ। ବହୁ କୋଟି ଟଙ୍କାର ଆଧୁନିକ ବୈଷୟିକ ଜ୍ଞାନ ଦ୍ୱାରା ନିର୍ମିତ ଏହି ନଦୀବନ୍ଧ ଯୋଜନା ପରିଶେଷରେ ଅକାମୀ ହୋଇଥାଏ କାରଣ ଜଳଭଣ୍ଡାର ଉପରର ଜଙ୍ଗଲୀ ଗଛଗୁଡ଼ିକୁ କାଟି ଦିଆଯାଇଥାଏ।

ଯୁକ୍ତିଯୁକ୍ତ ଭାବେ ଏହା କୁହାଯାଇପାରେ ଯେ ଚତୁଃପାର୍ଶ୍ୱ ପର୍ବତ ଓ ଜଙ୍ଗଲ ସମ୍ପଦ ବିଲୋପ ପ୍ରକ୍ରିୟାକୁ କମାଯାଇ ପାରିବ ଯଦି ପ୍ରକୃତରେ କାର୍ଯ୍ୟକ୍ଷେତ୍ରରୁ ଶ୍ରମିକମାନଙ୍କୁ କିଛି ଦୂରରେ ରଖାଯିବ। ମାତ୍ର କାର୍ଯ୍ୟତଃ ଏହା ଆଶାଜନକ ଭାବେ ହୋଇ ପାରେ ନାହିଁ। କେଉଁ ସ୍ଥାନରେ ଶ୍ରମିକମାନଙ୍କୁ ରଖାଯିବ? ଯେତେଦୂର ଯୋଗାଯୋଗ ସଂଯୁକ୍ତ ସ୍ଥାନ ହେଲେ ମଧ୍ୟ ଏହା ଜଙ୍ଗଲ ଏବଂ ଯେତେ ଦିନଯାଏଁ ଶ୍ରମିକମାନେ ମଣିଷ ହୋଇଥିବେ, ସେମାନେ ଜାଳେଣୀ ପାଇଁ କାଠ ଆବଶ୍ୟକ କରିବେ, ଯାହାକୁ ସେମାନେ ନିକଟସ୍ଥ ଗଛରୁ କାଟି ଆଣିବେ। ସମୁଦାୟ ଶ୍ରମିକଙ୍କୁ କିରୋସିନି ଓ ଷ୍ଟୋଭ ଯୋଗାଇ ଦେବା କଣ ସମ୍ଭବ? ଆମକୁ ମନେ ରଖିବାକୁ ହେବ ଯେ କାଠ କାଟିବା କମ କ୍ଷତିକାରକ ନୁହେଁ। ଏହା ଜଙ୍ଗଲ ନଷ୍ଟ କରିବା ସହିତ ମଣିଷଙ୍କ ପାଇଁ ଚିରସ୍ଥାୟୀ ଭାବେ ବିପତ୍ତି ସୃଷ୍ଟି କରିଥାଏ।

ଏହା ଏକ ଭାଷାଗତ ସତ୍ୟ ଯେ ପ୍ରକୃତି ହିଁ ସୁନ୍ଦର, ଅର୍ଥାତ ଏହାର ଏପରି ଶକ୍ତି ଅଛି ଯଦ୍ୱାରା ଏହା ପୁନଃସୃଷ୍ଟ ଓ ପୁନଃଲାଭ ହୋଇପାରେ। ଯେ ପର୍ଯ୍ୟନ୍ତ ଆମେ ଏହାର ସୃଷ୍ଟି ପ୍ରତି ଯତ୍ନଶୀଳ ହେବା ପ୍ରକୃତିର ଦାନ ଆମକୁ ଚିର ସୁଖ ପ୍ରଦାନ କରୁଥିବ। ପ୍ରକୃତି ସହିପାରିବା ଭଳି ଉତ୍ପାଦନ ପ୍ରକ୍ରିୟା ଅର୍ଥାତ ଏହା ଯେତେ ଅଧିକ ସୃଷ୍ଟି କରିପାରିବ, ସେଥିରୁ ସଂଗ୍ରହ କରିବା ଉଚିତ। ବର୍ତ୍ତମାନ କାଠ ଉପରେ ନିର୍ଭର କରୁଥିବା ବହୁ ବ୍ୟକ୍ତି ରାଜଧାନୀରେ ବାସ କଲେଣି, ମାତ୍ର ସେମାନେ ଏଥିପ୍ରତି ଅଧିକ ଯତ୍ନଶୀଳ ନୁହଁନ୍ତି- ଯଦ୍ୱାରା ଖୁବଶୀଘ୍ର ମାନବ ଓ ଜଙ୍ଗଲ ସମ୍ପଦ ଉଭୟେ ଋଣଗ୍ରସ୍ତ ହୋଇଯିବେ।

ସହରୀ ସଭ୍ୟତାର ସାଧାସିଧା ଅର୍ଥ ହେଉଛି, ଏହା ଏପରି ଏକ

ସ୍ଥାନ ଯାହାକୁ ସୁନା ଅଣ୍ଡା ଦେଉଥିବା ଏକ ହଂସ ସହିତ ତୁଳନା କରାଯାଇ ପାରେ। ଏହି ହଂସର ମାଲିକ ଅତି ଲୋଭୀ ଏବଂ ସେ ଚିନ୍ତା କରିଥିଲା ଯଦି ସେ ହଂସକୁ ମାରିଦେବ, ତେବେ ସେ ଏହା ପେଟରେ ଥିବା ସବୁ ସୁନା ଅଣ୍ଡାକୁ ଏକାଥରକେ ପାଇଯିବ। ମାତ୍ର ଥରେ ସେହି ହଂସଟି ମରିଗଲା ପରେ ପ୍ରକୃତରେ ଏହା ଦେଉଥିବା ମୂଲ୍ୟବାନ ଅଣ୍ଡା ଦେବା ସବୁଦିନ ପାଇଁ ବନ୍ଦ ହୋଇଗଲା।

କେତେକ ସମୟରେ ଏହା ମଧ ଘଟେ ଯେ ଅତ୍ୟଧିକ ଶକ୍ତି ସୃଷ୍ଟି କରିବା ପରେ ଏହାର ବ୍ୟବହାରକାରୀଙ୍କ ମଧରେ ଏପରି ଏକ ଉନ୍ନତ ଭାବନା ସୃଷ୍ଟି ହୁଏ ଯଦ୍ଵାରା ସେମାନେ ଯୋଜନା ଖର୍ଚ୍ଚ ଏହି ଠାରୁ ଉଠାଇବାକୁ ଚିନ୍ତା କରିଥାନ୍ତି। ଶିଳ୍ପ କାରଖାନା ମାନଙ୍କୁ ଏହି ଅଞ୍ଚଳରେ କମ୍ ବିଦ୍ୟୁତ ଶୁଳ୍କରେ ପ୍ରତିଷ୍ଠା କରିବା ପାଇଁ ନିମନ୍ତ୍ରଣ କରାଯାଏ। ମାତ୍ର ଶେଷ ପରିଣତିରେ ଏକ ବିରାଟ ପ୍ରାକୃତିକ ଅଞ୍ଚଳ ନଷ୍ଟ ହୋଇଯାଏ। ଉନ୍ନତି ନାମରେ ଜଙ୍ଗଲ ସମ୍ପଦ ଶିଳ୍ପ କାରଖାନା ଦ୍ଵାରା ନଷ୍ଟ ହୁଏ। ଏମାନେ କିଣିଥିବା ବିଦ୍ୟୁତଶକ୍ତି ଜଙ୍ଗଲ ସମ୍ପଦକୁ ନଷ୍ଟ କରି ପ୍ରସ୍ତୁତ କରାଯାଇଥାଏ। ଆମକୁ ଆପଣାଛାଏଁ ଏହା ମନେ ରଖିବାକୁ ହେବ ଯେ ବଢୁଥିବା ଲୋକସଂଖ୍ୟା ଆଗରେ ସୃଷ୍ଟ ଜଙ୍ଗଲ ସମ୍ପଦ ଯଦି ଥରେ ନଷ୍ଟ ହୋଇଯାଏ, ତେବେ ଏହାର ପୁନଃସୃଷ୍ଟି ଆଉ ସମ୍ଭବ ନୁହେଁ।

ଆମେ ଏ ଯାଏଁ ଜଳଭଣ୍ଡାର ସୃଷ୍ଟି ଦ୍ଵାରା ସରକାରୀ ଭାବେ ବୁଡ଼ିଯାଉଥିବା ଜଙ୍ଗଲ ଓ ଉପତ୍ୟକା ବିଷୟରେ ଆଲୋଚନା କରିନାହେଁ। ଏହା ହୁଏତ କେତେ ବର୍ଗମାଇଲ ପରିମିତ ଅଞ୍ଚଳ ଏବଂ ଅନେକ ସମୟରେ ଏହା ଅତି ପୁଷ୍ଟ ଉପତ୍ୟକା। ଏ ଅଞ୍ଚଳର ଜନ ବସତିକୁ ଉଠାଇ ଅଣାଯାଇ ବୁଡ଼ିଯିବା ଅବସ୍ଥାରୁ ରକ୍ଷାକରାଯାଇଥାଏ, ମାତ୍ର ଏ ଅଞ୍ଚଳର ବୃକ୍ଷ ଓ ପଶୁପକ୍ଷୀଙ୍କୁ ବଞ୍ଚାଇ ରଖିବାର କୌଣସି ଉଦ୍ୟମ ହୁଏ ନାହିଁ।

ଏହି ଯୋଜନା ସହିତ ଅସାଧାରଣଭାବେ ଘଟୁଥିବା ଆକସ୍ମିକ ବିପତ୍ତି ହେଉଛି ଅତ୍ୟଧିକ ଚାପ ଯୋଗୁ ନଦୀବନ୍ଧର କାନ୍ଥ ଭାଙ୍ଗିଯିବା। ଏହିପରି ଏକ ଘଟଣା ଯାହାକି ସମସ୍ତଙ୍କ ମାନସପଟରେ ଉଜ୍ଜୀବିତ ରହିଛି, ତାହା ହେଉଛି 1979 ମସିହାର ମୋରଭି ନଦୀବନ୍ଧ ଦୁର୍ଘଟଣା, ଯେଉଁଥିରେ ହଜାର ହଜାର ଲୋକ ପ୍ରାଣ ହରାଇଥିଲେ। ଏହି ଘଟଣା ସମ୍ପର୍କରେ କେତେକ ବିଷୟବସ୍ତୁ ଏହିପରି। 1974 ମସିହାରେ ଏହି ନଦୀବନ୍ଧ କାମ ଶେଷ ହୋଇଥିଲା।

1979 ଅଗଷ୍ଟ ମାସରେ ଆକସ୍ମିକ ଭାବେ ଏହାର ଉପରମୁଣ୍ଡ ଅଞ୍ଚଳରେ ପ୍ରବଳ ବର୍ଷା ହୋଇଥିଲା ଏବଂ ନଦୀବନ୍ଧର କାନ୍ଥ ଜଳର ପ୍ରବଳ ଚାପ ଯୋଗୁ ଭାଙ୍ଗି ଯାଇଥିଲା। ପ୍ରବଳ ଜଳସ୍ରୋତ ମୋରଭି ସହର ଭିତରକୁ ପଶିଯାଇ ଏକ ବିରାଟ ଅଞ୍ଚଳର ଲୋକଙ୍କୁ ମାରିଦେଲା। ସଠିକ ମୃତ୍ୟୁ ସଂଖ୍ୟା କେହି କହିପାରି ନ ଥିଲେ। ହିସାବ ଅନୁସାରେ 5 ରୁ 20 ହଜାର ଯାଏଁ ଲୋକ ଏଥିରେ ମୃତ୍ୟୁବରଣ କରିଥିଲେ। 1979 ବନ୍ୟାର ବର୍ଷ ରୂପେ ପରିଚିତ। ସାରା ଦେଶରେ ଅନ୍ତେ ବହୁତେ ମୋରଭି ପରି ଘଟଣା ଘଟିଥିଲା। ବହୁ କ୍ଷେତ୍ରରେ ବିପୁଳ ଅର୍ଥ ବ୍ୟୟ କରାଯାଇ ଯେଉଁ ଅଞ୍ଚଳରେ ଜଳସେଚନ କରିବାକୁ ନଦୀବନ୍ଧ ନିର୍ମାଣ କରାଯାଇଥାଏ, ତାହା ଜଳ ବୃଦ୍ଧିରୁ ଉଚ୍ଛୁଳିପଡ଼ି ନଦୀବନ୍ଧକୁ ଭାଙ୍ଗି ସେହି ଅଞ୍ଚଳରେ ବହୁ କ୍ଷତି ଘଟାଇଥାଏ। ପ୍ରତ୍ୟେକ ବିଭୀଷିକା ବା ବିପତ୍ତି ପରେ ବନ୍ୟା ନିୟନ୍ତ୍ରଣ ପାଇଁ ବହୁ ମତାମତ ପ୍ରକାଶ ପାଏ। ଏହା ସତ୍ୟ ଯେ କେତେକ ସ୍ୱତନ୍ତ୍ର ଆକସ୍ମିକ ବିପତ୍ତି ପାଇଁ ସାମାନ୍ୟ ନିୟନ୍ତ୍ରଣ ବ୍ୟବସ୍ଥା କାର୍ଯ୍ୟକାରୀ ହୁଏ ନାହିଁ। ମାତ୍ର ଯେଉଁ ଅବସ୍ଥା ସମ୍ପୂର୍ଣ୍ଣ ରୂପେ ଆକସ୍ମିକ ଦୁର୍ଘଟଣା ନୁହେଁ, ସେପରି ସ୍ଥଳେ ବନ୍ୟା ନିୟନ୍ତ୍ରଣର ପ୍ରକୃତ ପ୍ରତିରୋଧ ହେଉଛି ଉପରମୁଣ୍ଡ ଅଞ୍ଚଳ ଓ ନଦୀ ଶଯ୍ୟାକୁ ଗଛ ଦ୍ୱାରା ଆବୃତ୍ତ କରିବା। ଏହି ପ୍ରତିରୋଧ ବ୍ୟବସ୍ଥା ଯେ କୌଣସି ମଣିଷ ଦ୍ୱାରା ପ୍ରସ୍ତୁତ ବ୍ୟବସ୍ଥାଠାରୁ ଅଧିକ ନିର୍ଭରଯୋଗ୍ୟ।

ବହୁମୁଖୀ ନଦୀବନ୍ଧ ଯୋଜନା କାଗଜପତ୍ରରେ ଅଧିକ ଆକର୍ଷଣୀୟ। ବିଶେଷଜ୍ଞମାନେ ଏବେ ସଙ୍କଟଭାବେ ଉପସଂହାରରେ ଉପନୀତ ହେଲେଣି ଯେ ଏହାର ଅପକାର ଅତି ଭୟଙ୍କର। କଦମ, ପଞ୍ଚଟ, ନାନକ ସାଗର, ଚିକହୋଲି, ଦନ୍ତିୱାଡ଼ା ଓ ଆରନ ନଦୀବନ୍ଧ ଯୋଜନା ସମ୍ପୂର୍ଣ୍ଣ ଭାବେ ବିଫଳ ହୋଇଛି।

ବୀର ନଦୀବନ୍ଧରେ ନିର୍ମାଣ ହେବାର ଦଶ ମାସ ପରେ ଫାଟ ସୃଷ୍ଟି ହୋଇଛି। ଭଦ୍ରଧାରା ନଦୀବନ୍ଧରୁ ମଧ୍ୟ ନିର୍ମିତ ହେବାର କେତେବର୍ଷ ପରେ ଅତି ବିପଜ୍ଜନକ ଭାବେ ପାଣି ଝରୁଛି। ଅନେକଙ୍କ ମତରେ ବହୁ ଦିନରୁ ନିର୍ମିତ ହୋଇଥିବା ଏକ ନଦୀବନ୍ଧ, ଯେଉଁଥିରୁ ବହୁବର୍ଷ ପରେ ପାଣି ଝରୁଛି, ତାହା ନୂତନଭାବେ ନିର୍ମିତ ହୋଇ କାର୍ଯ୍ୟକ୍ଷମ ହୋଇନଥିବା ନଦୀବନ୍ଧଠାରୁ ଅତ୍ୟନ୍ତ ମାରାତ୍ମକ। ଥରେ କୃଷକମାନେ କେନାଲ ଜଳସେଚନ ଉପରେ ନିର୍ଭରଶୀଳ ହେବାପରେ ହଠାତ୍ ଏହା ବନ୍ଦ ହେବାଦ୍ୱାରା ବହୁ ଅଞ୍ଚଳରେ

ବିଭେଦ ଓ ଦୁଃଖ ସୃଷ୍ଟି କରିଥାଏ ।

ବୋଧହୁଏ ଏଠାରେ ଅନ୍ୟ ଘଟଣାପରି ମୂଳ ବିଷୟ ହେଉଛି ପରିମାପକ ଦଣ୍ଡ । ଏକ ଆଧୁନିକ ଚଳନକ୍ଷମ ଯୋଜନା, ଯେଉଁଠାରେ ଅତ୍ୟାଧୁନିକ କୌଶଳ ସୁବିଧା ନାହିଁ, ସେଠାରେ ବିଫଳତା ପୂର୍ଣ୍ଣବିପଭି ଆଣେ ନାହିଁ। ଏହା ବୋଧ ହୁଏ ଆମର ଲକ୍ଷ୍ୟ । ସୁଚୁମାଚରଙ୍କ ଭାଷାରେ, ଛୋଟ ହିଁ ସୁନ୍ଦର । ଏହା ଏକ ଆଦୃତ ତଥ୍ୟ, ଯେହେତୁ ଆମେ ଆମର ଯୋଜନା ପ୍ରଣୟନ ଆରମ୍ଭରେ ଗର୍ବିତ । ମାତ୍ର, ଏକ ଛୋଟ ପଦାର୍ଥ ଯାହାକି ଭଲ ଭାବେ କାମ କରିପାରେ, ତାହା ପାଇବା ଏକ ବଡ଼ ଅକାମୀ ପଦାର୍ଥଠାରୁ ସର୍ବଦା ଭଲ । କାମ କରୁନଥିବା ଏକ ଛୋଟ ପଦାର୍ଥ ଖୁବ କମ୍ ଜିନିଷଙ୍କୁ ଆକ୍ରାନ୍ତ କରିଥାଏ ଯେତେବେଳେ କି ଏକ ବଡ଼ ଯୋଜନାର ନିଷ୍କ୍ରିୟତା ସମଗ୍ର ଦେଶକୁ ପ୍ରଭାବିତ କରି ଦେଇଥାଏ ।

ବନ୍ୟା ହିଁ ନଦୀବନ୍ଧ ଭାଙ୍ଗିଯିବାର ଏକମାତ୍ର କାରଣ ନୁହେଁ। ସବୁଦିନିଆ କାରଣ ହେଉଛି, ନଦୀ ଅତିଶୀଘ୍ର ବଢ଼ିଯିବା ଦ୍ୱାରା ନଦୀବନ୍ଧ ଉଛୁଳିପଡ଼ିବା । ଏହି ଉଭୟ ଘଟଣା ପାଇଁ ଦାୟୀ ହେଉଛି ପଟୁ ମାଟି ଜମିବା ଏବଂ ଏହି ରୋଗ ନିରାକରଣର ମୁଖ୍ୟ ଚିକିତ୍ସା ହେଉଛି ବୃକ୍ଷରୋପଣ ।

କୃଷିପାଇଁ ବ୍ୟବହୃତ ଜଳ ଅତି ପରିଷ୍କାର ହେବାର ଆବଶ୍ୟକତା ନାହିଁ। ସାମାନ୍ୟ ମଇଳା ରହିବା, କେତେକ ମୃତ ପତ୍ର ପଡ଼ିବା କିମ୍ବା କିଛି ପନିପରିବା ପଡ଼ିରହିବା କିମ୍ବା ପଶୁପକ୍ଷୀଙ୍କ ମଇଳା ପଡ଼ିବା ଦ୍ୱାରା କୌଣସି କ୍ଷତି ଘଟେ ନାହିଁ। ଏହି ସବୁ ପଦାର୍ଥ ମାଟିକୁ ଉର୍ବର ଓ ଶକ୍ତ କରିଥାଏ ଏବଂ ସାର ପରି କାମ କରିଥାଏ । ଏଗୁଡ଼ିକ ଜୈବିକ ପଦାର୍ଥ ଏବଂ ଏହା ପ୍ରକୃତିସୃଷ୍ଟ ଭାବେ ମାଟିକୁ ଫେରିବା ଆବଶ୍ୟକ। ଯେତେବେଳେ ଅଜୈବ ପଦାର୍ଥ ନଦୀ ଜଳରେ ମିଶେ, ସେତେବେଳେ ଏହା ଦୂଷିତ ହୋଇଥାଏ ଏବଂ ଏହାର ଜଳ କୃଷି ପାଇଁ ଅନୁପଯୁକ୍ତ ହୋଇଥାଏ । ଏହିସବୁ ପଦାର୍ଥ ନଦୀକୂଳରେ ନିର୍ମିତ ହୋଇଥିବା କଳକାରଖାନାରୁ ନିର୍ଗତ ହୋଇଥାଏ କିମ୍ବା ସାର ଓ ପୋକମରା ଔଷଧ ରୂପେ କୃଷିକ୍ଷେତ୍ରରେ ବ୍ୟବହୃତ ହେଉଥିବା ପଦାର୍ଥ ଧୋଇ ହୋଇ ନଦୀଜଳରେ ମିଶିଥାଏ ।

ସବୁଠାରୁ ବଡ଼ ପ୍ରଦୂଷଣକାରୀ କଳକାରଖାନାଗୁଡ଼ିକ ନିଜର ବିଷାକ୍ତ ବସ୍ତୁକୁ ନଦୀ ଜଳରେ ଛାଡ଼ିଥାନ୍ତି । ଏହା କିପରି ଭାବେ ନଦୀକୁ ଆକ୍ରାନ୍ତ କରିଥାଏ ? ଜଳର ରଙ୍ଗରୁ ଏହା ସ୍ପଷ୍ଟ ଜଣାପଡ଼େ। ରାସାୟନିକ ଦ୍ରବ୍ୟର

ଗୁଣ ଅନୁସାରେ ହୁଏତ ଏହା ଘନ କଳା, ନାଲି କିମ୍ବା ନୀଳ ରଙ୍ଗର ହୋଇଥାଏ। ସାଧାରଣତଃ ଏହି ଜଳ ତାର ଅମ୍ଳଜାନ ଅଂଶ ହରାଇଥାଏ ଯଦ୍ଦ୍ୱାରା ଉଦ୍ଭିଦ, ପ୍ରାଣୀ ଭଳି କୌଣସି ପ୍ରକାର ଜୀବନ୍ତ ବସ୍ତୁ ଏଥିରେ ବଞ୍ଚିପାରନ୍ତି ନାହିଁ। ମାଛ, ଉଦ୍ଭିଦରାଜି, ଛୋଟ କୀଟପତଙ୍ଗ, ସମସ୍ତେ ପାଣି ଭିତରେ ମିଶିଥିବା ଏହି ଉତ୍କଟ ରାସାୟନିକ ପଦାର୍ଥ ଦ୍ୱାରା ଆକ୍ରାନ୍ତ ହୋଇ ମରିଯାଆନ୍ତି। ପାଣି ଭିତରେ ଥିବା ସମସ୍ତ ଜୀବନଚକ୍ରକୁ ହତ୍ୟା କରାଯାଏ ଏବଂ ଯାହା ବଞ୍ଚିରହେ ତାହା ହେଲା ବହଳିଆ କଳା ରଙ୍ଗର ଦ୍ରବଣ, ଯାହାକି ଆଗକୁ ଧୀରେ ଧୀରେ ଗତିକରି ଯିବା ପଥରେ ସମସ୍ତ ଜୀବନ୍ତ ପଦାର୍ଥକୁ ମାରି ଚାଲିଥାଏ। ଏକ ସୁନ୍ଦର, ମନୋରଞ୍ଜନକାରୀ ସୁଉଜ୍ଜ୍ୱଳ ନଦୀର ଅବସ୍ଥା ଶେଷରେ ଏହିପରି ହୁଏ ଯାହାକି ନିଜ ଭିତରେ ବହୁ ଉନ୍ନତ ଜୀବନଚକ୍ରକୁ ଏକଦା ଚଳଚଞ୍ଚଳ କରି ରଖିଥାଏ।

ଏହା ଚିନ୍ତା କରିବା ବିସ୍ମୟକର ଯେ ଗୋଟିଏ କାରଖାନା ଗୋଟିଏ ନଦୀର ବିସ୍ତୃତ ଜଳ ସମ୍ପଦକୁ ନଷ୍ଟ କରିଦେବାକୁ ସକ୍ଷମ। ନଦୀ ସାଧାରଣତଃ ଜାତୀୟ ସମ୍ପତ୍ତି। ଏହା ମଧ୍ୟ ବହୁ ରାଜ୍ୟ ମଧ୍ୟ ଦେଇ ପ୍ରବାହିତ ହୋଇଥାଏ ଏବଂ ବହିଯାଉଥିବା ଅଞ୍ଚଳକୁ ଏହା ଶସ୍ୟଶ୍ୟାମଳା କରିଥାଏ। କିନ୍ତୁ ବଡ଼ ବଡ଼ ନଦୀ ଶହ ଶହ ମାଇଲ ବିଶିଷ୍ଟ ଏବଂ ସେମାନେ ବହି ଯାଉଥିବା ପ୍ରତ୍ୟେକ ଅଞ୍ଚଳର ଜୀବନ୍ତ ବସ୍ତୁର ଓ ଧନ ସମ୍ପଦର ଭଣ୍ଡାର। କୌଣସି ନଦୀ ପାଇଁ ବିପଦ ସୃଷ୍ଟି କରି ଏହାକୁ ପ୍ରଦୂଷିତ କରୁଥିବା କୌଣସି ଗୋଟିଏ କଳ କାରଖାନାକୁ ପରୀକ୍ଷା କରିବା ସହଜ ଯଦି ଏହା ନଦୀ ପଥର ଅଞ୍ଚଳ ମଧ୍ୟରେ ଅବସ୍ଥିତ ହୋଇଯାଏ। 1974 ଜଳ ପ୍ରଦୂଷଣ ବୈଧାନିକ ନୀତି ଦ୍ୱାରା ଆମ ନଦୀରେ ଏହିପ୍ରକାର ସ୍ୱାର୍ଥପର ପ୍ରଦୂଷଣ ପ୍ରକ୍ରିୟାକୁ ରୋକାଯିବାର ବ୍ୟବସ୍ଥା ରହିଛି। ଯଦି ଏହା କଠୋର ଭାବେ ପାଳନ କରାଯାଆନ୍ତା, ତେବେ ହୁଏତ ଏହି ସମସ୍ୟାକୁ ଦୂର କରାଯାଇପାରନ୍ତା।

ଏକ ଛୋଟ ନାଟକୀୟ ପ୍ରଦୂଷଣ ଘଟେ ଯେତେବେଳେ ନଦୀ ନିକଟବର୍ତ୍ତୀ ଅଞ୍ଚଳରେ ଅତ୍ୟଧିକ ପରିମାଣର ରାସାୟନିକ ପଦାର୍ଥ ଓ ସାର ଏବଂ ପୋକମରା ଔଷଧ ବ୍ୟବହାର କରାଯାଏ। ଚାଷୀମାନେ ଅଧିକ ଉତ୍ପାଦନ ପାଇଁ ପ୍ରଚୁର ରାସାୟନିକ ସାର ବ୍ୟବହାର କରିଥାନ୍ତି ଏବଂ ଅଧିକାଂଶ ସମୟରେ ଅନିଷ୍ଟକାରୀ ପୋକ ଦାଉରୁ ଫସଲକୁ ରକ୍ଷା କରିବାକୁ ସେମାନେ ପୋକମରା ଔଷଧ ଛିଞ୍ଚିଥାନ୍ତି। ଯଦି ଚାଷଜମି ନଦୀ ନିକଟରେ ଥାଏ, ତେବେ ବର୍ଷାଜଳ ଏହି

ସବୁ ରାସାୟନିକ ପଦାର୍ଥକୁ ନଦୀ ଭିତରକୁ ଧୋଇନିଏ। ଏହାର ପରିମାଣ ଅନୁସାରେ ନଦୀଜଳ ଅଧିକ ବା କମ ପରିମାଣରେ ପ୍ରଦୂଷିତ ହୋଇଥାଏ। କେତେକ କ୍ଷେତ୍ରରେ ଏହା ବହୁ ମାଛ ଓ ଜୀବଙ୍କୁ ମାରିଦେବା ବେଳେ ଅନେକ କ୍ଷେତ୍ରରେ ଏହା ପାଣିକୁ ଅସ୍ୱାସ୍ଥ୍ୟକର ବା ଅବ୍ୟବହୃତ କରିଦିଏ। ଭଲ ଚାଷଜମି ଅଞ୍ଚଳରୁ ବହୁ ପରିମାଣର ଏପରି ରାସାୟନିକ ପଦାର୍ଥ ଆଶା କରାଯାଏ ନାହିଁ। ମାତ୍ର ଯେଉଁ ସ୍ଥାନରେ କୃଷି କ୍ଷେତ୍ର କୌଣସି ଏକ ଜଳାଶୟକୁ, ଯଥା ନଦୀ, ଝରଣା ଅବା ପୋଖରୀକୁ ଲାଗିଥାଏ, ସେଠାରେ ବହୁଦିନ ଯାଏଁ ଅନେକ କ୍ଷତି ଘଟେ ଓ ବହୁ ପ୍ରକାର ଜୀବ ସମ୍ପଦ ଓ ଏମାନଙ୍କ ବଂଶବୃଦ୍ଧି ଉପରେ ଏହା କୁପ୍ରଭାବ ପକାଇଥାଏ।

ଏହା ନଦୀ ଦୂଷିତ ହେବାର ଏକମାତ୍ର କାରଣ ନୁହେଁ। ଏହା ହେଉଛି ଏକ ଅତ୍ୟାଧୁନିକ ବ୍ୟବସ୍ଥା। ପୁରାତନ ନଦୀ ପ୍ରଦୂଷଣର ଏକ ଦିଗ ହେଉଛି ଲଞ୍ଚ ଓ ବଡ଼ ବଡ଼ ବୋଟ୍‌ରୁ ବାହାରୁଥିବା ତେଲ। ଆମେ ଜାଣୁ ଯେ ନଦୀ ହେଉଛି ପରିବହନ ବ୍ୟବସ୍ଥାର ଏକ ସ୍ଥାୟୀ ପଥ। ଉଦାହରଣ ସ୍ୱରୂପ, ବ୍ରହ୍ମପୁତ୍ର ଭଳି ନଦୀରେ ବୋଟ ଚଳାଚଳରେ ଅତି ଭିଡ଼ ହୋଇଥାଏ। ନଦୀ ଜଳକୁ ଏମାନେ ସ୍ୱତନ୍ତ୍ର ଭାବେ ଦୂଷିତ ପଦାର୍ଥ ଛାଡ଼ିଥାନ୍ତି। ଏ କ୍ଷେତ୍ରରେ ନଦୀପାଣି ବ୍ୟବହାର କରୁଥିବା ସବୁ ଶ୍ରେଣୀର ଲୋକେ ଏହା କରିଥାନ୍ତି, କେବଳ ଗୋଟିଏ ଦୁଇଟି କଳ କାରଖାନା ଏହା କରେ ନାହିଁ। ଯେ କୌଣସି ପ୍ରକାର ପ୍ରଦୂଷଣ ମଣିଷଦ୍ୱାରା ହେଉଥିବା ପ୍ରଦୂଷଣ ସହ ସମାନ ନୁହେଁ। ନଦୀକୁ ପ୍ରଦୂଷିତ କରୁଥିବା ପଦାର୍ଥ ଧୂଳି, ମାଟି କାଦୁଅ କିମ୍ବା ଝାଟିମାଟି ନୁହେଁ।

ଜୈବିକ ପଦାର୍ଥ ନଦୀ ବା ହ୍ରଦକୁ ପ୍ରଦୂଷିତ କରେନାହିଁ କହିବା ପରେ ଏହାକୁ ପ୍ରମାଣ କରିବା ଆବଶ୍ୟକ। ଯେଉଁଠାରେ ବାହ୍ୟ ଜୈବ ପଦାର୍ଥ ଅତ୍ୟଧିକ ଥାଏ, ଶ୍ରୀନଗର ଡ଼ାଲ ହ୍ରଦ ପରି ସେଠାରେ ଥିବା ଗୃହଡ଼ଙ୍ଗାରୁ ଲୋକେ ଆବର୍ଜନା ହ୍ରଦ ଭିତରକୁ ଫିଙ୍ଗି ଦେଇଥାନ୍ତି ଏବଂ ବହୁ ପରିମାଣର ପଦାର୍ଥ ମିଶି ଏକ ପ୍ରଦୂଷଣକାରୀ ପଦାର୍ଥ ସୃଷ୍ଟି କରିଥାନ୍ତି। ମାତ୍ର ଗୋଟିଏ ପ୍ରକାରର ବହୁ ପଦାର୍ଥକୁ ଚଳାଇନେବା ଅସମ୍ଭବ ହୋଇପଡ଼େ ଏବଂ ହ୍ରଦର ଜଳ ଅସ୍ୱଚ୍ଛ ଓ ପ୍ରାକୃତିକ ଅବସ୍ଥା ଦୁର୍ବଳ ହୋଇପଡ଼େ, ମାଛ ମରିଯାଆନ୍ତି, କାରଣ ଅମ୍ଳଜାନ ଦୂଷିତ ପଦାର୍ଥ ଦ୍ୱାରା ଶୋଷିତ ହୋଇଯାଏ ଏବଂ ଜଳଜ ପ୍ରାଣୀକୁ ବଞ୍ଚାଇ ରଖିବାକୁ କିଛି ନ ଥାଏ।

ଆମେ ଜାଣୁ ଯେ ଥରେ କୌଣସି ଜିନିଷ ଗଭୀର ଭାବେ ନଷ୍ଟ ହୋଇଗଲେ, ଏହା ହୁଏତ ଲୁଗା, ମଟରଗାଡ଼ି କିମ୍ବା ବଗିଚା ହୋଇପାରେ, ଏହାକୁ ପୁନର୍ବାର ଚଳନକ୍ଷମ କରିବା ବଡ଼ କଷ୍ଟସାଧ୍ୟ। ଖଣ୍ଡେ ଲୁଗା ଥରେ ଅଧିକ ମଇଳା ହୋଇଗଲେ ଏହାକୁ ପ୍ରକୃତରେ ସଫା କରିବା କଷ୍ଟକର ହୋଇପଡ଼େ। ଅନ୍ୟ ପକ୍ଷରେ, ଯଦି ଏହା ଉପରେ ଦୃଷ୍ଟି ରଖାଯାଏ ବା କ୍ରମାଗତ ସଂରକ୍ଷଣ କରାଯାଏ, ତେବେ ଏହା ବହୁଦିନ ଯାଏଁ ଭଲ ରହେ। ଏହା ପ୍ରତ୍ୟେକ ପରିବେଶ ପାଇଁ ସତ୍ୟ। ଏକ ଭଲ୍ୟା ଜଳଧାରା ଯାହାକି ଭଲ ଅବସ୍ଥାରେ ଥାଏ, କେବେ ପ୍ରଦୂଷିତ ବା ଅତ୍ୟଧିକ ବ୍ୟବହୃତ ହୁଏ ନାହିଁ ଏବଂ ଏହା ଆମେ ଆବଶ୍ୟକ କରୁଥିବା ସବୁ କାର୍ଯ୍ୟ କରିଥାଏ। ଏହା ଆମକୁ ପରିଷ୍କାର ପାଣି, ମାଛ ଓ ସବୁଦିନ ପାଇଁ ପରିବହନ ବ୍ୟବସ୍ଥା ଯୋଗାଇଥାଏ। ଥରେ ଏହାକୁ ଗୋଟିଏ ସୀମାଯାଏଁ ପ୍ରଦୂଷିତ କରିଦେଲେ ଏହାକୁ ପୂର୍ବାବସ୍ଥାକୁ ଫେରାଇ ଆଣିବା କଷ୍ଟକର ହୋଇ ପଡ଼େ।

ନଦୀ ନିଜେ ଚିରସ୍ରୋତା ଓ କାର୍ଯ୍ୟକ୍ଷମ ହେବାପାଇଁ କୌଣସି ବିଶେଷ ଯତ୍ନର ଆବଶ୍ୟକ କରେ ନାହିଁ। ଏଥିପାଇଁ ଏହାକୁ ଅତ୍ୟଧିକ ଅପବ୍ୟବହାରରୁ ମୁକ୍ତ ରଖିବା ଏବଂ ବିଶ୍ୱାସର ସହିତ ଏହାକୁ ନିଜକୁ ସୁସ୍ଥ ରଖିବାକୁ ଛାଡ଼ି ଦିଆଯିବା ଉଚିତ। ପାଣି ଯେତେ ବେଗଗାମୀ ହେବ, ନଦୀ ସେତେ ପରିଷ୍କାର ରହିବ। ଯେଉଁଠାରେ ଜଳପ୍ରପାତ ରହିଛି ତାହା ଯେତେ ଛୋଟ ହେଲେ ବି ସେଠାକାର ପାଣି ଅମ୍ଳଜାନ ମିଶ୍ରିତ ହୋଇ ବିଶୁଦ୍ଧ ରହିଥାଏ। ବହୁ ଜଳପ୍ରପାତ ଥିବା ଅର୍ଥ ନଦୀଟି ଆପଣାଛାଏଁ ପ୍ରତି କେତେମାଇଲ ବ୍ୟବଧାନରେ ପରିଷ୍କାର ହୋଇଯାଏ।

ବର୍ତ୍ତମାନ ଅବସ୍ଥାରେ ଆମର ବହୁ ନଦୀ ଦୁଇପ୍ରକାର ପ୍ରଦୂଷଣକାରୀ ପଦାର୍ଥ ଦ୍ୱାରା ଆତଙ୍କିତ। ଆଧୁନିକ ପ୍ରଦୂଷିତ ରାସାୟନିକ ପଦାର୍ଥ ଏବଂ ପୁରାତନ ପ୍ରଦୂଷଣ ପଦାର୍ଥ, ମଣିଷ ଦ୍ୱାରା ତ୍ୟାଗ କରାଯାଉଥିବା ମଇଳା ଓ ଆବର୍ଜନା। ଆମେ ନଦୀଜଳରେ ରାସାୟନିକ ପଦାର୍ଥକୁ ନିୟନ୍ତ୍ରଣ କରିବାକୁ କେତେକ ନିୟମ ପ୍ରଣୟନ କରିଛୁ। ଆମ ଜଳ ସଂପଦକୁ ରକ୍ଷା କରିବା ପାଇଁ ଏଗୁଡ଼ିକୁ କଠୋର ଭାବେ କାର୍ଯ୍ୟକାରୀ କରିବା ଦରକାର। ମଣିଷ ଦ୍ୱାରା ତ୍ୟାଗ କରାଯାଉଥିବା ଆବର୍ଜନାରୁ ପ୍ରଦୂଷଣ ରୋକିବା କଷ୍ଟସାଧ୍ୟ ଯେହେତୁ ଜନସଂଖ୍ୟା ବଢ଼ିଚାଲିଛି ଏବଂ ସ୍ୱାସ୍ଥ୍ୟରକ୍ଷା ପାଇଁ ଆମର ଯୋଜନା ନୂତନ ଆବଶ୍ୟକତା ଓ ପରିବେଶକୁ ନିୟନ୍ତ୍ରଣ କରିପାରୁନାହିଁ।

ସେହି ମୁହୂର୍ତ୍ତରେ ଆମେ ନଦୀ ମାନଙ୍କର ଦାନକୁ ଏକତ୍ର କରି ବିଚାର କରିବା ଉଚିତ ଯେ ସେମାନେ ସବୁବେଳେ ଆମପାଇଁ ଶୁଭଙ୍କର ପଦାର୍ଥ ନେଇଆସିଛନ୍ତି। ସେମାନେ ସବୁବେଳେ ବିଭବ ଓ ଉନ୍ନତି ସେମାନଙ୍କ ପାଇଁ ଆଣନ୍ତି, ଯେଉଁମାନେ ନଦୀ ଉପରେ ନିର୍ଭରଶୀଳ। ଯେତେବେଳେ ଆମେ ନଦୀ କୂଳ ସହିତ ସଂଶ୍ଳିଷ୍ଟ ହୋଇପଡୁ, ପର୍ବତ କଡର ବୃକ୍ଷରାଜିକୁ କାଟିଦେଉ, ଯାହାଫଳରେ ଏହା ପଟୁମାଟି ସୃଷ୍ଟିକରି ନଦୀ ଜଳକୁ ଗୋଳିଆ କରିଦିଏ ଏବଂ ଏହାକୁ ପ୍ରଦୂଷିତ କରି ଏହାର ଜୀବନରକ୍ଷାକାରୀ ଧର୍ମକୁ ନଷ୍ଟ କରି ଦେଇ ଏଥିରେ ହଠାତ୍ ବନ୍ୟା ଓ ତଦ୍‌ଜନିତ ବହୁ ପ୍ରାକୃତିକ ବିପତ୍ତି ସୃଷ୍ଟି କରେ, ଯାହାକି ଆମ ଦେଶରେ ଦେଖାଯାଉଥିବା ଏକ ନିୟମିତ ଘଟଣା।

## ପୋଖରୀ

ବର୍ତ୍ତମାନ ଯାଏଁ ଆମେ ଜଳ ବିଷୟରେ ଆଲୋଚନା କଲେ ଯାହାକି ସର୍ବଦା ଗତିଶୀଳ। ମାତ୍ର, ସ୍ଥିର ଜଳର ଅବସ୍ଥା କଣ, ବିରାଟକାୟ ହ୍ରଦ, ଛୋଟ ପୋଖରୀ, ଶୁଖିଲା ପାହାଡିଆ ଦେଶ ମଝିରେ ଦେଖାଯାଉଥିବା ଜଳାଶୟ କିମ୍ବା ଯେଉଁ ଅଞ୍ଚଳରେ ଶୁଖିଲା ଓ ଓଦା ଅଞ୍ଚଳ ପରସ୍ପର ମିଶି ରହିଥାଏ, ଅର୍ଥାତ୍ ଏହି ଅଞ୍ଚଳ ଏକ ଓଦା ବ୍ଲଟିଙ୍ଗ ପେପର ପରି, ଏହା ଏକ ପୂରା ଭୂମି ବା ଏକ ସମ୍ପୂର୍ଣ୍ଣ ହ୍ରଦ ନୁହେଁ। ଏହିପ୍ରକାର ଜଳଭୂମିକୁ ଏକତ୍ରିତଭାବେ ସନ୍ତସନ୍ତିଆ ଅଞ୍ଚଳ କୁହାଯାଏ।

କିଛି ବର୍ଷ ପୂର୍ବେ ସନ୍ତସନ୍ତିଆ କାଦୁଆ ଅଞ୍ଚଳକୁ ଅନୁର୍ବର ପଡିତ ଜମି ରୂପେ ବିବେଚନା କରାଯାଉଥିଲା ଏବଂ ଏହାକୁ କୃଷି, ଜଙ୍ଗଲ କିମ୍ବା ଗୃହନିର୍ମାଣ କରିବାପାଇଁ ବ୍ୟବହାର କରାଯାଉନଥିଲା। ତେଣୁ ବିଚାର କରାଗଲା ଯେ ଏହି ଜମିକୁ ଠିକ୍ କରିବାର ବାଟ ହେଉଛି ଏହାର ଉନ୍ନତି କରି ଏଥିରୁ ପାଣି ବାହାର କରି ଏହାକୁ ଶୁଖିଲା ଭୂମିରେ ପରିଣତ କରି କୃଷି କିମ୍ବା ଗୃହନିର୍ମାଣ ପାଇଁ ବ୍ୟବହାର କରିବା। ସବୁ ସନ୍ତସନ୍ତିଆ ଜମି ପ୍ରାୟ ଅସ୍ୱାସ୍ଥ୍ୟକର ବୋଲି ବିବେଚନା କରାଯାଉଥିଲା ଏବଂ ଏହା ମଶାମାନଙ୍କର ବୃଦ୍ଧିର ପ୍ରକୃଷ୍ଟ କ୍ଷେତ୍ର ରୂପେ ପରିଗଣିତ ହେଉଥିଲା। ଆମେ ଏବେ ଜାଣିଲୁଣି ଯେ ସନ୍ତସନ୍ତିଆ ଅଞ୍ଚଳ ପାଣି ଜମାକରି ରଖିବା ପାଇଁ ପ୍ରକୃଷ୍ଟ କ୍ଷେତ୍ର। ଗ୍ରୀଷ୍ମ ଋତୁରେ ଯେତେବେଳେ ସନ୍ତସନ୍ତିଆ ଅଞ୍ଚଳର ଚତୁଃପାର୍ଶ୍ୱସ୍ଥ ଜମି ଶୁଖିଯାଏ, ଏହି ଅଞ୍ଚଳରୁ ଜଳ ଛାଣିହୋଇ ଭୂମିତଳ ଜଳଧାରାକୁ ପ୍ଲାବିତ କରି ନିକଟବର୍ତ୍ତୀ କୂପକୁ ପୁନର୍ବାର ଜଳ ଯୋଗାଇଥାଏ। ଯଦି ଏହି ସନ୍ତସନ୍ତିଆ ଅଞ୍ଚଳ ଉନ୍ନତ

ହୋଇଥାଏ, ତେବେ ଏହା ନିକଟରେ ଥିବା କୂଅ ପ୍ରାୟ ଶୁଖିଯାଏ। ଏବଂ ଆମେ ଯେଣୁ ଜାଣୁ ଯେ ଜଳ ମିଳିବା ଅତି ଦରକାରୀ, ତେଣୁ ସବୁଦିନେ ଏଠାରୁ ଜଳପାଇବାକୁ ହେଲେ ଏହି ସନ୍ତସନ୍ତିଆ ଅଞ୍ଚଳକୁ ପ୍ରାକୃତିକ ପରିବେଶ ଭିତରେ ଛାଡିଦେବା ଉଚିତ। ଏହାକୁ ଅଧିକ ଲାଭ ଆଶାରେ ଅନ୍ୟ ଦିଗରେ ବ୍ୟବହାର କରିବା ଉଚିତ ନୁହେଁ।

ହ୍ରଦ ଓ ପୋଖରୀ ନିଶ୍ଚିତ ଭାବେ ଜଳ ଯୋଗାଉଥିବା ଏକ ଜଳପୂର୍ଣ୍ଣ ସ୍ଥାନ। ଅନ୍ୟ କାର୍ଯ୍ୟପାଇଁ ଏହି ସ୍ଥାନରୁ ପାଣି ବୋହି ନେବାରେ ମଧ୍ୟ ବିଶେଷ ବିପଦ ନଥାଏ। ଏଠାରୁ ପାଣିକୁ ଜାଣିଶୁଣି ବୋହି ନେବାରେ ଯଦିଓ ସେପରି ବିପଦ ନଥାଏ, ମାତ୍ର ହତାଦର ବା ଖରାପ ପରିଚାଳନା ଦ୍ୱାରା କିମ୍ବା ପଙ୍କ ଜମିବା ଓ ପ୍ରଦୂଷଣ କିମ୍ବା ଖରାପ ପ୍ରକାର ଗଛବୃକ୍ଷ ଉଠିବା ଦ୍ୱାରା ଜଳ ପରିମାଣ ଏଠାରୁ କମିଯାଇ ଏହା ଶେଷରେ ଶୁଖିଯାଏ।

ଏହା କିପରି ଘଟେ ସେ ବିଷୟରେ ଆଲୋଚନା କରାଯିବା ଦରକାର। ହ୍ରଦ ଓ ପୋଖରୀ ଏହି ଦୁଇଟି ଶବ୍ଦ ବ୍ୟବହାର କରିବା ପରିବର୍ତ୍ତେ ଆମେ କେବଳ ପୋଖରୀ ବିଷୟରେ ଆଲୋଚନା କରିବା ଯେ କି ବୃହତ୍ ଓ କ୍ଷୁଦ୍ର ଜଳପୂର୍ଣ୍ଣ ଅଞ୍ଚଳକୁ ବୁଝାଇଥାଏ।

ଆମେ ଜାଣୁ ଯେ ପୋଖରୀ ଏପରି ଏକ ସ୍ଥାନ ଯେଉଁଠାରେ ଚାରିଆଡୁ ଭୂମି ଗଡ଼ାଣିଆ ହୋଇ ଏକ ଗହୀରିଆ ସ୍ଥାନ ସୃଷ୍ଟି କରିଥାଏ। ଏଠାରେ ପ୍ରତି ବର୍ଷା ପରେ ଚାରିଆଡୁ ପାଣି ଗଡ଼ିଆସି ପୋଖରୀ ସୃଷ୍ଟି କରିଥାଏ। ଯାହାକି ତ୍ରିକୋଣଭୂମି ଅଞ୍ଚଳରେ ଦେଖାଯାଇଥାଏ। ଏଠାରେ ପାଣି ଅତିଶୀଘ୍ର ମାଟି ଭିତରକୁ ଭେଦିଯାଏ ନାହିଁ ଏବଂ ବର୍ଷସାରା ଏଠାରେ ପୋଖରୀ ଜଳପୂର୍ଣ୍ଣ ରହିଥାଏ। ମାତ୍ର, ଯଦି ପୋଖରୀ ଚାରିପାଖର ଗଡ଼ାଣିଆ ସ୍ଥାନରେ ଘାସଗଛ ରହି ନଥାଏ କିମ୍ବା ଯଦି ସେ ସ୍ଥାନକୁ କୃଷି କାର୍ଯ୍ୟପାଇଁ ହଳ କରାଯାଇଥାଏ; ବର୍ଷା ପାଣି ପ୍ରଚୁର ପରିମାଣର ପଙ୍କ ଭିତରକୁ ଧୋଇନିଏ ଏବଂ ନଦୀ କ୍ଷେତ୍ରରେ ଯେପରି ଘଟିଥାଏ, ପୋଖରୀ ମଧ୍ୟ ପଟୁମାଟି ପୂର୍ଣ୍ଣ ହୋଇଯାଏ ଓ ଏହାର ଜଳଧାରଣ କ୍ଷମତା ବହୁତ କମିଯାଏ। ଏହା ପ୍ରାୟ ଅଧିକାଂଶ ପ୍ରାକୃତିକ ପୋଖରୀ, ଯାହାକି ମଣିଷର ବାସସ୍ଥଳୀ ନିକଟରେ ଥାଏ, ସେ କ୍ଷେତ୍ରରେ ଘଟିଥାଏ, କାରଣ ମଣିଷମାନଙ୍କୁ ଏହାର ହୁଡ଼ା ଉପରେ ଚାଷ କାମ କରିବାରୁ ନିବୃତ୍ତ ରଖାଯାଇ ପାରେ ନାହିଁ। ଏଣୁ ପଙ୍କ ବୃଦ୍ଧି ଘଟିଥାଏ। ପୋଖରୀ କୂଳକୁ ହଳକରି ସେଠାରେ ଶସ୍ୟ ଚାଷ କରିବା

ହେଉଛି ଏକ ଭୀଷଣ ସ୍ୱାର୍ଥପରତା। କାରଣ, ଯେତେବେଳେ ବ୍ୟକ୍ତିଗତ ଭାବେ ଚାଷ କରିଥିବା ଲୋକ ଉପକୃତ ବା ଲାଭବାନ ହୁଏ, ସମଗ୍ର ଅଞ୍ଚଳର ବାସିନ୍ଦା ତାଙ୍କ ଯୋଗୁଁ ହଇରାଣ ହୋଇଥାନ୍ତି। ଯେଉଁ ପୋଖରୀର ତଥ୍ୟାବଳୀ ସଂଗୃହୀତ ହୋଇ ରଖାଯାଇଛି, ସେଥିରୁ ଦେଖାଯାଏ ଯେ ଗତ 40ବର୍ଷ ଭିତରେ ଏହାର ଜଳଧାରଣ କ୍ଷମତା ପ୍ରାୟ ଅଧା ହୋଇଯାଇଛି।

ଆମେ ନିଜେ ଏକ ଗୁରୁତ୍ୱପୂର୍ଣ୍ଣ ବିଷୟ ମନେ ରଖିବା ଉଚିତ। ବିଶୁଦ୍ଧ ଜଳ ଓ ଜମାଟ ବାନ୍ଧିଥିବା ଜଳ ମଧ୍ୟରେ ବହୁ ପ୍ରଭେଦ ରହିଛି। ବିଶୁଦ୍ଧ ଜଳ ହେଉଛି ଜୀବନ୍ତ ପଦାର୍ଥ ପାଇଁ ଅତ୍ୟାବଶ୍ୟକ। ଏହାକୁ ଯେ କୌଣସି, ଏପରିକି ସବୁ କାର୍ଯ୍ୟପାଇଁ ବ୍ୟବହାର କରାଯାଇପାରେ। ଏହାର ଉପସ୍ଥିତି ଏକ ସୁସ୍ଥ ପରିବେଶର ସୂଚନା ଦିଏ। ଏକ ବସ୍ତି ନିକଟରେ ଯଦି ଗୋଟିଏ ପରିଷ୍କାର ପୋଖରୀ ଥାଏ ତେବେ ଲୋକେ ଉପକୃତ ହୋଇଥାନ୍ତି ଏବଂ ଏହା ଭଲ ବୃକ୍ଷରାଜିକୁ ଉର୍ବରତା ଯୋଗାଇବା ପାଇଁ ଉତ୍ସାହ ପ୍ରଦାନ କରିଥାଏ। ମାତ୍ର, ପୃଥିବୀ ପୃଷ୍ଠର ଏକ ଅତି ସହଜ ଘଟଣା ହେଉଛି ପାଣିକୁ ସହଜରେ ଅପରିଷ୍କାର ଓ ପ୍ରଦୂଷିତ ହେବାକୁ ଛାଡ଼ି ଦିଆଯାଏ। ଯଦି ନିକଟବର୍ତ୍ତୀ ଜମିରେ ଚାଷ ହେଉଥାଏ, ତେବେ ରାସାୟନିକ ପଦାର୍ଥ, ସାର, ପୋକମରା ଔଷଧ, ମାଟି ଧୋଇ ହୋଇ ପୋଖରୀ ଭିତରକୁ ଚାଲି ଆସେ। ଧୋବାମାନେ ଏଠାରେ ଲୁଗାସଫା କରନ୍ତି; ମଇଁଷି ଏହାର କାଦୁଅ ପାଣିରେ ବୁଡ଼ି ରହନ୍ତି। ଏହା ପାଣିକୁ ଆକ୍ରାନ୍ତ ଓ ଦୂଷିତ କରିଥାଏ। ଏହା ଅତିମାତ୍ରାରେ ସ୍ୱନିୟନ୍ତ୍ରଣ ଆବଶ୍ୟକ କରେ ଏବଂ ପାର୍ଶ୍ୱସ୍ଥ ଜନସମୂହ ଶାନ୍ତି ଶୃଙ୍ଖଳାର ସହ ଯେପରି ପୋଖରୀ ପ୍ରଦୂଷିତ ନ ହୁଏ ତାହା ଦେଖିବା ଉଚିତ। ପ୍ରଲୋଭିତ ହୋଇ ପ୍ରତ୍ୟେକ ବ୍ୟକ୍ତି ଏପରି ଭାବେ ପୋଖରୀକୁ ବ୍ୟବହାର କରିବା ଉଚିତ ଯାହାକି ତାଙ୍କୁ ଭଲ ଲାଗିବ ଏବଂ ସେ ଯେ ତାଙ୍କ ପଡ଼ିଶାଙ୍କ ପାଇଁ କିଛି କ୍ଷତି କଲେ, ସେ ବିଷୟରେ ମଧ୍ୟ ସଚେତନ ରହିବା ଦରକାର।

ସୂର୍ଯ୍ୟରଶ୍ମି ଜଳ ଉପରେ ପଡ଼ିବା ପରେ ଶୈବାଳ ଜାତୀୟ କେତେକ ଉଦ୍ଭିଦ ସୃଷ୍ଟି ହୋଇଥାନ୍ତି। ଜଳଜୀବ ଓ ଉଦ୍ଭିଦ ସେମାନଙ୍କ ସ୍ଥାନ ସୁଦୃଢ଼ କରିଥାଆନ୍ତି। ଏହା ବ୍ୟତୀତ କୀଟ ପତଙ୍ଗ, ବେଙ୍ଗ, ମାଛ ପ୍ରମୁଖ ଜୀବମାନେ ପରସ୍ପର ମଧ୍ୟରେ ସହଯୋଗ ରକ୍ଷାକରି ଚଳନ୍ତି। ପ୍ରତ୍ୟେକ ଜାତିର ଜୀବ ଅନ୍ୟ ଜାତିକୁ ନିୟନ୍ତ୍ରଣ କରିଥାଏ ଓ ନିଜକୁ ମଧ୍ୟ ନିୟନ୍ତ୍ରଣ କରିଥାଏ।

ଏଠାରେ ଏକ ପରସ୍ପର ସହଯୋଗମୂଳକ ଗୋଷ୍ଠୀ ସୃଷ୍ଟି ହୋଇଥାନ୍ତି। ଅନ୍ୟ ଭାଷାରେ ପୋଖରୀ ଭିତରେ ଜୀବମାନଙ୍କ ଭିତରେ ଏକ ସମନ୍ୱୟ ରକ୍ଷା କରଯାଇପାରିଛି। କେତେକ ସମୟରେ ବାହାରୁ କୌଣସି ଏକ ନୂତନ ଜୀବ ଏଠାକୁ ଚାଲି ଆସିଥାଏ, ଯାହାର କି ଏଠାରେ କୌଣସି ପ୍ରାକୃତିକ ଶତ୍ରୁ ନଥାନ୍ତି। କୌଣସି ଶତ୍ରୁ ନ ଥିବାରୁ ଏମାନଙ୍କ ସଂଖ୍ୟା ଅନ୍ୟମାନଙ୍କ ଠାରୁ ଅତି ମାତ୍ରାରେ ଏତେ ଶୀଘ୍ର ବଢ଼ିଯାଏ ଯେ ଖୁବ ଶୀଘ୍ର ଏମାନେ ଅନ୍ୟମାନଙ୍କୁ ଟପିଯାଇ ଶେଷରେ ସମୁଦାୟ ପୋଖରୀକୁ ବ୍ୟାପିଯାଆନ୍ତି।

ଭାରତରେ ଅଧିକାଂଶ ପୋଖରୀର ଅବସ୍ଥା ବିଲାତି ଦଳଯୋଗୁଁ ଗୁରୁତର ଭାବେ ନଷ୍ଟ ହୋଇଛି। ବିଲାତି ଦଳ ଆମର ବହୁ ସନ୍ତସନ୍ତିଆ ଅଞ୍ଚଳରେ ମାଡ଼ିଯାଇଛି ଓ ବହୁସ୍ଥାନରେ ସମୁଦାୟ ଜଳସୀମାକୁ ମାଡ଼ି ରହିଛି। ମାତ୍ର, ମନେ ରଖିବାକୁ ହେବ ଯେ ଏହି ଉଦ୍ଭିଦର ଏକ ଖରାପ ଗୁଣ ହେଉଛି ଏହା ଯେ କେବଳ ସ୍ଥାନୀୟ ଉଦ୍ଭିଦ ଉପରେ ପ୍ରଭାବ ବିସ୍ତାର କରେ, ତାହା ନୁହେଁ, ଏହା ପୋଖରୀର ସମସ୍ତ ପାଣିକୁ ମଧ୍ୟ ଶୋଷି ନେଇପାରେ। ଏହାର ଉଚ୍ଛେଦନ ପ୍ରକ୍ରିୟା ଏତେ ଅଧିକ ଯେ ଥରେ ଏହା ଏକ ପୋଖରୀରେ ମାଡ଼ିଗଲେ, ଏପରିକି ଗୋଟିଏ ଗଛ ମଧ୍ୟ ଏଥିପାଇଁ ଯଥେଷ୍ଟ, ଏହା ସମୁଦାୟ ପୋଖରୀକୁ ଶୁଷ୍କ କରିଦିଏ। କିଛି ବର୍ଷ ଭିତରେ ପୋଖରୀଟି ଶୁଷ୍କ ଭୂମିରେ ପରିଣତ ହୋଇଯାଏ। ଏପ୍ରକାର ଏକ ମାରାତ୍ମକ ଉଦ୍ଭିଦକୁ ନିୟନ୍ତ୍ରଣ ଓ ଉଠାଇଦେବା କଷ୍ଟକର। ଯଦି ଗୋଟିଏ ପୋଖରୀ ଅପରିଷ୍କାର ଥାଏ, ତେବେ କେତେବେଳେ ହେଲେ ମଧ୍ୟ ଏହାକୁ ସଫା କରାଯିବାର ସମ୍ଭାବନା ଥାଏ, ମାତ୍ର ଥରେ ଏହା ଶୁଖିଗଲେ ଆମେ ସବୁଦିନ ପାଇଁ ସବୁବେଳେ ପାଉଥିବା ପାଣିରୁ ବଞ୍ଚିତ ହୋଇଥାଉ ଏବଂ ଏହାର ଫଳ କଳ୍ପନାତୀତ ଭାବେ ସ୍ଥାନୀୟ ଅଞ୍ଚଳ ପାଇଁ ଦୁଃଖପ୍ରଦ ହୋଇଥାଏ।

# ସାଗର

୧

## ବିଶାଳ ମହାସମୁଦ୍ର

ସାଗର ହିଁ ପୃଥିବୀର ପ୍ରକୃତ ଜଳଭଣ୍ଡାର। ପୃଥିବୀ ପୃଷ୍ଠରେ ବ୍ୟବହୃତ ହେଉଥିବା ପ୍ରତ୍ୟେକ ବୁନ୍ଦା ଜଳ ସମୁଦ୍ରରୁ ଆସିଥାଏ ଓ ପୁଣି ଶେଷରେ ସମୁଦ୍ରକୁ ଫେରିଯାଇଥାଏ।

ଗୋଟିଏ ସମୟରେ ସାଗରଜଳ ଲୁଣିଆ ନ ଥିଲା ଏବଂ ଆମର କଳପାଣି ସହିତ ସ୍ୱାଦରେ ଏହା ସମାନ ଥିଲା। ନିୟୁତ ନିୟୁତ ବର୍ଷ ଧରି ସମୁଦ୍ରରେ ପଡ଼ିଥିବା ନଦୀ ବାଲି ଓ ମାଟି ସହିତ ଲବଣ ସ୍ଥଳଭାଗରୁ ଧୋଇ ନେଇ ସମୁଦ୍ର ଜଳରେ ମିଶାଇବା ପରେ ଏହା ଲବଣାକ୍ତ ହୋଇଗଲା। ବର୍ତ୍ତମାନ ସୁଦ୍ଧା ମଧ କ୍ରମେ ସମୁଦ୍ର ପାଣି ଲୁଣିଆରୁ ଅଧିକ ଲୁଣିଆ ହେଉଛି, ବୋଧହୁଏ ଏହା ପୂର୍ବାପେକ୍ଷା ଅଧିକ ଜୋରରେ ହେଉଛି, କାରଣ ପୂର୍ବଠାରୁ ଅଧିକ ପରିମାଣର ଅଳିଆ ଆବର୍ଜନା ଏବେ ସାଗର ବକ୍ଷକୁ ଧୋଇଯାଉଛି।

ଯେତେବେଳେ ସମୁଦ୍ରଜଳ ବାଷ୍ପୀକରଣ ହୋଇ ବାୟୁମଣ୍ଡଳକୁ ଚାଲିଯାଏ, ଲବଣ ହିଁ ସମୁଦ୍ର ଜଳରେ ରହିଯାଏ ଓ ଏହାକୁ ଅଧିକ ଲବଣାକ୍ତ କରେ। ଏହି ଜଳକଣା ପରେ ମେଘମାଳା ସୃଷ୍ଟି କରେ, ପରେ ଏହି ମେଘମାଳା ପାହାଡ଼ ପର୍ବତ ଭଳି କଠିନ ପଦାର୍ଥ ଦେହରେ ମାଡ଼ ହେବା ପରେ କିମ୍ବା ଥଣ୍ଡା ବାୟୁ ସଂସ୍ପର୍ଶରେ ଆସିବା ପରେ ବର୍ଷା ରୂପେ ପୃଥିବୀରେ ପଡ଼େ। ବର୍ଷାପାଣି ପରେ ନଦୀରେ ମିଶେ ଓ ସମୁଦ୍ରକୁ ବହିଯାଏ। ସାହିତ୍ୟିକ ଭାଷାରେ ଏହି ପାଣି ହିଁ ଏକ ବସ୍ତୁ ଯେ କି ମେଘମାଳା, ବର୍ଷା, ନଦୀ ଓ ସମୁଦ୍ରକୁ ଏକ ଚକ୍ରପଥରେ ନିୟୁତ ନିୟୁତ ବର୍ଷ ଧରି ଘୂରାଇ ବୁଲାଉଛି।

ଦଶ ହଜାର ବର୍ଷ ତଳେ ପୃଥିବୀରେ ଯେତିକି ପରିମାଣର ଜଳ ଥିଲା, ବର୍ତ୍ତମାନ ପ୍ରାୟ ସେତିକି ପରିମାଣର ଜଳ ରହିଛି। ଏହା ବଢୁନାହିଁ କି କମୁନାହିଁ। ଏହା କେବଳ ପରିବର୍ତ୍ତିତ ହୋଇ ପାରୁଥିବା ଏହାର ଆକାର ଓ ସ୍ଥାନ ପରିବର୍ତ୍ତନ କରୁଛି ଏବଂ ବର୍ତ୍ତମାନର ଏକ ସମୁଦ୍ରର ଅଂଶ ସୃଷ୍ଟି କରୁଛି। ବାୟୁମଣ୍ଡଳର ଜଳକଣା, ବର୍ଷାଭାବେ ପଡୁଥିବା ଜଳବିନ୍ଦୁ ହୁଏତ ମାଟିରେ ଭେଦିଯାଇ ମାଟିତଳର ଜଳଧାରାରେ ମିଶିଯାଏ କିମ୍ବା ମାଟି ଉପରେ ବୋହିଯାଇ ନଦୀରେ ମିଶେ। ଯେ କୌଣସି ପ୍ରକାରେ ଏହା ଶେଷରେ ସମୁଦ୍ରରେ ମିଶେ। ଜଳଚକ୍ରରେ ଏପରି କାର୍ଯ୍ୟ କରୁଥିବା ଜଳ ଅସୀମ, ପର୍ଯ୍ୟାପ୍ତ ଓ ବାରମ୍ବାର ଏହିପରି ଅବସ୍ଥା ଦେଇ ଗତି କରୁଥିବାରେ ବାସ୍ତବିକ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ।

ସମୁଦ୍ର ଉପର ଖୁବ ନିକଟ ବାୟୁମଣ୍ଡଳରେ ଥିବା ମେଘମାଳାରେ ଅତ୍ୟଧିକ ଜଳୀୟବାଷ୍ପ ରହିଥିବା ବେଳେ ଦୂର ସ୍ଥଳଭାଗରେ ଥିବା ମେଘମାଳାରେ କମ ପରିମାଣର ଜଳୀୟବାଷ୍ପ ରହିଥାଏ। ସାଗର କୂଳରେ ସାଧାରଣତଃ ଅନ୍ତର୍ଦେଶୀୟ ଅଞ୍ଚଳଠାରୁ ଅଧିକ ପରିମାଣର ବର୍ଷା ହୋଇଥାଏ ଏବଂ ଏଠାକାର ଜଳବାୟୁ ଅତ୍ୟଧିକ ଉତ୍ତପ୍ତ ହୁଏ ନାହିଁ କାରଣ ନିକଟରେ ଏକ ବିରାଟ ଜଳଭଣ୍ଡାର ରହି ତାପମାତ୍ରାକୁ ନିୟନ୍ତ୍ରିତ କରିଥାଏ, ସର୍ବୋପରି କୌଣସି ଦେଶ ବ୍ୟବସାୟ ବାଣିଜ୍ୟର ସୁବିଧା ପାଇଁ ଏକ ଲମ୍ବା ଉପକୂଳ ଅଞ୍ଚଳ ଆବଶ୍ୟକ କରିଥାଏ।

ବାଣିଜ୍ୟ ବ୍ୟବସାୟ ବହୁ ପରିମାଣରେ ଜଳଜାହାଜ ଉପରେ ନିର୍ଭର କରେ। ଯେଉଁ ଦେଶର ଭଲ ବନ୍ଦର ରହିଛି, ଏଠାରୁ ଜାହାଜ ପୃଥିବୀର ଯେ କୌଣସି ଦେଶକୁ ଯାତାୟତ କରିପାରେ ଏବଂ ସେମାନେ ଯାହା ନେବାକୁ ବା ଆଣିବାକୁ ଚାହାଁନ୍ତି ତାହା ସୁବିଧାରେ କରିପାରନ୍ତି। ଏହା ସତ୍ୟ ଯେ ବହୁଦିନ ଯାଏଁ ମଧ୍ୟ ଏସିଆ ମଧ୍ୟ ଦେଇ ଯାତାୟତ ପଥ ସଂଯୁକ୍ତ ହୋଇ ନ ଥିଲା ଏବଂ ବହୁ ପଦାର୍ଥ ଶହ ଶହ ମାଇଲ ଦୂରଯାଏଁ ପଶୁଙ୍କ ପିଠିରେ ବନ୍ଧାଯାଇ ବହୁ ଦେଶର ସୀମା ସ୍ପର୍ଶ କରି ପରିବାହିତ ହୋଇପାରୁଥିଲା। ମାତ୍ର ଜଳଜାହାଜ ସହ ତୁଳନା କଲେ ଏହା ଏକ ସମୟସାପେକ୍ଷ, କଷ୍ଟକର ଓ ବ୍ୟୟସାପେକ୍ଷ ପରିବହନ ବ୍ୟବସ୍ଥା ଯାହାକି ଯେତେବେଳେ କୌଣସି ବିକଳ୍ପ ନ ଥିଲା, କାର୍ଯ୍ୟକାରୀ ହେଉଥିଲା।

ସମୁଦ୍ର ଉପକୂଳର ସର୍ବବୃହତ ଲାଭ ହେଉଛି ଏଠାରେ ବନ୍ଦର ନିର୍ମାଣ

କରିବାର ସମ୍ଭାବନା ଏବଂ ତଜ୍ଜନିତ ଲାଭ। ଏହା ହୁଏତ ଶାନ୍ତିପୂର୍ଣ୍ଣ ଭାବେ ବାଣିଜ୍ୟ ବ୍ୟବସାୟ ଦ୍ୱାରା ହୋଇପାରେ କିମ୍ବା ସାମରିକ ଭାବେ ଯୁଦ୍ଧ ବିଜୟ ଦ୍ୱାରା ହୋଇପାରେ। ଯଦିଓ ଏହି ଦୁଇ ପ୍ରକାରର ପଦ୍ଧତି ସମ୍ପୂର୍ଣ୍ଣ ଅସ୍ପଷ୍ଟ, ମାତ୍ର ଏହାର ମୁଖ୍ୟ ଉଦ୍ଦେଶ୍ୟ ଭଲ ଭାବେ ଜଣାଶୁଣା।

ଜାହାଜ ପରିବହନ ବ୍ୟବସ୍ଥା ଅନୁସାରେ ଏକ ଉତ୍ତମ ଉପକୂଳ ସୁନ୍ଦର ସମୁଦ୍ର ବେଳାଭୂମି ଅଞ୍ଚଳର ଠିକ ଓଲଟା। ଏକ ସାଧାସିଧା ସମତଳ ପହଁରିବା ଉପଯୋଗୀ ସମୁଦ୍ରକୂଳ ଏଥିପାଇଁ ଅନୁପଯୁକ୍ତ। ଏକ ଭଲ ବନ୍ଦର ଗଭୀର ଜଳ ଆବଶ୍ୟକ କରେ, ଯାହାକି ଖୋଲା ଓ ଆବଡ଼ାଖାବଡ଼ା ସମୁଦ୍ର ଠାରୁ ସୁରକ୍ଷିତ ହୋଇଥିବ। ବମ୍ବେ, କଲିକତା ଓ ମାଡ୍ରାଜ ବନ୍ଦରର ନିଜସ୍ୱ ସୁନ୍ଦର ବନ୍ଦରାଞ୍ଚଳ ଥିବାରୁ ଓ ମାଲ ବୋଝେଇ ଓ ଖଲାସର ବ୍ୟବସ୍ଥା ଥିବାରୁ, ବାଣିଜ୍ୟ କେନ୍ଦ୍ର ରୂପେ ଏହା ପରିଗଣିତ ହୋଇ ଉନ୍ନତି ପଥରେ ଆଗେଇ ଚାଲିଛି।

ମାଲ ପରିବହନର ଉତ୍ତମ ବ୍ୟବସ୍ଥା ଦ୍ୱାରା ନଗରର ମହତ୍ତ୍ୱ ବୃଦ୍ଧିପାଇବା ସହିତ ପ୍ରକାରାନ୍ତରେ ଦେଶର ମଧ୍ୟ ଲାଭ ହୁଏ। ମଧ୍ୟଯୁଗୀୟ ବାଣିଜ୍ୟ କାରବାର ମୁଖ୍ୟତଃ ଚାଉଳ ଉପରେ ନିର୍ଭରଶୀଳ ଥିଲା। ଏହା ବ୍ୟତୀତ ମସଲା ଇତ୍ୟାଦି ସେତେବେଳେ ଏକ ସୌଖିନ ପଦାର୍ଥ ରୂପେ ପରିଗଣିତ ହେଉଥିଲା। ବର୍ତ୍ତମାନର ପୃଥିବୀରେ ଜାହାଜ ଆବଶ୍ୟକ ପଦାର୍ଥ ଯଥା ତେଲ, ଶସ୍ୟ ପ୍ରଭୃତି ପରିବହନ କରୁଛି। ବାୟୁ ପରିବହନ କ୍ଷେତ୍ରରେ ସମସ୍ୟା ବଢ଼ୁଥିବାରୁ ଜଳଜାହାଜ ପରିବହନ ବ୍ୟବସ୍ଥା ଅତ୍ୟାବଶ୍ୟକ ହୋଇ ସବୁଦିନେ କାର୍ଯ୍ୟ କରୁଛି ଓ କରୁଥିବ।

ପୃଥିବୀ ମାନଚିତ୍ରରେ ସ୍ଥାନ ଅଧିକାର କରିଥିବା ବହୁ ବଡ଼ ବଡ଼ ବନ୍ଦର ବ୍ୟତୀତ ବହୁ ଛୋଟ ବନ୍ଦର ଆମର ଉପକୂଳରେ ରହିଛି ଯାହାକି ସ୍ଥାନୀୟ ବ୍ୟବସାୟରେ ସାହାଯ୍ୟ କରିଥାଏ। ପଶ୍ଚିମ ସମୁଦ୍ରକୂଳ ଅତି ସହଜ ହୋଇଥିବାରୁ ଏଠାରେ ପୂର୍ବ ଉପକୂଳଠାରୁ ଅଧିକ ସଂଖ୍ୟକ ଛୋଟ ବନ୍ଦର ଦେଖାଯାଏ। ଏଠାରେ କୁଟମାଡବୀ, ଗୋଆ, ଡ଼ାମନ, କରୱାର, କୋଚିନ ପ୍ରଭୃତି ବହୁ ଛୋଟ ବନ୍ଦର ରହିଛି, ଯାହାକି ସ୍ଥାନୀୟ ହସ୍ତଶିଳ୍ପ ପରିବହନ କାର୍ଯ୍ୟ ସୂଚାରୁରୂପେ କରିଥାଏ। ଏହା କହିବା ଭୁଲ ହେବ ନାହିଁ ଯେ ଏହି ଛୋଟ ବନ୍ଦର ଗୁଡ଼ିକ ଅନେକ ସମୟରେ କେତେକ ନିଷିଦ୍ଧ ଦ୍ରବ୍ୟ ବ୍ୟବସାୟ କରିଥାନ୍ତି, କାରଣ ଛୋଟ ବନ୍ଦରଗୁଡ଼ିକ ଚୋରା ବେପାରୀଙ୍କ

ପାଇଁ ଉତ୍ତମସ୍ଥାନ। ପୁରାତନ କାଠ ତିଆରି ଡ଼ଙ୍ଗା ଏଠାରେ ଏବେ ମଧ୍ୟ ଦେଖାଯାଏ। ଅବଶ୍ୟ ଅନେକ ଯାନ୍ତ୍ରିକଚାଳିତ ମୋଟର ଲଞ୍ଚ ଏହାକୁ କ୍ରମେ ସ୍ଥାନାନ୍ତରିତ କଲାଣି।

ଏକ ଆନ୍ତର୍ଜାତିକ ନିୟମ ଅନୁସାରେ ପ୍ରତ୍ୟେକ ଦେଶ ଉପକୂଳଠାରୁ 12 ମାଇଲ ବ୍ୟାପୀ ସମୁଦ୍ରର ମାଲିକ। ଅର୍ଥାତ ଯଦି ମାଡ୍ରାଜ ବନ୍ଦରକୁ ନିଷିଦ୍ଧ କରାଯାଇଥାଏ, ତେବେ 12 ମାଇଲ ଅତିକ୍ରମ ନ କରିବା ଯାଏଁ ତୁମେ ତାହାର ଉପରେ ପାଣି ମଧ୍ୟ ପିଇପାରିବ ନାହିଁ। ଅର୍ଥାତ, ଆମ ଉପକୂଳରୁ 12 ମାଇଲ ସମୁଦ୍ର ଭିତରର ଅଞ୍ଚଳର ମତ୍ସ୍ୟସମ୍ପଦ ନୀତିଗତ ଭାବେ ଆମର। ଏହାପରେ ହୁଏତ ମାଛ ଧରିବାପାଇଁ ଅନ୍ୟ ଦେଶର ମାଛଧରାଳୀଙ୍କ ସହିତ ପ୍ରତିଯୋଗିତା କରିବା। ମାଛ ହେଉଛି ଏକ ଉନ୍ନତ, ଶକ୍ତି ପ୍ରଦାନକାରୀ ଓ ଅତ୍ୟାବଶ୍ୟକ ଖାଦ୍ୟ। ଯେଉଁ ଦେଶର ଅଧିକ ସମୁଦ୍ରସୀମା ରହିଛି ସେ ଦେଶ ପ୍ରଚୁର ମତ୍ସ୍ୟ ଉତ୍ପାଦନ କରି ଭାଗ୍ୟବାନ ଦେଶରୂପେ ବିବେଚିତ ହୁଏ। ତୁମେ ମାଛ ଧରିବାକୁ ଏକ ଅତ୍ୟାଧୁନିକ ମାଛଧରା ଟ୍ରଲର ବା ଲଞ୍ଚରେ କେତେକ କେଉଟ ଓ ଆଧୁନିକ ଉପକରଣ ସହ ସମୁଦ୍ର ଭିତରକୁ ଯାଇପାର ଏବଂ ଏକ ବନ୍ସୀ ସାହାଯ୍ୟରେ ମଧ୍ୟ ମାଛ ଧରିପାର। ଏହା ମଧ୍ୟରେ ମାଛ ଧରିବା ପାଇଁ ଶହ ଶହ ପ୍ରକାରର ବ୍ୟବସ୍ଥା ରହିଛି ଏବଂ ପ୍ରତ୍ୟେକ ବ୍ୟବସ୍ଥାର ସ୍ୱତନ୍ତ୍ରତା ରହିଛି। ଶହ ଶହ ପ୍ରକାରର ମାଛ ଧରାଯାଏ। ତିମିମାଛ ପରି ବଡ଼ ଆକାରର ବିରାଟକାୟ ମାଛଠାରୁ ଏକ ଦଶ ପଇସା ଆକାରର କ୍ଷୁଦ୍ର ଚିଙ୍ଗୁଡ଼ି ମଧ୍ୟ ଧରାଯାଇଥାଏ।

ଏହା କୁହାଯାଇପାରେ ଯେ ସମୁଦ୍ରରେ ଥିବା ମତ୍ସ୍ୟଙ୍କ ସଂଖ୍ୟା ଅସରନ୍ତି ଏବଂ ଯଦି ଅନ୍ୟ ଖାଦ୍ୟର ଅଭାବ ପଡ଼େ, ତେବେ ମାନବ ସମାଜ ସମୁଦ୍ର ଖାଦ୍ୟ ଉପରେ ନିର୍ଭର କରି ବଞ୍ଚି ରହିପାରିବ। ଏହା ହୁଏତ ଅତିରଞ୍ଜିତ ହୋଇପାରେ, ମାତ୍ର ଆମେ ଦେଖି ସାରିଛୁ ଯେ ଉପକୂଳ ଜଳଭାଗ ଏକ ଲୁକ୍କାୟିତ ଖାଦ୍ୟ ସମ୍ପଦର ଭଣ୍ଡାରଘର ସଦୃଶ୍ୟ। ବର୍ତ୍ତମାନ ଆମେ ଯଦି ସମୁଦ୍ରର ଶକ୍ତିଶାଳୀ ଖାଦ୍ୟଭଣ୍ଡାର, ଅଜୈବ ଓ ବୈଜ୍ଞାନିକ ଦିଗକୁ ବିଚାର କରିବା, ତେବେ ଦେଖିବା ଯେ ଆମର ବୈଚିତ୍ର୍ୟମୟ ପୃଥିବୀ ହିଁ ସାଗର ତରଙ୍ଗ ଦ୍ୱାରା ସୃଷ୍ଟି ହୋଇଛି।

ଯେତେବେଳେ ବିରାଟ, ଖୋଲାସାଗର ବହୁ ବୃହତ୍ ମାଛଙ୍କର ବାସସ୍ଥଳୀରୂପେ ବିବେଚିତ ହୁଏ, ଉପକୂଳବର୍ତ୍ତୀ ବାଲୁକା ପ୍ରାନ୍ତର ଏମାନଙ୍କର

ପ୍ରଜନନ ଓ ଲାଳନପାଳନ କ୍ଷେତ୍ରରୂପେ ପରିଗଣିତ ହୁଏ। ଏହି ସବୁ ବୁଦାଳିଆ, ସନ୍ତସନ୍ତିଆ ଅଞ୍ଚଳ ଯେଉଁଠିକୁ ସମୁଦ୍ରର ବଡ଼ ବଡ଼ ଢେଉ ମାଡ଼ି ଆସେ ବା ଯେଉଁଠାରେ ନଦୀ ସମୁଦ୍ର ସହିତ ମିଳିତ ହୋଇଥାଏ, ଏହିପରି ସ୍ଥାନକୁ ବହୁ ସଂଖ୍ୟକ ମାଛ ଅଣ୍ଡା ଦେବାକୁ ଆସିଥାନ୍ତି। ଅଧିକାଂଶ କ୍ଷେତ୍ରରେ ଏହି ଅଞ୍ଚଳ ବୃହଦାକାର ହୋଇଥାଏ, କୌଣସି ଗଛ ଏଠାରେ ନ ଥାଏ, କାରଣ ଲୁଣିପାଣି ଏହାକୁ ଧୋଇନିଏ କିମ୍ବା ସବୁ ସମୟରେ ବୁଡ଼ାଇ ରଖେ। ପତଳା, କାଦୁଆ ବାଲୁକା ସହଜରେ ପରିବର୍ତ୍ତିତ ହୋଇପାରେ। ଏହିପରି ସ୍ଥାନରେ କେବଳ ଗୋଟିଏ ପ୍ରକାରର ଗଛ ଦେଖାଯାଆନ୍ତି, ସେମାନେ ହେଲେ ବାୟବୀୟ ବୃକ୍ଷ, ଯାହାର ବଡ଼ ବଡ଼ ଚେର ମାଟି ଉପରକୁ ଉଠିଥାଏ। ଏହି ଭୂମି ସମୁଦ୍ର ମାଛଙ୍କର ଉତ୍ତମ ବାସସ୍ଥାନ ସହିତ ଆମର ଦରକାରୀ ବହୁ ପରିମାଣର ଲୁଣ ଏହିପରି ସମତଳ ଭୂମିରୁ ମିଳିଥାଏ। ବାୟବୀୟ ବୃକ୍ଷ ଦୁର୍ବଳ ହେଲେ ମଧ ଝଡ଼ ବାତ୍ୟା ସମୟରେ ଏହା ପ୍ରବଳ ସ୍ରୋତକୁ କମାଇ ଦେଇଥାଏ ଏବଂ ଆବଡ଼ାଖାବଡ଼ା ସମୁଦ୍ରକୂଳରୁ ମୃତ୍ତିକାକ୍ଷୟକୁ ବନ୍ଦ କରି ଉପକୂଳ ଅଞ୍ଚଳକୁ ବାନ୍ଧି ରଖିଥାଏ। ଆମେ ଯଦି ସମୁଦ୍ରର ବିଶାଳତା ବିଷୟରେ ଚିନ୍ତା କରିବା ଏବଂ ଏହାର ସବୁ ସମୟର ଚଳପ୍ରଚଳ ଓ ଶକ୍ତିକୁ କଳନାକରିବା, ଝଡ଼ ତୋଫାନ ସମୟରେ ଏହାର ଭୟାବହତା ଓ ଶକ୍ତିକୁ ଦେଖିବା, ତେବେ ଆମେ ବୁଝିପାରିବା ଯେ ମଣିଷର ବାସସ୍ଥଳୀ ଓ ଏହାର ଲହରୀ ମଧ୍ୟରେ ସବୁବେଳେ ଏକ ପ୍ରତିବନ୍ଧକ ରହିବା ଆବଶ୍ୟକ। ତେଣୁ ଏପରି କେତେକ କ୍ଷେତ୍ର ରହିବା ଆବଶ୍ୟକ ଯେଉଁଠାରେ ସମୁଦ୍ର ଆସି ଅଟକି ଯାଇ ପାରିବ ଏବଂ ଝଡ଼ବତାସରୁ ଉପକୂଳ ଅଞ୍ଚଳକୁ ଧ୍ୱଂସ ମୁଖରୁ ରକ୍ଷା କରିପାରିବ। ଆମେ ଯଦି ବାୟବୀୟ ବୃକ୍ଷକୁ ସଫା କରିଦେବା, ତେବେ ଆମେ ନିଜକୁ ନିଜେ ବିପଦ ଓ ଧ୍ୱଂସ ରାକ୍ଷସ ମୁଖକୁ ଠେଲିଦେବା, ଯାହାକି ଦରକାର ଠାରୁ ଅଧିକ ଭାବେ ଆମର ସମ୍ମୁଖୀନ ହେଉଛି।

ଯେପରି ଆମେ ଘାସକୁ ମୃତ୍ତିକାର ପ୍ରତ୍ୟେକ ମାଂସ ଖଣ୍ଡ ବୋଲି କହିଥାଉ, ସେହିପରି ସମୁଦ୍ରର ପ୍ରତ୍ୟେକ ମାଛକୁ ହିଁ ଶୈବାଳ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ। ବୈଷୟିକ ଭାବେ ବିଶ୍ଳେଷଣ ନ କରି ସାଧାସିଧା ଭାବେ ଆମେ କହିପାରିବା ଯେ ଶୈବାଳ ହେଉଛି ଭାସୁଥିବା ଛୋଟ ଛୋଟ ଜୀବନ୍ତ ବସ୍ତୁ ଯାହାକି ଭୂମିର ସବୁଜ ଛୋଟ ଉଦ୍ଭିଦ ଆକୃତିର ହୋଇଥାଏ ଏବଂ ଯାହାକି ଏକ ଓଦା ଅଞ୍ଚଳରେ ବିଶେଷ କରି ସମୁଦ୍ରର ବହଳିଆ

ଗୋଳିଆ ପାଣିରେ ସମୁଦ୍ର ଶଯ୍ୟାରେ ଶୁଖିଲା ଓ ଓଦାସ୍ଥାନର ମଧ୍ୟବର୍ତ୍ତୀ ଅଞ୍ଚଳରେ ବଢ଼ିଥାଏ। ଏହା ହିଁ ତିମିଠାରୁ ଆରମ୍ଭ କରି ଅଧିକାଂଶ ମାଛଙ୍କର ମୁଖ୍ୟ ଖାଦ୍ୟ ସମ୍ପଦ।

ଆମେ ମଣିଷମାନେ ମଧ୍ୟ ବହୁ ଉପାୟରେ ଶୈବାଳ ଠାରୁ କିଛି ଲାଭ ଆଶା କରିଥାଉ। ଆଲଜିନ ଭଳି ଏକ ସମୁଦ୍ର ଗୁଳ୍ମର ରସର ବହୁ ପ୍ରକାର ବ୍ୟବସାୟିକ ବ୍ୟବହାର ରହିଛି। ପଦାର୍ଥକୁ ମୋଟା କରିବା ପାଇଁ ଏହାକୁ ବ୍ୟବହାର କରାଯାଏ। ଏହା ବ୍ୟତୀତ ଲୁଗାପଟାକୁ ଚିକ୍କଣ କରିବା, କାଗଜ, ରଙ୍ଗ ଓ ଔଷଧ, କୀଟନାଶକ ଔଷଧ, ପ୍ରସାଧନ ସାମଗ୍ରୀ ଏପରିକି ଆଇସକ୍ରୀମ ପ୍ରସ୍ତୁତି ପାଇଁ ଏହାକୁ ବ୍ୟବହାର କରାଯାଏ। ଆୟୋଡ଼ିନ ଓ ବହୁ ପ୍ରକାରର ରାସାୟନିକ ପଦାର୍ଥ ସମୁଦ୍ରଗୁଳ୍ମ ଓ ସମୁଦ୍ରଘାସରୁ ପ୍ରସ୍ତୁତ ହୋଇଥାଏ। ନିଃସନ୍ଦେହ ଭାବେ ଏହା କୁହାଯାଇପାରେ ଯେ ଏପରି ବହୁ ଉପକାରୀ ପଦାର୍ଥ ସମୁଦ୍ର ଭିତରେ ଅଛନ୍ତି ଯାହାକୁ କି ଆଜିଯାଏ ଆବିଷ୍କାର କରାଯାଇ ନାହିଁ। ଏମାନଙ୍କ ଭିତରୁ ହଜାର ହଜାର ପ୍ରକାରର ସମୁଦ୍ର ଗୁଳ୍ମ ଅନ୍ତର୍ଭୁକ୍ତ। ସ୍ଥଳଭାଗର ସବୁଜିମା ରକ୍ଷା ଓ ବୃକ୍ଷ ସମ୍ପଦକୁ ବଞ୍ଚାଇ ରଖିବା ପାଇଁ ଜଙ୍ଗଲ ଯେପରି ଭାବେ ଦାୟୀ, ସେହିପରି ସମୁଦ୍ର ଭିତରର ସଜୀବବସ୍ତୁଙ୍କୁ ସଂରକ୍ଷିତ କରାଯିବା ଆବଶ୍ୟକ। ଅନ୍ତତଃ ଏଇ ସ୍ୱାର୍ଥପର ଆଶାନେଇ ଯେ ନିଶ୍ଚିତଭାବେ ଦିନେ ନା ଦିନେ ଏହା ମଣିଷର ଉପକାରରେ ଲାଗିପାରିବ।

ସମୁଦ୍ରକୂଳବର୍ତ୍ତୀ ପଦାର୍ଥକୁ ଲାଭଜନକ କାର୍ଯ୍ୟରେ ଲଗାଇବା ଭଳି ପଦାର୍ଥ ହେଉଛି ଉପକୂଳବର୍ତ୍ତୀ ତୈଳ, ପ୍ରବାଳ ଓ ମୁକ୍ତା। ଏହା ସହିତ ଆମେ ନଡ଼ିଆକୁ ମଧ୍ୟ ଯୋଗ କରିପାରିବା।

ଏବେ ନଡ଼ିଆ ଆଭ୍ୟନ୍ତରୀଣ ଅଞ୍ଚଳରେ ମଧ୍ୟ ଚାଷ କରାଗଲାଣି ଏବଂ ଆମେ ଭୁଲିଯାଉଛେ ଯେ ଏହି ଗଛ ସାଧାରଣତଃ ଗ୍ରୀଷ୍ମମଣ୍ଡଳୀୟ ସମୁଦ୍ରକୂଳରେ ଦେଖାଯାଏ। ଏହା ସାଧାରଣତଃ ଏକତ୍ର ଭାବେ ଉଷ୍ଣ ସମୁଦ୍ରକୂଳ ଅଞ୍ଚଳରେ ଦେଖାଯାଏ, କାରଣ ଏହାର ଫଳ ବା ମଞ୍ଜି ସମୁଦ୍ରପାଣିରେ ଭାସେ ଏବଂ ଯେତେବେଳେ ଏହା ଏକ ଉପଯୋଗୀ ସମୁଦ୍ରକୂଳରେ ପହଁଞ୍ଚେ ଏଥିରୁ ଚେର ବାହାରିଥାଏ। ଅନ୍ୟ ମଞ୍ଜିଗୁଡ଼ିକ ପବନ, ପଶୁ ବା ପକ୍ଷୀଙ୍କ ଦ୍ୱାରା ବିକ୍ଷିପ୍ତ ହେଉଥିବା ବେଳେ ନଡ଼ିଆ ସମୁଦ୍ର ଦ୍ୱାରା ବିକ୍ଷିପ୍ତ ହୋଇଥାଏ। ଏହା ଏକ ଗତାନୁଗତିକ ଚିନ୍ତାଧାରା ଯେ ପ୍ରାୟ ଗ୍ରୀଷ୍ମମଣ୍ଡଳୀୟ ସମୁଦ୍ର କୂଳରେ ନଡ଼ିଆଗଛ ଦେଖାଯାଏ। ଶୁଖିଲା ନଡ଼ିଆ ସମୁଦ୍ର ଜୁଆରରେ ଶହ

ଶହ ମାଇଲ ଭାସି ଯାଇ ନୂତନ ବାଲୁକା ଶଯ୍ୟାରେ ତା'ର ନୂତନ ଜୀବନ ଚକ୍ର ଆରମ୍ଭ କରିଥାଏ। ବାସ୍ତବିକ ନଡ଼ିଆ ହେଉଛି ସାରା ବିଶ୍ୱ ବୁଲି ଆସିବା ଭଳି ଏକ ଫଳ ଏବଂ ଏହା ଗ୍ରୀଷ୍ମ ମଣ୍ଡଳୀୟ ଅକ୍ଷାଂଶରେ ସାରା ବିଶ୍ୱ ପ୍ରଦକ୍ଷିଣ କରିଥାଏ।

ଆମକୁ ରୁଚିକର ଖାଦ୍ୟ ଯୋଗାଇବା ସହ ଓ ଆମ ଚାଳ ଛପର ପାଇଁ ସାମଗ୍ରୀ, ଦଉଡ଼ି, ଝାଡୁଣୀ, କତା, କାଠ ଯୋଗାଇ ନଡ଼ିଆ ଗଛ ବାୟବୀୟ ଉଦ୍ଭିଦଙ୍କ ଭଳି ଆମର ଉପକୂଳକୁ ବାୟୁ ଓ ଜଳରୁ ରକ୍ଷା କରିଥାଏ। ନଡ଼ିଆ ପତ୍ର ଏପରି ଭାବେ ତିଆରି ହୋଇଛି ଯେ ଏହା ପ୍ରବଳ ପବନକୁ ସହଜରେ ଅଟକାଇ ଥାଏ ଓ ଝଡ଼ବାତ୍ୟାର ବେଗକୁ କମାଇବା ସହିତ ଏହାର ଚେର ବାଲିଆ ମାଟିକୁ ଦୃଢ଼ ଭାବେ ଧରି ରଖେ ଓ ବାତ୍ୟା ସମୟରେ ମୃତ୍ତିକା ସମୁଦ୍ର ଭିତରକୁ ଧୋଇ ଯିବାରୁ ଅଟକାଇଥାଏ।

ବର୍ତ୍ତମାନ ଶକ୍ତିର ବିକଳ୍ପ ଭାବେ ଜୁଆରରୁ ମିଳୁଥିବା ଶକ୍ତିକୁ ବିନିଯୋଗ କରାଯାଇ ପାରିବ। ଜୁଆର ଆସିବା ନିୟମିତ ଓ ଶକ୍ତିଶାଳୀ ହୋଇଥିବାରୁ ଏହା ଯୁକ୍ତି ଯୁକ୍ତ ଯେ ଏଥିରୁ ଶକ୍ତି ଉତ୍ପାଦିତ ହୋଇ ପାରିବ। ଆଜିଯାଏଁ ଆମେ ବାସ କରୁଥିବା ସମୟରେ ଜୁଆରର ମୂଳ ଉଦ୍ଦେଶ୍ୟ ହେଉଛି ସମୁଦ୍ରରେ ଯାତ୍ରାରମ୍ଭ କରୁଥିବା ଜାହାଜକୁ ସାହାଯ୍ୟ କରିବା। ଭାରତୀୟ ଉପକୂଳର ବହୁ ଅଞ୍ଚଳରେ ବହୁ ଉଚ୍ଚ ଲହରୀ ଦେଖାଯାଏ। ଉତ୍ତର ପଶ୍ଚିମ ଉପକୂଳର ଭାବନଗରଠାରେ ସମୁଦ୍ର ଜୁଆର ପ୍ରାୟ 35 ଫୁଟ ଉଚ୍ଚକୁ ଉଠିଥାଏ। ଆମ ବୈଜ୍ଞାନିକ ମାନଙ୍କର ଆଶ୍ଚର୍ଯ୍ୟଜନକ ଉଦ୍ଭାବନ ପରେ ଜୁଆରର ଗତିକୁ ଧରିରଖି ଏହାକୁ ଆମ ଦରକାର ଅନୁସାରେ ବ୍ୟବହାରରେ ଲଗାଇବା ସହଜ ହୋଇଛି।

ମୁଁ ଜାଣେ ନା, ଯେ ସମୁଦ୍ର ଓ ସମୁଦ୍ରକୂଳ ବିଷୟରେ ଆଲୋଚନା କରୁଥିବା ବେଳେ ଦ୍ୱୀପପୁଞ୍ଜ ବିଷୟରେ, କିଛି କହିବା ଉଚିତ ହେବ କି ନାହିଁ। ସମୁଦ୍ର ଶଯ୍ୟା ଶୃଙ୍ଖଳା ଭୂମିପରି ସାଧାରଣତଃ ଆବଡ଼ା ଖାବଡ଼ା ଏବଂ ଦ୍ୱୀପ ହେଉଛି ଏପରି ଅଂଶ ଯାହାକି ଜଳ ସ୍ତର ଠାରୁ ଉଚ୍ଚରେ ଥାଏ।

ମଣିଷର ବସତି ସ୍ଥାପନ ପାଇଁ ଦ୍ୱୀପଗୁଡ଼ିକ ଅତି ଉପଯୋଗୀ। ଏଠାକାର ମଣିଷ ଶତ୍ରୁଠାରୁ ସୁରକ୍ଷିତ, ରାଜନୈତିକ ଅନୁପ୍ରବେଶରୁ ମୁକ୍ତ। ଚାରିଆଡୁ ରାଜନୈତିକ ସୀମାରେଖା ଥିବା ରାଷ୍ଟ୍ରଠାରୁ ଏମାନଙ୍କ ଭବିଷ୍ୟତ ସମ୍ପୂର୍ଣ୍ଣ

ଅଲଗା । ଦ୍ୱୀପରେ ଥିବା ଦୁର୍ଗ ସବୁବେଳେ ଯୁଦ୍ଧ ସାମଗ୍ରୀରେ ଭରପୂର ରହି ସୁରକ୍ଷିତ। ବମ୍ବେରେ ଥିବା କେତେକ ପଥୁରିଆ ଦ୍ୱୀପର ବହୁ ସୁନ୍ଦର ଇତିହାସ ରହିଛି। ଏମାନଙ୍କର ମାଲିକ ଏହି ବାଟ ଦେଇ ଜାହାଜରେ ମୁଖ୍ୟ ସ୍ଥଳଭାଗକୁ ପୂର୍ବେ ଯାଉଥିବା ବେଳେ ଏହାକୁ ଅଧିକାର କରିଥିଲେ। ନିୟମ ଅନୁସାରେ ଦ୍ୱୀପର ଜଳବାୟୁ ସାଧାରଣତଃ ଅଧିକ ଉଷ୍ଣ ଓ ଆର୍ଦ୍ର, କାରଣ ସମୁଦ୍ର ଅତ୍ୟଧିକ ଥଣ୍ଡା ଓ ଗରମକୁ ନିୟନ୍ତ୍ରଣ କରିଥାଏ।

ପ୍ରାକୃତିକ ଇତିହାସର ଛାତ୍ରମାନଙ୍କ ପାଇଁ ଦ୍ୱୀପର ଏକ ସ୍ୱତନ୍ତ୍ର ସମ୍ମୋହନ ଗୁଣ ରହିଛି। ଏଠାରେ ପ୍ରାକୃତିକ ଜୀବନ ଏକ ଆବଦ୍ଧ ସ୍ଥାନରେ ଥାଏ ଏବଂ ଏହାରି ଭିତରେ ସବୁ ପ୍ରକାର ଆଦାନପ୍ରଦାନ ହୋଇଥାଏ। ଆମର ନିକଟବର୍ତ୍ତୀ ଆଣ୍ଡାମାନ ଦ୍ୱୀପପୁଞ୍ଜ, ଲାକ୍ଷାଦ୍ୱୀପ ଓ ନିକୋବର ଦ୍ୱୀପ ପ୍ରକୃତିବିତ୍ ଓ ନୃତତ୍ତ୍ୱବିତ୍‌ଙ୍କୁ ବହୁ ସୁବିଧା ସୁଯୋଗ ଦେଇଥାଏ ଯାହାକି ଅନ୍ୟ କେଉଁଠାରେ ଦେଖାଯାଏ ନାହିଁ। ବାହାରୁ କୌଣସି ପ୍ରକାର ସାହାଯ୍ୟ ନ ପାଇ ବହୁ ପ୍ରକାରର ଜୀବନ ଏଠାରେ ସୃଷ୍ଟି ହୋଇଥାଏ, ଯେଉଁମାନେ କି ମୁଖ୍ୟ ଅଞ୍ଚଳଠାରୁ ଅଲଗା ହୋଇଥାନ୍ତି। ଏହା ପ୍ରକୃତିବିତ୍ ମାନଙ୍କୁ ଏମାନଙ୍କ ବିଭିନ୍ନ ଶ୍ରେଣୀର ଜୀବନଚକ୍ର ବିଷୟରେ ତଥା କେଉଁ ପରିବେଶରେ ଏମାନଙ୍କୁ ବିବର୍ତ୍ତନ ପ୍ରଭାବିତ କରିଛି, ତାହା ଗବେଷଣା କରିବାକୁ ସାହାଯ୍ୟ କରିଥାଏ। ଏଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ ଯେ ପରିସଂସ୍ଥାନବିତ୍ ଓ ପ୍ରକୃତିବିତ୍‌ମାନେ ଆଣ୍ଡାମାନ ଦ୍ୱୀପପୁଞ୍ଜର ଆଧୁନିକୀକରଣ ଓ ଉନ୍ନତିବିଧାନ ନ ହେବା ପାଇଁ ଆନ୍ଦୋଳନ ଆରମ୍ଭ କରିଛନ୍ତି।

ଗହଳିଚହଳି ପୂର୍ଣ୍ଣ ସହର ଛାଡ଼ି ନିରୋଳାରେ ଛୁଟି କଟାଇବାକୁ ଚାହୁଁଥିବା ଲୋକଙ୍କ ପାଇଁ ଏହି ଦ୍ୱୀପପୁଞ୍ଜ ଏକ ଉତ୍କୃଷ୍ଟ କ୍ଷେତ୍ର। ମାତ୍ର ବହୁ ସଂଖ୍ୟକ ପର୍ଯ୍ୟଟକଙ୍କ ସମାଗମ ଫଳରେ ଏଠାରେ ସମତାଳପୂର୍ଣ୍ଣ ପ୍ରାକୃତିକ ଜୀବ ସମ୍ପଦ ନଷ୍ଟ ହୋଇଯାଇଥାନ୍ତି। ତେଣୁ ପରିଦର୍ଶନକାରୀ ମାନଙ୍କୁ ପରୀକ୍ଷା କରାଯାଇ ଯେଉଁମାନେ ପ୍ରକୃତରେ ପ୍ରକୃତି ଓ ବଣ୍ୟଜନ୍ତୁଙ୍କ ପ୍ରତି ଆଗ୍ରହୀ, ସେହିମାନଙ୍କୁ ଛଡ଼ାଯିବା ଉଚିତ। ଯେଉଁ ଲୋକ ଖେଳିବା ବ୍ୟତୀତ ଶିଖିବା ପାଇଁ ଚାହେଁ ଓ ଯିଏ ଜାଣେ, ସହରଠାରୁ ଦୂରରେ ଥିବା ସମ୍ପ୍ରଦାୟ ସହିତ କିପରି ଭାବେ ବ୍ୟବହାର କରାଯିବ ଏବଂ ଯେଉଁମାନେ ଅଳ୍ପ ସମୟ ପ୍ରାକୃତିକ ପରିବେଶ ନିକଟରେ ରହି ସେମାନଙ୍କ ମନ ଓ ଅନୁଭବକୁ ଉନ୍ନତ କରିପାରନ୍ତି, ସେମାନଙ୍କୁ ଏଠାକୁ ପଠାଯିବା ଦରକାର।

ଆମେ ଦେଖୁ ଯେ ପର୍ବତ, ଜଙ୍ଗଲ, ନଦୀ ପରି ପ୍ରତ୍ୟେକ ପ୍ରାକୃତିକ ପରିବେଶର ମଣିଷର ଶକ୍ତିକୁ ବଢ଼ାଇବା ଓ ସୃଷ୍ଟି କରିବାର ଅବସ୍ଥା ରହିଛି। ସମୁଦ୍ର ଓ ସମୁଦ୍ରକୂଳ ଏଥିରୁ ବାଦ୍ ନୁହେଁ। ଯେପରି ଉଚ୍ଚ ପର୍ବତ ବହୁ ଲୋକଙ୍କ ଉପରେ ସ୍ୱତନ୍ତ୍ର ଶକ୍ତିଶାଳୀ ପ୍ରଭାବ ପକାଇଥାଏ, ସମୁଦ୍ର ମଧ୍ୟ ତାହା କରିଥାଏ। ସମୁଦ୍ରର ପ୍ରବଳ ଆକର୍ଷଣ ଶକ୍ତି ଅନେକ ସମୟରେ ମଣିଷକୁ ଅବିବେକୀ ଓ ବିଚାର ବୁଦ୍ଧି ଶୂନ୍ୟ କରି ଦେଇଥାଏ ଯାହାକି ବହୁ ଲୋକଙ୍କ ଜୀବନ ଓ ଭାଗ୍ୟ ନିର୍ଦ୍ଧାରଣ କରିଥାଏ।

ଆମ ଭିତରୁ ଅନେକ ସମୁଦ୍ରକୁ ଭଲ ପାଉ, ପ୍ରଶଂସା କରୁ ଓ ଉପଭୋଗ କରୁ। କିନ୍ତୁ ଆମେ ଆମର ଜୀବନକୁ ଏହାପାଇଁ ଉତ୍ସର୍ଗ କରିନାହୁଁ। ଗର୍ଜ୍ଜନ କରୁନଥିବା ଲହରୀକୁ ଦେଖିବା, ସମୁଦ୍ର ବାଲିରେ ଖେଳିବା, ଶାମୁକା ଗୋଟାଇବା, ପହଁରିବା, ନୌକାଚାଳନା କରିବା ଓ ମାଛ ଧରିବା ସବୁଠାରୁ ଗରିବ ଲୋକ ମଧ୍ୟ ଉପଭୋଗ କରିପାରେ, ଯଦି ସେ ସମୁଦ୍ରକୂଳରେ ବାସ କରୁଥାଏ। ବଡ଼ ବଡ଼ ସହର କ୍ଷେତ୍ରରେ ଯେଉଁ ଲୋକେ ସମୁଦ୍ର କୂଳରେ ଥାଆନ୍ତି ସେମାନେ ବହୁ ପରିମାଣରେ ସମୁଦ୍ରଜଳ ଉପର ଦେଇ ଆସୁଥିବା ଖୋଲା ପବନ ପାଇବାର ସୁଯୋଗ ଲାଭ କରିଥାନ୍ତି ଏବଂ ଏହା ସହିତ ବିସ୍ତୀର୍ଣ୍ଣ ସୀମାହୀନ ବାୟୁମଣ୍ଡଳ ପାଇଥାନ୍ତି ଯାହା କି ସମୁଦ୍ରର ଅନ୍ୟ ଏକ ବୈଶିଷ୍ଟ୍ୟ।

# ସାଗର

## II

### *ଆମେ କଣ ଏହାକୁ ନଷ୍ଟ କରୁଛୁ ?*

ଯଦି ଆମେ ଭାରତକୁ ଏକ ତ୍ରିଭୁଜାକାର ଦେଶ ରୂପେ ବିବେଚନା କରିବା, ତେବେ ଏହାର ଦୁଇ ପାର୍ଶ୍ୱ ସମୁଦ୍ର ଦ୍ୱାରା ସୀମିତ। ଏବଂ ଉତ୍ତରରେ ବା ତୃତୀୟ ଅଂଶରେ ଉଚ୍ଚ ଭୂମି ରହିଛି। ଆମ ଦେଶ ଉପରେ ଯେତେଥର ବୈଦେଶିକ ଆକ୍ରମଣ ହୋଇଛି, କୌଣସିଟି ପ୍ରାୟ ସମୁଦ୍ର ପଥରେ ହୋଇ ନାହିଁ। ପ୍ରାୟ ସବୁ ଆକ୍ରମଣ ଉତ୍ତର ହିମାଳୟ ପର୍ବତମାଳାର ଗିରିଗହ୍ୱର ଓ ସ୍ଥଳଭାଗ ବାଟ ଦେଇ ହୋଇଛି। ତେଣୁ ଦକ୍ଷିଣ ଭାଗ ଅଞ୍ଚଳ ଭାଗ୍ୟବାନ ଯେ ବୈଦେଶିକ ଶତ୍ରୁଙ୍କ ଦ୍ୱାରା ଏକ ବଡ଼ ଧରଣର ଯୁଦ୍ଧ ଜୟ ଏହି ବାଟ ଦେଇ ସମ୍ଭବ ନୁହେଁ। ଅନ୍ୟ ପକ୍ଷରେ ବହୁ ବ୍ୟବସାୟୀ ଓ ଧନୀ ବ୍ୟକ୍ତି ପଶ୍ଚିମାଞ୍ଚଳରେ ଓହ୍ଲାଇଥାନ୍ତି। ବହୁ ଆରବୀ, ପର୍ତ୍ତୁଗୀଜ ଏବେ ଆମ ଭିତରେ ବସବାସ କରି ରହିଲେଣି। ଇଂରେଜମାନେ ମଧ୍ୟ ପ୍ରଥମେ ଦେଶ ଜୟକାରୀ ଭାବେ ନ ଆସି ବ୍ୟବସାୟୀଭାବେ ସୁରତ ଠାରେ ଆସି ଓହ୍ଲାଇଥିଲେ। ଦେଶ ଅଧିକାର ସେମାନଙ୍କର ଉଦ୍ଦେଶ୍ୟ ହୋଇ ନ ଥିବା ବେଳେ, କାଳକ୍ରମେ ସେମାନେ ଆମ ଦେଶକୁ ଅଧିକାର କରି ନେଇଥିଲେ।

ସେତେବେଳେ ଆମର ସାଗରସୀମା ଶତ୍ରୁଙ୍କ ପ୍ରତିରୋଧ କରିବାର ଏକ ପ୍ରକୃଷ୍ଟ କ୍ଷେତ୍ର ଥିଲା। ଏହି ସମୟରେ ଏହାର ଦୀର୍ଘତା ଯୋଗୁଁ ଏବଂ ଏହା ପୂର୍ବ ଓ ପଶ୍ଚିମକୁ ମୁହଁ କରି ରହିଥିବାରୁ ଏହା ନୌଚାଳନା ବିଶେଷ କରି ବ୍ୟବସାୟ ଓ ବାଣିଜ୍ୟରେ ସାହାଯ୍ୟ କରୁଥିଲା। ଉପକୂଳ ଜାହାଜ ଚଳାଚଳ ଦ୍ୱାରା ଦେଶର ଗୋଟିଏ ସ୍ଥାନରୁ ଅନ୍ୟ ସ୍ଥାନକୁ ମାଲ ପରିବହନ

କରାଯିବା ଗୁରୁତ୍ୱପୂର୍ଣ୍ଣ ଥିଲା । ବ୍ୟବସାୟ ବାଣିଜ୍ୟ ବ୍ୟତୀତ ଏହାଦ୍ୱାରା ଯୋଗାଯୋଗ ବ୍ୟବସ୍ଥା ମଧ୍ୟ ତ୍ୱରାନ୍ୱିତ ହେଉଥିଲା ।

ବାଷ୍ପୀୟ ଜାହାଜ ଚାଲିବା ପରେ ଏବଂ ଇଂରେଜମାନେ ଓ ବହୁ ସାଧାରଣ ବ୍ୟକ୍ତି ସୈନ୍ୟବାହିନୀ ସହିତ ଓ ମାଲ ଇତ୍ୟାଦି ଧରି ଏଠାରେ ପହଁଞ୍ଚିବା ପରେ ବମ୍ବେ, କଲିକତା ଓ ମାନ୍ଦ୍ରାଜ ବନ୍ଦର ବିଶ୍ୱସ୍ତରର ବନ୍ଦର ରୂପେ ପରିଗଣିତ ହୋଇଥିଲା । ଷୋଳଶହ ଓ ସତରଶହ ଶତାବ୍ଦୀରେ ପ୍ରତିଷ୍ଠିତ ପଶ୍ଚିମାଞ୍ଚଳ ଉପକୂଳର ସୁରଟ ଓ କାମ୍ବି ବନ୍ଦରର ପ୍ରାଧାନ୍ୟ କ୍ରମେ ପଟୁମାଟି ଜମିବା ଦ୍ୱାରା କମି ଯାଇଥିଲା । ଏଠାକାର ବନ୍ଦରାଞ୍ଚଳ ବାଲିପୂର୍ଣ୍ଣ ହୋଇ ଯାଇଥିଲା ଏବଂ ସମୁଦ୍ରସୀମା ବହୁ ଦୂରକୁ ଚାଲିଯାଇ ସହର ଆଗକୁ ମାଡ଼ି ଯାଇଥିଲା । ବର୍ତ୍ତମାନ ପୂର୍ବେ ଯେ ଏହି ସହର ଏକ ବଡ଼ ବନ୍ଦର ଥିଲା, ତାହା ବିଶ୍ୱାସ କରିବା କଷ୍ଟକର ।

କଲିକତା ଓ ବମ୍ବେର ସ୍ୱତନ୍ତ୍ର ଗୁରୁତ୍ୱ ଓ ବିଭବ ଏହାର ସୁନ୍ଦର ପୋତାଶ୍ରୟ ଯୋଗୁ ସମ୍ଭବ ହୋଇପାରିଛି । ବର୍ତ୍ତମାନ ସେମାନଙ୍କର ଜୀବନ ଯାତ୍ରା ବିଶ୍ଳେଷଣ କରି ଦେଖାଯାଉ ଯେ ଏହା କିପରି ବନ୍ଦରକୁ ସାହାଯ୍ୟ କରୁଛି । କଲିକତା ଏପରି ଏକ ସ୍ଥାନରେ ଅବସ୍ଥିତ, ଯେଉଁଠାରେ ପ୍ରଚୁର ଝୋଟ, ଧାନ ଓ ଚା ରପ୍ତାନୀ ହୋଇଥାଏ । ଏହି ସବୁ ପଦାର୍ଥ କଲିକତାରେ ସଂଗ୍ରହ କରାଯାଇ ସେଠାରୁ ଜାହାଜ ଯୋଗେ ଅନ୍ୟ ଦେଶକୁ ପଠାଯାଏ । ଦୁଇଟି ଧୀର ଓ ପ୍ରଶସ୍ତ ନଦୀ ବ୍ରହ୍ମପୁତ୍ର ଓ ଗଙ୍ଗା ଦ୍ୱାରା ମଧ୍ୟ ଜିନିଷ ପତ୍ର ବନ୍ଦର ଯାଏଁ ପଠାଯାଇଥାଏ । ଏହି ପ୍ରକାର ପରିବହନ ବ୍ୟବସ୍ଥା ରେଳ ଓ ରାସ୍ତାର ପରିବହନ ବ୍ୟବସ୍ଥାଠାରୁ ଶସ୍ତା ।

ଅନ୍ୟ ପକ୍ଷରେ ବମ୍ବେର ମୁଖ୍ୟ ରପ୍ତାନୀ ଦ୍ରବ୍ୟ ହେଉଛି କପା । ଯେ ହେତୁ ବମ୍ବେ ନିକଟବର୍ତ୍ତୀ ଅଞ୍ଚଳରେ କପାଚାଷ ହୋଇଥାଏ, କଲିକତାଠାରୁ ବମ୍ବେରେ ଏହାକୁ ଜାହାଜରେ ପଠାଇବା ସୁବିଧାଜନକ ହୋଇଥାଏ । ଏହା ହିଁ ବମ୍ବେର ଦ୍ରୁତ ଉନ୍ନତି ଓ ସମୃଦ୍ଧି ପାଇଁ ଦାୟୀ । ବମ୍ବେ ବନ୍ଦରରେ ଜିନିଷପତ୍ର ପହଁଞ୍ଚାଇବାକୁ ସ୍ଥଳଭାଗରୁ କୌଣସି ପ୍ରକାର ନଦୀପଥ ନାହିଁ । ତେଣୁ ଏହା ମାଲ ପରିବହନ ପାଇଁ ରେଳ ଉପରେ ନିର୍ଭର କରିଥାଏ । ବେପାର ବଣିଜ ଦ୍ୱାରା ବମ୍ବେର ଆକାର ବଢ଼ିଯିବାରୁ ଅନେକ ଗୁଡ଼ିଏ ସମସ୍ୟା ଏଠାରେ ଅତି ଜଟିଳତର ଅବସ୍ଥାରେ ଆସି ପହଁଞ୍ଚିଲାଣି । ବମ୍ବେ ଏକ ଉପଦ୍ୱୀପ ଯାହାକି ମୁଖ୍ୟ ସ୍ଥଳଭାଗ ସହିତ ଏକ କ୍ଷୁଦ୍ର ଅଣ ଓସାରିଆ ଭୂମି ମାଧ୍ୟମରେ

ସଂଯୁକ୍ତ ହୋଇଛି ଆଉ କୌଣସି ଆଡ଼କୁ ଏହା ବଢ଼ିବାର ସମ୍ଭାବନା ନାହିଁ। ଯେଉଁସବୁ ଅବସ୍ଥା ବମ୍ବେକୁ ଏତେ ବିତ୍ତବଶାଳୀ କରିପାରିଛି, ସେଥି ମଧ୍ୟରୁ ଏହାର ଅବସ୍ଥିତି, ଏହାର ସୁନ୍ଦର ପୋତାଶ୍ରୟ ଏହାକୁ ଏତେ ଲୋକାରଣ୍ୟ କରିଦେଇଛି ଯେ ଏହା ଅଧିକ ଅପରିଷ୍କାର ଓ ବସତି ପାଇଁ କ୍ରମେ ଅନୁପଯୁକ୍ତ ହେଉଛି। ବସ୍ତୁତଃ କଲିକତା ଏବଂ ବମ୍ବେ ସହର ସେମାନଙ୍କର ସଫଳତାର ମୂଲ୍ୟ ପାଇସାରିଛନ୍ତି। ପୃଥିବୀର ସହରୀ ସଭ୍ୟତାର ଚରମ ସୀମାରେ ପହଁଞ୍ଚି ଏମାନେ ଅର୍ଣନିଶ୍ୱାସୀ ଅବସ୍ଥାରେ ରହିଛନ୍ତି।

ଏହି ସମୟରେ ଜାହାଜ ଚଳାଚଳ ପ୍ରତି ଥିବା ଆବଶ୍ୟକତା କମି ନାହିଁ। ଯଦିଓ ଉଡ଼ାଜାହାଜ ଚଳାଚଳ ପାଣି ଜାହାଜରେ ଯିବା ଯାତ୍ରୀଙ୍କ ସଂଖ୍ୟାକୁ କମାଇଦେଇଛି, କିନ୍ତୁ ଅଧିକାଂଶ ପଦାର୍ଥ ଓ ମାଲ ବର୍ତ୍ତମାନ ସୁଦ୍ଧା ସମୁଦ୍ର ପଥରେ ପରିବହନ କରାଯାଉଛି। ବମ୍ବେ ପୋତାଶ୍ରୟ ଅପେକ୍ଷା କରିଥିବା ଜାହାଜମାନଙ୍କ ଦ୍ୱାରା ପୂର୍ଣ୍ଣ ହୋଇ ରହିଛି, ଯେଉଁମାନେ ମାଲ ଖଲାସ କରିବାକୁ ଓ ନୂତନ ମାଲ ନେବାକୁ ଅପେକ୍ଷା କରି ରହିଛନ୍ତି। ଏହି ଜାହାଜମାନଙ୍କ ପାଇଁ ଅତ୍ୟଧିକ ଆଶ୍ରୟସ୍ଥଳୀ ନାହିଁ ଏବଂ ସେମାନେ ବାଧ୍ୟ ହୋଇ କିଛି ଦୂରରେ ଲଙ୍ଗର ପକାଇ ସମୟ ନଷ୍ଟ କରିବା ସହିତ ବିଳମ୍ବଜନିତ ଅର୍ଥଦଣ୍ଡ ଓ ଅସୁବିଧା ଭୋଗୁଛନ୍ତି।

ଏହା ସ୍ପଷ୍ଟ ଯେ ବମ୍ବେ ଶୀର୍ଷତା ଲାଭ କରିସାରିଛି ଏବଂ ଆମେ ଅଧିକ ବନ୍ଦର ଆବଶ୍ୟକ କରୁ। ମାଙ୍ଗାଲୋର ଏଥିପାଇଁ ନିର୍ମିତ ହୋଇଛି, ମାତ୍ର ଆମର ଆବଶ୍ୟକତା ଏତେ ଶୀଘ୍ର ବଢ଼ି ଚାଲିଛି ଯେ ଏହା ନିର୍ମିତ ହେବାବେଳକୁ ହୁଏତ ଏହାର ଆକାର ଆବଶ୍ୟକତା ପୂରଣ କରିପାରିବ ନାହିଁ। ଯଦି ଆମର ଲୋକସଂଖ୍ୟା ଏତେ ଶୀଘ୍ର ବଢ଼ିଯାଏ, ତେବେ ଆମେ ଯାହା ସବୁ ଯୋଜନା କରୁଛୁ, ତାହା ହୁଏତ ବ୍ୟବହାର ପାଇଁ ପ୍ରସ୍ତୁତ ହେବାବେଳକୁ ଆବଶ୍ୟକତା ପୂରଣ ପାଇଁ ଯଥେଷ୍ଟ ହେବ ନାହିଁ। ବର୍ତ୍ତମାନ ସୁଦ୍ଧା କାକିନଡ଼ା, ମାନଡ଼ଭି ଓ ବିଶାଖାପାଟଣା ବନ୍ଦର ଗୁଡ଼ିକ ଖୁବ୍ ଜୋରରେ ବିସ୍ତାରିତ ହେଉଛି।

ପୂର୍ବେ ପ୍ରାୟ 50 ବର୍ଷ ତଳେ ବନ୍ଦରଗୁଡ଼ିକ ସୁନ୍ଦର ଓ ମନୋମୁଗ୍ଧକର ସ୍ଥାନ ଥିଲା। ଗଭୀର ଜଳ ଉପରେ ବହୁ ପ୍ରକାରର ଚିତ୍ର ଉଦ୍ଭାସିତ ହେଉଥିଲା। ବିରାଟକାୟ ସୌଖିନ ଜାହାଜଠାରୁ ତୈଳବାହୀ ଜାହାଜ, ମାଲବାହୀ ଜାହାଜ, ଲଞ୍ଚ ପ୍ରଭୃତି ଏଠାରେ ଚଳନକ୍ଷମ ରହିଥିଲା। ଜାହାଜଘାଟୀ ଅଞ୍ଚଳର ନିଜସ୍ୱ

ସ୍ୱତନ୍ତ୍ର ଉତ୍ତେଜନା ରହିଛି। ବହୁ ସଂଖ୍ୟକ ବଗ ମାଇ ଉଡ଼ରା ଓ ଚଢ଼େଇ ସମୟରେ ଏଠାରେ ଉଡ଼ିବୁଲିବା ସହିତ, ଛୋଟ ଛୋଟ ବୋଟ ବିରାଟକାୟ ଜାହାଜକୁ ଟାଣି ଟାଣି ପୋତାଶ୍ରୟ ବାହାରକୁ ନେଉଥିବା, ବଡ଼ ବଡ଼ ଜାହାଜ ଚାରିପଟେ ରଙ୍ଗ ବେରଙ୍ଗର ବହୁ ଆକୃତିର ପକ୍ଷୀଙ୍କ ଭିଡ଼ ଏକ ସୁନ୍ଦର ଚିତ୍ର ଏଠାରେ ସୃଷ୍ଟି କରିଥାଏ। ବର୍ତ୍ତମାନ ଅତ୍ୟଧିକ ଗହଳି ହେବା ଫଳରେ ପୋତାଶ୍ରୟ କୂଳ ଏପରି ଅପରିଷ୍କାର ହୋଇଛି ଯେ ଏଠାକୁ ଯାଇ ଆସୁଥିବା ଓ ଯାଉଥିବା ଜାହାଜକୁ ଦେଖିବା କଷ୍ଟକର ହେଲାଣି। ତୈଳ ହିଁ ଅପରିଷ୍କୃତ ପଦାର୍ଥ ସୃଷ୍ଟି କରିବାପାଇଁ ସବୁଠୁ ଅଧିକ ଦାୟୀ। ବନ୍ଦର ଅଞ୍ଚଳର ଜଳ ସାଧାରଣତଃ ଭାସୁଥିବା ତୈଳ ବିନ୍ଦୁ ଓ ଅନ୍ୟାନ୍ୟ ଭାସମାନ ଅଳିଆ ଆବର୍ଜନାରେ ପୂର୍ଣ୍ଣ। ଯଦି ଗୋଟିଏ ତୈଳବାହୀ ଜାହାଜ ବୁଡ଼ିଯାଏ ବା ଏଥିରେ କଣା ହୋଇଯାଏ, ତେବେ ସମୁଦ୍ରଜଳ ମାଇଲ ମାଇଲ ବ୍ୟାପି ତୈଳ ଦ୍ୱାରା ଆଚ୍ଛାଦିତ ହୋଇଯାଏ। ଏହାଦ୍ୱାରା ଯେତେ କ୍ଷତି ହୁଏ, ତାହାକୁ ଠିକ ଭାବେ ସ୍ଥିର କରିବା ସମ୍ଭବ ନୁହେଁ। କିନ୍ତୁ ଯେତେବେଳେ ଏହା ଘଟେ, ଏହା ଜଣାଶୁଣା ଯେ ବହୁ ସମୁଦ୍ର ପକ୍ଷୀ ମୃତ୍ୟୁ ବରଣ କରନ୍ତି, କାରଣ ତୈଳ ସେମାନଙ୍କ ପରରେ ଲାଗିଯିବାରୁ ସେମାନେ ଉଡ଼ିପାରନ୍ତି ନାହିଁ। ଆମେ ଏହି ପକ୍ଷୀମାନଙ୍କ ବିଷୟରେ ଜାଣିପାରୁ, କାରଣ ସେମାନେ ଜଳ ଉପରେ ପହଁରୁଥାନ୍ତି ଓ ଦେଖାଯାଆନ୍ତି। କେତେ ମାଛ ମରନ୍ତି, କିପରି ଭାବେ ସମୁଦ୍ରକୂଳ ଉଦ୍ଭିଦରାଜି ଆକ୍ରାନ୍ତ ହୁଅନ୍ତି, ଇତ୍ୟାଦି ପ୍ରଶ୍ନର ସଠିକ ଉତ୍ତର ଆମେ ଜାଣି ନାହୁଁ। ଯେହେତୁ ଜଳ ଉପରେ ଏକ ତୈଳସ୍ତର ରହିବା ଦ୍ୱାରା ଅମ୍ଳଜାନ ମିଶ୍ରଣ ପ୍ରକ୍ରିୟା ବନ୍ଦ ହୋଇଯାଏ, ଏହା ଆମେ ଆଶା କରିବା ଯେ ଏହାଦ୍ୱାରା ବହୁଜାତିର ଜଳଜୀବ ଅଣନିଶ୍ୱାସୀ ହୋଇପଡ଼ନ୍ତି। ଥର୍ ହାୟରଡ଼ାଲ କହିଛନ୍ତି ଯେ ସେ ଯେତେବେଳେ ପ୍ରଶାନ୍ତ ମହାସାଗର ଦେଇ ଏକ ଭାସମାନ ଭେଳାରେ ଯାତ୍ରା କରୁଥିଲେ ସେ ଏପରି କମ୍ ଅଞ୍ଚଳ ଦେଖିଥିଲେ ଯେଉଁଠାରେ କି ତୈଳ ଭାସୁନାହିଁ। ହଠାତ ଏହି ସମସ୍ୟା ଏକ ବିଶ୍ୱବ୍ୟାପୀ ବିପଦ ରୂପେ ଦେଖାଦେଇଛି।

ସାଗର ପ୍ରଦୂଷଣ ବିଷୟରେ ଆମେ ନିକଟରେ ସଚେତନ ହେଲୁ। ସିଧାସଳଖ ଭାବେ ହେଉ ବା ପରୋକ୍ଷ ଭାବେ ହେଉ ଆମର ବର୍ଜ୍ୟ ବସ୍ତୁର ବହୁଭାଗ ଶେଷରେ ସମୁଦ୍ରକୁ ହିଁ ଯାଇଥାଏ। ସ୍ଥଳଭାଗ ବା ସମୁଦ୍ର ଉଦ୍ଭିଦଙ୍କ ଦ୍ୱାରା ମଣିଷ ଓ ପ୍ରାଣୀଙ୍କ ବର୍ଜ୍ୟ ବସ୍ତୁ ଅତିଶୀଘ୍ର ଗ୍ରହଣୀୟ ହୋଇଥାଏ।

ତେଣୁ ନୂତନଭାବେ ପ୍ରସ୍ତୁତ ରାସାୟନିକ ପଦାର୍ଥ ଯାହାକି ଗ୍ରହଣୀୟ ହୁଏ ନାହିଁ, ତାହା ହିଁ ହେଉଛି ପ୍ରକୃତ ପ୍ରଦୂଷଣକାରୀ। ଏହା ବ୍ୟତୀତ ଏବେ ମଣିଷଙ୍କ ସଂଖ୍ୟା ଏତେ ବଢ଼ିଯାଇଛି ଯେ ସମୁଦ୍ର ଆଉ ଅଧିକ ଦିନ ଯାଏଁ ଏତେ ପରିମାଣର ବର୍ଜ୍ୟ ବସ୍ତୁକୁ ଗ୍ରହଣ କରିପାରିବ, ଏଥିନେଇ ସନ୍ଦେହ ସୃଷ୍ଟି ହେଲାଣି।

ଆମମାନଙ୍କ ମଧ୍ୟରୁ ଅନେକ ଲୋକ ଭାବନ୍ତି ଯେ ସମୁଦ୍ର ହେଉଛି ଅସୀମ, ଅଶେଷ ଓ ଅଧ୍ୱଂସୀ। ଗୋଟିଏ ସାମାଜିକ ବିଶ୍ୱାସ ହେଉଛି ଯେ ଯେହେତୁ ସମୁଦ୍ର ଅସୀମ, ତେଣୁ ଏହା ବହୁ କଷ୍ଟ ସହିପାରେ। ପ୍ରଦୂଷଣ ପ୍ରକ୍ରିୟା ଏବେ ସୀମା ଟପି ସାରିଲାଣି ଏବଂ ସମୁଦ୍ର ଜୀବ ବର୍ତ୍ତମାନ ବିପଦର ସମ୍ମୁଖୀନ। ଆମେ ଏବେ ଅନୁଭବ କଲେଣି ଯେ ଯେପରି ସ୍ଥଳଭାଗର ସଜୀବ ପଦାର୍ଥ ପରସ୍ପର ସହିତ ସଂଯୁକ୍ତ ଓ ନିର୍ଭରଶୀଳ, ସେହିପରି ସମୁଦ୍ରରେ ମଧ୍ୟ ଗୋଟିଏ ପଦାର୍ଥର ବିନାଶ ସମଗ୍ର ଅଞ୍ଚଳର ବିନାଶର କାରଣ ହୋଇପାରେ। ତେଣୁ ଆମେ ବୁଝିବା ଉଚିତ ଯେ ଯଦି କ୍ରମାଗତ ଭାବେ ଆମେ ସମୁଦ୍ରକୁ ଏକ ବିରୋଧୀ ପାତ୍ର ଭାବେ ଭାବିବା, ଆମେ ଏହାକୁ ମାରିଦେବା, ଅର୍ଥାତ ଏହା ଭିତରେ ଥିବା ପ୍ରତ୍ୟେକ ଜୀବନ୍ତ ପଦାର୍ଥକୁ ଆମେ ମାରିଦେବା। ସେତେବେଳେ ପ୍ରଶ୍ନ ଉଠିବ ଯେ ଆମେ ବା ଆମର ବର୍ଜ୍ୟ ବସ୍ତୁ ଆମେ କେଉଁଠାକୁ ଫିଙ୍ଗିବା ? ଏହାର ଉତ୍ତର କ୍ଷୁଦ୍ର, ସହଜ କିନ୍ତୁ କଷ୍ଟକର। ଆମକୁ ଏ ପ୍ରକାର ବସ୍ତୁ ପ୍ରସ୍ତୁତ କରିବା ବନ୍ଦ କରିବାକୁ ହେବ ଯେଉଁଗୁଡ଼ିକ କି ଭୂମି, ପାଣି ଓ ବାୟୁ ଦ୍ୱାରା ଗ୍ରହଣୀୟ ହେଉ ନଥିବ, ମଣିଷ ଓ ପ୍ରାଣୀ, ପରିବାରୁ ମିଳୁଥିବା ପ୍ରାକୃତିକ ବାଜେ ବସ୍ତୁ ହେଉଛି ଜୀବନଚକ୍ରର ଏକ ଅଂଶ। ସେମାନେ ଏହା ତ୍ୟାଗ କରି ଆକୃତି ପରିବର୍ତ୍ତନ କରି ଅନ୍ୟ ଜୀବନ୍ତ ବସ୍ତୁ ପରି ବୃଦ୍ଧିପ୍ରାପ୍ତ ହୋଇଥାନ୍ତି। ଉଦାହରଣ ସ୍ୱରୂପ, ପ୍ରାଣୀଙ୍କ ମଳମୂତ୍ର ମାଟି ସହିତ ମିଶିଯାଏ। ସେଥିରେ ଥିବା ରାସାୟନିକ ଉପସ୍ଥିତି ଭାଙ୍ଗିଯାଏ ଏବଂ ଚେର ସାହାଯ୍ୟରେ ଏହା ଉଦ୍ଭିଦ ଶରୀରକୁ ଯାଇ ତାକୁ ବଢ଼ିବାରେ ସାହାଯ୍ୟ କରେ। ଯେତେବେଳେ ଉଦ୍ଭିଦ ମରିଯାଏ, ମୃତପତ୍ର ଇତ୍ୟାଦି ମଧ୍ୟ ମାଟି ସହିତ ମିଶିଯାଏ ଏବଂ ପୁନର୍ବାର ସେହି ଉଦ୍ଭିଦ ଦ୍ୱାରା ଗୃହୀତ ହୋଇ ଏହି ଜୀବନଚକ୍ରକୁ ସଂଚାଳିତ କରେ କିମ୍ବା କେତେକ ପ୍ରାଣୀ ଯେତେବେଳେ କୌଣସି ଉଦ୍ଭିଦକୁ ଖାଇଯାଆନ୍ତି, ଏହି କ୍ଷେତ୍ରରେ ଡାଳ ଇତ୍ୟାଦି ଜୀବଜନ୍ତୁଙ୍କ ଠାରୁ ବର୍ତ୍ତି ଯାଇ ଗଛଟିକୁ ପୁନର୍ବାର ବଢ଼ାଇନିଏ ଓ ଏହା ଶରୀର ଭିତରେ

ପଣି ପୁନର୍ବାର ମାଟିର ଏକ ଅଂଶ ବନିଯାଏ।

ଏହି ଚକ୍ରାକାର ଗତି ସବୁବେଳେ ଚାଲିଥାଏ ଏବଂ ଏହାର ଶେଷ ନ ଥାଏ। ନିକଟ ଅତୀତରେ ଆମେ ମଣିଷମାନେ ଏପରି ପଦାର୍ଥ ଆବିଷ୍କାର କରିଛୁ ଯାହାକି ଏହି ଜୀବନଚକ୍ରରେ ସାମିଲ ହୋଇପାରେନାହିଁ, ଯାହାକି ପ୍ରବେଶ କରିବା ପରେ ଶେଷରେ ମୃତ ଅବସ୍ଥା ସୃଷ୍ଟି କରେ। ଏହା ହେଉଛି ଏପରି ପଦାର୍ଥ ଯାହାକି ରାସାୟନିକ ପଦାର୍ଥରେ ପୃଷ୍ଟ ଏବଂ ଯାହା କେବେ ହେଲେ ମଧ୍ୟ ପ୍ରାକୃତିକ ପଦ୍ଧତିର ଅଂଶ ହୋଇପାରିବ ନାହିଁ। ଏଗୁଡ଼ିକୁ ଅଜୈବ ମିଶ୍ରିତ ପଦାର୍ଥ କୁହାଯାଏ। ଏହି ଶ୍ରେଣୀଭୁକ୍ତ ପଦାର୍ଥଗୁଡ଼ିକ ହେଲା ପ୍ଲାଷ୍ଟିକ ଓ ସାବୁନ ଇତ୍ୟାଦି। ବର୍ତ୍ତମାନ ଏହି ପଦାର୍ଥଗୁଡ଼ିକ ସାରା ବିଶ୍ୱରେ ଅତ୍ୟାବଶ୍ୟକ ଦୈନନ୍ଦିନ ବ୍ୟବହାର୍ଯ୍ୟ ପଦାର୍ଥରୂପେ ପରିଚିତ। ଏପରିକି ଆମର ପୁରାତନ ପିତଳ ପାଣି ରଖିବା ମାଠିଆ ଏବେ ପ୍ଲାଷ୍ଟିକ ଦ୍ୱାରା ପରିବର୍ତ୍ତିତ ହେଲାଣି। ଆମେ ସାବୁନକୁ ବହୁଳ ଭାବେ ବ୍ୟବହାର ଓ ଅପବ୍ୟବହାର କରୁଛୁ। ଅନ୍ୟ ବିକାଶଶୀଳ ଦେଶ ତୁଳନାରେ ଆମ ଦେଶରେ ହୁଏତ ଏହା କମ ହୋଇପାରେ। ମାତ୍ର ଆମେ କ୍ରମାଗତ ଭାବେ ଯେଉଁ ଭାବରେ ଏହାର ବ୍ୟବହାର କରୁ, ଏହା ଜଳ ଭାଗର ପ୍ରଦୂଷଣ ବଢ଼ାଇବା ସହ ଶେଷରେ ସମୁଦ୍ର ସହିତ ମିଶିଯାଏ। ଆମେ ଯାହା ଦେଖୁ ସବୁ ଜଳ ଶେଷରେ ସମୁଦ୍ରରେ ମିଶିଥାଏ। ଯଦି ପାଣି ପ୍ରଦୂଷିତ ହୁଏ, ଏହା ସୁସ୍ପଷ୍ଟ ଯେ ସମୁଦ୍ର ମଧ୍ୟ ପ୍ରଦୂଷିତ ହେବ।

ଗଭୀର ସାଗର ପ୍ରଦୂଷଣକୁ କେବଳ ଆନ୍ତର୍ଜାତିକ ସହଯୋଗ ଦ୍ୱାରା ସମାଧାନ କରାଯାଇ ପାରିବ। ମାତ୍ର ପ୍ରଦୂଷଣ ସମସ୍ୟା ଓ ଆମର ନିଜର ଉପକୂଳକ୍ଷୟ ହେଉଛି ଆମର ସ୍ୱତନ୍ତ୍ର ସମସ୍ୟା ଯାହାକି ଜନସଚେତନତା ଦ୍ୱାରା ରୋକାଯାଇ ପାରିବ। ପ୍ରଦୂଷଣ ଅର୍ଥ ମଇଳା ବା ଅନ୍ୟାର୍ଥରେ ପଦାର୍ଥକୁ ଭୁଲ ସ୍ଥାନରେ ପକାଇବା। ପ୍ରଦୂଷଣର ବିଭିନ୍ନ ପ୍ରକାର ଭେଦ ରହିଛି। ମାତ୍ର ଏକ କ୍ଷୁଦ୍ର ପ୍ରଦୂଷିତ ଅଂଶ ମଧ୍ୟ ପ୍ରାକୃତିକ ସମ୍ପଦକୁ ସଂକ୍ରମଣ କରି ଆବଶ୍ୟକ କାର୍ଯ୍ୟ ଓ ଗତିକୁ ବନ୍ଦ କରିଥାଏ। ଆମେ ଜାଣୁ ଯେ ଉପକୂଳ ଅଞ୍ଚଳର ଜଳାଶୟ, ନାଳ ପ୍ରଦୂଷଣ ଯୋଗୁଁ ମତ୍ସ୍ୟ ଅଣ୍ଡାଦେବା ବନ୍ଦ ହୋଇ ଯାଇଥାଏ ଏବଂ ଫଳତଃ ଏହା ଗଭୀର ସମୁଦ୍ରର ମତ୍ସ୍ୟ ସଂଖ୍ୟାକୁ କମାଇ ଦେଇଥାଏ। ମାତ୍ର ବନ୍ୟର ମହିମ କ୍ରିକର ଅତ୍ୟଧିକ ପ୍ରଦୂଷଣ ଉପକୂଳ ବାୟବୀୟ ବୃକ୍ଷରାଜିକୁ ମଧ୍ୟ ମାରି ଦେଇଥାଏ ଯେଉଁମାନେ

ବାଲି ଓ ପଙ୍କକୁ ଧରି ରଖି ସମୁଦ୍ରକୂଳକୁ ଅଧିକ କଠିନ କରିଥାନ୍ତି। ଉପକୂଳବର୍ତ୍ତୀ ଭୂମି ଓ ନଦୀମୁହାଣ ଅଞ୍ଚଳ ଅତ୍ୟଧିକ ଉର୍ବର। ନଦୀ ଦ୍ୱାରା ଧୋଇ ହୋଇ ଯାଇଥିବା ମୃତ୍ତିକା ମୁହାଣର ସମତଳ ଅଞ୍ଚଳରେ ଜମା ହୋଇ ମୃତ୍ତିକାକୁ ଉର୍ବର କରିଥାଏ। ଏହି ଉପହ୍ରଦ ଅଞ୍ଚଳରେ ମଧ୍ୟ ମାଛମାନେ ବଢ଼ିଥାନ୍ତି। ଜଳ ଉଦ୍ଭିଦରାଜି ଉପକୂଳ ଅଞ୍ଚଳରେ ରହିଥିଲେ ଏହା ପ୍ରଦୂଷଣ ସମସ୍ୟାକୁ ବହୁ ଭାବରେ ଆୟତ୍ତ କରିଥାଏ କାରଣ ଗଛମାନେ ଅନେକ ବାଜେ ବସ୍ତୁକୁ ଗ୍ରହଣ କରି ନେଇଥାନ୍ତି।

ବୈଷୟିକ ଜ୍ଞାନକୌଶଳର ବିକାଶ ସଙ୍ଗେ ସଙ୍ଗେ ଏବେ ଆମେ ସମୁଦ୍ରରୁ ଅଧିକ ସଂଖ୍ୟକ ପଦାର୍ଥ ଉତ୍ପାଦନ କରିବାର ଉନ୍ନତ କୌଶଳ ଉଦ୍ଭାବନ କରିବା ପରେ ଉପକୂଳ ଅଞ୍ଚଳ ହିଁ ଅଧିକ ଭାବେ ଆକ୍ରାନ୍ତ ହେଉଛି। ସମୁଦ୍ର ଭିତରେ ତୈଳକୂପ ଖୋଳିବାକୁ ଆମେ ଏବେ ପ୍ରସ୍ତୁତ ଏବଂ ଆଣବିକ ଓ ତାପଜ କେନ୍ଦ୍ର ପ୍ରତିଷ୍ଠା ପାଇଁ ଓ ଶାମୁକା ବନ୍ଧକୁ ଆଣି ସେଥିରୁ ଆମେ ଏବେ ସିମେଣ୍ଟ ପ୍ରସ୍ତୁତ କରୁଛୁ। ଏଥିପାଇଁ ପ୍ରତ୍ୟେକ କାର୍ଯ୍ୟପାଇଁ ପ୍ରାକୃତିକ ପରିବେଶର ଏକ ବିରାଟ ଉପକୂଳ ଅଞ୍ଚଳ କ୍ଷତିଗ୍ରସ୍ତ ହେଉଛି ଓ ପ୍ରାକୃତିକ ଜୀବନ, ବହୁ ପ୍ରାକୃତିକ ସମ୍ପଦ, ମାଛ, ଉଦ୍ଭିଦରାଜି ଓ ଅନ୍ୟ ପ୍ରାଣୀ ନଷ୍ଟ ହେଉଛନ୍ତି। ଉଦାହରଣ ସ୍ୱରୂପ, ତୈଳ ପାଇଁ ସାଗର ବକ୍ଷ ଖୋଳିବା ପାଇଁ ବହୁ ଯନ୍ତ୍ରପାତି, ପାଇପ୍ ଓ ଜନବସତି ଆବଶ୍ୟକ ହେଉଛି। ଏହି ପ୍ରକାରର ପରିବର୍ତ୍ତନ ଯୋଗୁଁ ସେହି ଅଞ୍ଚଳର ପ୍ରାକୃତିକ ସ୍ଥିତାବସ୍ଥା ଠିକ୍ ରହିପାରୁ ନାହିଁ। କୌଣସି ମତାମତ ବ୍ୟତୀତ ଏ ପ୍ରକାର ଯୋଜନାଗୁଡ଼ିକ ଠିଆ ହୋଇ ଯାଉଛି। ମାତ୍ର ଏହା କରିବା ପୂର୍ବରୁ ଏହାର ବହୁମୁଖୀ ବିସ୍ତୃତ ପରବର୍ତ୍ତୀ ଅବସ୍ଥା ବିଷୟରେ ପୂର୍ଣ୍ଣଚିତ୍ର ପ୍ରତି ଲକ୍ଷ୍ୟ ଦିଆଯିବା ଉଚିତ ଏବଂ ପ୍ରତ୍ୟେକ ଯୋଜନାର ସୁଫଳ ଓ କୁଫଳକୁ ମଧ୍ୟ ତର୍ଜ୍ଜମା କରାଯିବା ଦରକାର। ହୁଏତ ଏହାଦ୍ୱାରା ଦେଖାଯିବ ଯେ ପରୀକ୍ଷା ଦ୍ୱାରା ବହୁଦିନ ପରେ ଶାନ୍ତ ପରିବେଶରେ ଥିବା ଏକ ଉପକୂଳ ଅଞ୍ଚଳରୁ ମିଳୁଥିବା ଲାଭ ତୈଳ କୂପ ଖୋଳା ଲାଭଠାରୁ ଅଧିକ ହେବ।

ଭାରତ ମହାସାଗର ଓ ବଙ୍ଗୋପସାଗରରେ ଯାହା ସବୁ ଘଟେ, ତାର ପ୍ରଭାବ ଆମ ଦେଶ ଉପରେ ପଡ଼ିଥାଏ। ମାତ୍ର ଆମର ମୁଖ୍ୟ ଦାୟିତ୍ୱ ହେଉଛି, ଆମେ ଆମର ଉପକୂଳ ଅଞ୍ଚଳର ସମୃଦ୍ଧି ଓ ପ୍ରାକୃତିକ ଅବସ୍ଥାର ସୁରକ୍ଷା କରିବା। ଏହାର ପ୍ରକୃତ ଅର୍ଥ ହେଉଛି, ଆମେ ଏହାକୁ

ଶାନ୍ତ ପରିବେଶ ମଧ୍ୟରେ ବୃଦ୍ଧି ପାଇବାକୁ ଛାଡ଼ି ଦେବାକୁ ଶିକ୍ଷା କରିବା ଉଚିତ। ଆମେ ସମୁଦ୍ରକୂଳର ପ୍ରାକୃତିକ ପରିବେଶ ଉପରେ ହସ୍ତକ୍ଷେପ କରିବା ଉଚିତ ନୁହେଁ। ସମୁଦ୍ର ନିଜେ ଉପକୂଳ ଅଞ୍ଚଳ ସହିତ ରକ୍ଷାକରି ଆସିଥିବା ସମ୍ପର୍କରେ ଆମେ ବ୍ୟାଘାତ ସୃଷ୍ଟି କରିବା ଉଚିତ ନୁହେଁ। ଯଦି ଆମେ ଦେଖିବା ଯେ ସମୁଦ୍ର ମାଡ଼ି ଆସୁଛି ଏବଂ ଆମ ବସତିର ଖୁବ ନିକଟରେ ପହଁଞ୍ଚିଯାଇଛି, ସେତେବେଳେ ଆମେ ସମୁଦ୍ରକୁ ପଛକୁ ଘୁଞ୍ଚାଇ ନେବାକୁ ଚେଷ୍ଟା ନ କରି ଆମର ଲୋକ ବସତିକୁ ପଛକୁ ଦୂରବର୍ତ୍ତୀ ଭୂମିକୁ ଘୁଞ୍ଚାଇ ଆଣିବା ଦରକାର।

ଦୁର୍ଭାଗ୍ୟଜନକ ଭାବେ ଆମେ ସବୁବେଳେ ଉପକୂଳ ସମୁଦ୍ରସୀମାରୁ ଅଧିକ ସ୍ୱାଧୀନତା ପାଇବାକୁ ଆଶାବାଦୀ। ଆମେ ଉପକୂଳବର୍ତ୍ତୀ ଗୋଟିଏ ଅଞ୍ଚଳକୁ ପୋତି ଏହାକୁ ଆମ ନଗରର ଏକ ଅଞ୍ଚଳରେ ପରିଣତ କରିବାକୁ ମଧ୍ୟ ଚେଷ୍ଟାଶୀଳ। ଉଦାହରଣ ସ୍ୱରୂପ, ବମ୍ବେରେ ଆମେ ମେରାଇନ ଡ୍ରାଇଭ ଓ ନରିମ୍ୟାନ ପଏଣ୍ଟ ଅଞ୍ଚଳକୁ ଉନ୍ନତି କରିବା ଫଳରେ ସମୁଦ୍ର ଅନ୍ୟ ଅଞ୍ଚଳକୁ ଖାଇଯାଇ ଭରଶୋଭା ଗ୍ରାମକୁ ନଷ୍ଟ କରିଦେଇଛି। ମହାବଳୀପାଟଣାଠାରେ ଗୋଟିଏ ମନ୍ଦିର ସମୁଦ୍ର ଭିତରେ ଲୀନ ହେବା ଅବସ୍ଥାରେ ରହିଛି ଏବଂ ଆମେ ସମୁଦ୍ରକୁ ପଛକୁ ଘୁଞ୍ଚାଇବାକୁ ଚେଷ୍ଟା କରି ଏଠାରେ ବାଲି ପୋତୁଛୁ। ସ୍ଥାନୀୟ ବାସିନ୍ଦାମାନେ ଅଭିଯୋଗ କରୁଛନ୍ତି ଯେ ସମୁଦ୍ର ଲହରୀ ଏହାଦ୍ୱାରା ପରିବର୍ତ୍ତିତ ହେଉଛି ଓ ସେମାନଙ୍କ ଘରଦ୍ୱାର ସମୁଦ୍ର ଦ୍ୱାରା ଆକ୍ରାନ୍ତ ହେବାର ବିପଦ ଦେଖାଦେଇଛି। ଆମେ ଭୁଲିଯାଉଛୁ ଯେ ପାଣିକୁ କେବେହେଲେ ଦବାଇ ରଖାଯାଇ ପାରିବ ନାହିଁ, ଏବଂ ଯଦି ଆମେ ଏକ ବର୍ଗଫୁଟ ଅଞ୍ଚଳ ଜଳଭାଗରୁ ପାଣି ଉଠାଇ ନେବା ସେହି ସ୍ଥାନ ଅନ୍ୟ ପ୍ରକାରରେ ପୂରଣ ହେବ ଯେଉଁଥିପାଇଁ ଆମେ ହୁଏତ ପ୍ରସ୍ତୁତ ନ ଥିବା ଏବଂ ଏହାକୁ ହୁଏତ ପସନ୍ଦ କରିବା ନାହିଁ।

ବାସ୍ତବିକ ପ୍ରାକୃତିକ ସମୁଦ୍ର ସୀମାରେଖା ଯାହାକି ସମୁଦ୍ରର ଏକ ଅଂଶ ତାର ପ୍ରାଧାନ୍ୟ ଏବେ ବଢ଼ି ଚାଲିଛି। ବହୁ ଦେଶ ସମୁଦ୍ରକୂଳରେ ଜଳଜଜାତୀୟ ପାର୍କ ଓ ବାଓସ୍ପିୟର ଭଣ୍ଡାର ନିର୍ମାଣ କଲେଣି। ଏହା ନମ୍ରତାର ସହିତ ଚିନ୍ତା କରିବା କଥା ଯେ ପୃଥିବୀରେ ହଜାର ହଜାର ମାଇଲର ସମୁଦ୍ର ଉପକୂଳ ଥିଲେ ମଧ୍ୟ ଆମେ ଯଦି ଆମର ଭବିଷ୍ୟତ ବଂଶଧରଙ୍କୁ ଏକ ସୁନ୍ଦର ଉପକୂଳ ଦେଖାଇବାକୁ ଚାହିଁବା, ତେବେ ଆଇନ ଦ୍ୱାରା ଏହାକୁ

ସୁରକ୍ଷା କରାଯିବା ଆବଶ୍ୟକ।

ଆମ ମାଛଧରା ଶିଳ୍ପ ପ୍ରଣାଳୀ ମଧ୍ୟ କ୍ରମେ ଖୁବ ଜୋରରେ ପରିବର୍ତ୍ତିତ ହୋଇଛି। ଶତାବ୍ଦୀ ଶତାବ୍ଦୀ ଧରି ପବନ ଦ୍ୱାରା ଚାଳିତ ଆମର ମାଛଧରା ଡ଼ଙ୍ଗା ଅତି ଭଲ ଥିଲା। ଏହାଦ୍ୱାରା କୌଣସି ତୈଳ, ଶକ୍ତି ଜାଳେଣି ଓ ବହୁ ଦୁର୍ଲଭ ବସ୍ତୁ ବ୍ୟବହାର କରା ନ ଯାଇ ପ୍ରଚୁର ମାଛ ଉତ୍ପାଦିତ ହେଉଥିଲା। ନୋଳିଆମାନେ ତାମିଲନାଡୁ ଉପକୂଳର କ୍ରୁର ସମୁଦ୍ରରେ ମାଛ ଧରିବା ପାଇଁ ବ୍ୟବହାର କରୁଥିବା ଚୁଲି ଡ଼ଙ୍ଗା ସବୁ ଦୃଷ୍ଟିରୁ ଉତ୍ତମ। ଏହା ମାତ୍ର କେତେ ଖଣ୍ଡ ହାଲୁକା କାଠକୁ ବାନ୍ଧି ଦିଆଯାଇ ଭସାଇ ନିଆଯାଏ। ଏହା କେବେ ବୁଡ଼େ ନାହିଁ କିମ୍ବା ଭାଙ୍ଗେ ନାହିଁ। ଏହା ମଧ୍ୟ କୌଣସି ଜାଳେଣି ଆବଶ୍ୟକ କରେ ନାହିଁ। କେଉଟ ବା ନୋଳିଆମାନେ ଅନ୍ୟ ଡ଼ଙ୍ଗା ଅପେକ୍ଷା ଏହାକୁ ଅଧିକ ପସନ୍ଦ କରିଥାନ୍ତି, କାରଣ ଏହା ସେମାନଙ୍କୁ କାମ କରିବାକୁ ଚଉଡ଼ା ସ୍ଥାନ ଦେବା ସହିତ ପାଣି ସହିତ ନିମ୍ନ ଅଞ୍ଚଳରେ ଏପରି ଥାଏ ଯେ ସମୁଦ୍ର ପ୍ରଦକ୍ଷିଣଜନିତ ଅସୁସ୍ଥତା ପ୍ରାୟ ହୁଏ ନାହିଁ। ମାତ୍ର ଏଥିରେ ଦୁର୍ବଳତା ହେଉଛି, ଏହା ବାୟୁ ଉପରେ ନିର୍ଭରଶୀଳ। ଆମ ଜଙ୍ଗଲ ସମ୍ପଦର କ୍ରମବିଲୋପ ଯୋଗୁଁ ଏହି ପ୍ରକାର କାଠ ପାଇବା ଏବେ କଷ୍ଟକର ହେଲାଣି। ତେଣୁ ନୋଳିଆମାନେ ଏବେ ଏହାକୁ ଛାଡ଼ି ଶକ୍ତିଚାଳିତ ଡ଼ଙ୍ଗା ବ୍ୟବହାର କଲେଣି ଯାହାକି ନୋଳିଆମାନଙ୍କ ଭଳି ପ୍ରକୃତିପୁତ୍ର ମାନଙ୍କ ପାଇଁ ଏକ ଦୁଃଖଦ ପରିବର୍ତ୍ତନ। ଏହା ପ୍ରକୃତିଠାରୁ ସେମାନଙ୍କୁ ଦୂରେଇ ନେଇଯିବା ସଙ୍ଗେ ସଙ୍ଗେ ଏମାନେ ଠିକ ଭାବେ ଏହାର କାର୍ଯ୍ୟକାରିତା ଜାଣିନଥିବାରୁ ଅସୁବିଧା ଭୋଗୁଛନ୍ତି। ଶକ୍ତିସମ୍ପନ୍ନ ଭୀଷଣ ଶବ୍ଦ ସୃଷ୍ଟି କରୁଥିବା ଲଞ୍ଚରୁ ତୈଳ ଡାଳି ହେବା ଦ୍ୱାରା ଓ ଗନ୍ଧ ସୃଷ୍ଟି କରିବା ସହିତ ଅନ୍ୟ ଏକ ସମ୍ପୂର୍ଣ୍ଣ ନୂତନ ଅବସ୍ଥା ଏଠାରେ ସୃଷ୍ଟି ହେଉଛି।

ମୋଟର ଲଞ୍ଚ ସାହାଯ୍ୟରେ ମାଛ ଧରିବା ଏକ ଶିଳ୍ପ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ। ଏହା ପ୍ରାକୃତିକ ଉପାୟରେ ସୃଷ୍ଟ ଏକ କୌଳିକ ବୃତ୍ତି ନୁହେଁ କିମ୍ବା ଜଣଙ୍କର ଜୀବିକାର୍ଜ୍ଜନ ପାଇଁ ଏକ ସାଧାରଣ ବ୍ୟବସାୟ ନୁହେଁ। ବହୁଳଭାବେ ମାଛ ଧରିବା ଏକ ବ୍ୟବସାୟିକ ଶିଳ୍ପ। ବଂଶାନୁକ୍ରମିକ ଭାବେ ମାଛ ଧରୁଥିବା ଲୋକେ ଏହାଦ୍ୱାରା କଠୋର ଅବସ୍ଥାର ସମ୍ମୁଖୀନ। ଯେଉଁମାନେ ହୁଏତ ପ୍ରତିଯୋଗିତା କରିପାରିବେ ନାହିଁ କିମ୍ବା ନୂଆ ବୈଷୟିକ ବିଦ୍ୟା ହାସଲ କରିପାରିବେ ନାହିଁ, ସେମାନେ ସେମାନଙ୍କର ଚଳି ଆସୁଥିବା

ଜୌବିକ ଜୀବିକାରେ ବହୁ ଅସୁବିଧାର ସମ୍ମୁଖୀନ ହେବେ। ଗୋଆର ମାଛ ଧରାଳୀମାନେ ନୂତନ ମୋଟର ବୋଟ ପ୍ରଚଳନ ପରେ ସେମାନଙ୍କର ବର୍ଷ ବର୍ଷର ମାଛ ଧରା ସ୍ଥାନରୁ ଏବେ ମାଛ ନ ପାଇ ଉପରକୁ ହାତ ଟେକି ବସିଛନ୍ତି। ନୀତିଗତ ଯୋଜନାଦ୍ୱାରା ଉପକୂଳଠାରୁ ତିନିମାଇଲ ସମୁଦ୍ର ଭିତରକୁ ବଂଶାନୁଗତିକ ମାଛ ଧରାଳୀଙ୍କୁ ମାଛ ଧରିବାକୁ ଅନୁମତି ଦିଆଯାଏ। ପାୱାର୍ ଟ୍ରଲର ମାନେ ଏହି ଅଞ୍ଚଳରେ ମାଛ ନ ଧରିବାକୁ ଆଇନରେ ନିୟମ ରହିଥିଲେ ସୁଦ୍ଧା ଏହାକୁ ପ୍ରାୟ କେହି ମାନନ୍ତି ନାହିଁ। ଅଧିକ ଦୂର ସମୁଦ୍ରରେ ଏହି ଟ୍ରଲର ମଧ୍ୟ ଦୃଢ଼ତାର ସହିତ ବିଦେଶୀ ଟ୍ରଲର ସହିତ ପ୍ରତିଦ୍ୱନ୍ଦିତା ମୂଳକ ସଂଘର୍ଷ କରିବାକୁ ହୋଇଥାଏ। ଏହି କାରଣରୁ ଟ୍ରଲରଗୁଡ଼ିକ ପ୍ରାୟ 200 ମାଇଲ ସମୁଦ୍ର ସୀମା ଭିତରେ ସୁରକ୍ଷିତ। ବର୍ତ୍ତମାନ ପ୍ରତ୍ୟେକ ଦେଶ ନିଜ ଉପକୂଳଠାରୁ 200 ମାଇଲ ସମୁଦ୍ର ଭିତର ପର୍ଯ୍ୟନ୍ତ ମାଛ ଧରିବାକୁ ସମ୍ପୂର୍ଣ୍ଣ ଅଧିକାରୀ। ପୁଣି ଏହି ନିୟମ ସବୁବେଳେ ରକ୍ଷା କରାଯାଏ ନାହିଁ, ଏବଂ ଭାରତ କ୍ଷେତ୍ରରେ ଆମେ ବହୁପ୍ରକାର ଅଭିଯୋଗ ଶୁଣୁ ଯେ ଜାପାନ, ତାଇୱାନ, ଦକ୍ଷିଣ କୋରିଆ ଓ ଥାଇଲ୍ୟାଣ୍ଡ ପ୍ରଭୃତି ଦେଶ ନିୟମ ଭଙ୍ଗ କରିଛନ୍ତି।

ଏହି ସମୟରେ ଆମର ଟ୍ରଲରଗୁଡ଼ିକ ସମୁଦ୍ର ଉପକୂଳକୁ ମାଛ ଧରାର ପ୍ରକୃଷ୍ଟ କ୍ଷେତ୍ର ରୂପେ ବ୍ୟବହାର କରି ବହୁତ ମାଛ ଧରିବାକୁ ଆଶା କରିଥାନ୍ତି। ସେମାନେ ଛୋଟକଣା ଥିବା ଏକ ଇଞ୍ଚର ତିନି ଭାଗରୁ ଏକ ଭାଗ ଯାଏଁ ଆକାରର ଛୋଟ ମାଛ ମଧ୍ୟ ଧରିଥାନ୍ତି ଯା' ଫଳରେ ମାଛର ବଂଶବୃଦ୍ଧି ଘଟେ ନାହିଁ। ଏହା ଗୁରୁତ୍ୱପୂର୍ଣ୍ଣ ଯେ ବଡ଼ କଣା ଥିବା ଜାଲ ସର୍ବଦା ବ୍ୟବହାର କରିବା ଉଚିତ।

ଚଳିତ ଶତାବ୍ଦୀ ଯାଏଁ ସମୁଦ୍ରକୁ ସଞ୍ଚାଳିତ କରୁଥିବା ନିୟମ ଅତି ସହଜ। ସମୁଦ୍ର ସମସ୍ତଙ୍କର ଅଧିକାରଭୁକ୍ତ, ପୁଣି କାହାରି ନୁହେଁ। ଯେ କୌଣସି ଜାହାଜ ଚଳାଚଳ କଲେ, ଜଳଯାତ୍ରାରେ ଗଲେ କିମ୍ବା କୌଣସି ଅଞ୍ଚଳରୁ ମାଛ ଧରିବାକୁ ଚାହିଁଲେ ଏହା କରିପାରିବ, ମାତ୍ର ଦେଶର ଉପକୂଳଠାରୁ ତିନିମାଇଲ ଭିତରେ ଏହା କରିପାରିବ ନାହିଁ। ଉପକୂଳବର୍ତ୍ତୀ 3 ମାଇଲ ଅଞ୍ଚଳ ଉପରେ ଦେଶର କର୍ତ୍ତୃତ୍ୱ ଥାଏ। ଆନୁମାନିକ ଭାବେ ଏହି ଅଞ୍ଚଳକୁ ମହାଦେଶର ସୀମାରେଖା କୁହାଯାଏ। ଏହି ଅଞ୍ଚଳରେ ସମୁଦ୍ର ସାଧାରଣତଃ ଅଗଭୀର ଥାଏ। ଏହି ସୀମା ଭିତରେ ଭୂମିନିୟମ ଯେ କୌଣସି ଜାହାଜ କ୍ଷେତ୍ରରେ

ପ୍ରୟୋଗ କରାଯାଇ ପାରେ ଏବଂ ଏହା ଏକ ସାହସିକ ପଦକ୍ଷେପ। କିନ୍ତୁ ଗତ ଅର୍ଦ୍ଧଶତାବ୍ଦୀ ଭିତରେ ସ୍ଥଳଭାଗ ପରି ସମୁଦ୍ର କ୍ଷେତ୍ରରେ ମଧ୍ୟ ବହୁ ପରିବର୍ତ୍ତନ ଘଟିଛି। ଆମେ ଜାଣିବାଠାରୁ ଅଧିକ ପରିମାଣର ଧନ ସମ୍ପତ୍ତି ସମୁଦ୍ର ଭିତରେ ରହିଥିବାର ପୃଥିବୀବାସୀ ଜାଣି ସାରିଲେଣି। ଜୀବନ୍ତ ମାଛ, ଶୈବାଳ ବ୍ୟତୀତ ଆମେ ଦେଖିଲୁଣି ଯେ ତୈଳ, ଗ୍ୟାସ ଓ ଖଣିଜ ସମ୍ପଦ ମଧ୍ୟ ସମୁଦ୍ର ଶଯ୍ୟାରେ ଥିବାର ଦେଖାଗଲାଣି। ତେବେ ଏସବୁ କାହାର ସମ୍ପତ୍ତି ? ଧରାଯାଉ ଏକ ବୈଦେଶିକ ଜାହାଜରୁ ତୈଳ ବାହାରି ଆମର ଉପକୂଳବର୍ତ୍ତୀ ଅଞ୍ଚଳର ଜଳକୁ ପ୍ଳାବିତ କରି ବହୁ ମାଛଙ୍କୁ ମାରିଦେଲା। ଏଥିପାଇଁ କିଏ ଦାୟୀ ହେବ; ଏବଂ ସେମାନେ କଣ ଆମକୁ କ୍ଷତିପୂରଣ ଦେବେ ?

ଆମେ ଜାଣୁ ଯେ ଏକ ଦେଶର ମାଛ ଉତ୍ପାଦନ ବହୁ ଭାବରେ କମିଯାଏ ଯଦି ଅଣ୍ଡାଦେବା ସ୍ଥାନ ଅନ୍ୟ ଦେଶରେ ରହିଥାଏ ଓ ବାରମ୍ବାର ମାଛ ଧରାଯାଏ। ଏ ପ୍ରକାର ଦାୟିତ୍ୱବୋଧ ଓ ନିର୍ଭରଶୀଳତାକୁ କିପରି ଭାବେ ଭାଗ କରାଯିବ ?

ବିଗତ 20ବର୍ଷ ଧରି ଏହି ପ୍ରଶ୍ନର ଆଲୋଚନା କରାଯାଇଛି ଏବଂ ବର୍ତ୍ତମାନ ସୁଦ୍ଧା ଏହାର କୌଣସି ସନ୍ତୋଷଜନକ ନିଷ୍ପତ୍ତି ମିଳିନାହିଁ। ପୁରାତନ କାଳରେ ସମୁଦ୍ରରୁ ମାଛଧରା ହିଁ କେବଳ ଏକମାତ୍ର ସିଧାସଳଖ ଲାଭ ଥିଲା। ବର୍ତ୍ତମାନ ସମୁଦ୍ର ଉପକୂଳରୁ ବହୁ ଉପାର୍ଜନ କରିବାର ସମ୍ଭାବନା ଏତେ ଅଧିକ ହୋଇଛି ଯେ ଏଥିପାଇଁ କୌଣସି ଚୁକ୍ତିନାମା କାମ କରୁନାହିଁ। ସେ ଯାହା ହେଉନା କାହିଁକି, ସମୁଦ୍ର ଆଇନ ରାଜିନାମା କେତେକଙ୍କ ଦ୍ୱାରା ପ୍ରମୁଖ ଭାବେ ଆଦୃତ ହୋଇଛି ଏବଂ ଆମ ସମୁଦ୍ର ନିୟମରେ କେତେକ ବଡ଼ ଧରଣର ବୁଝାମଣା କରାଯାଇଛି। ଉଦାହରଣ ସ୍ୱରୂପ, ଉପକୂଳ ଅଞ୍ଚଳ ଜଳର ଅଧିକାରକୁ ଏବେ ପୂର୍ବେ ଥିବା ତିନି ମାଇଲରୁ ବାର ମାଇଲ ଯାଏଁ ବଢ଼ାଇ ଦିଆଯାଇଛି। ଏହି ସୀମାପରେ ଅନ୍ୟ ଦେଶ ନୌକାଚାଳନା କରିବା, ଏହା ଉପରେ ଉଡ଼ିବା ଏବଂ ବୁଡ଼ାଜାହାଜ କେବୁଲ ବ୍ୟବହାର କରିବାର ଅଧିକାରୀ। ମାତ୍ର ଅନ୍ୟ ସମୁଦ୍ରଜାତ ଦ୍ରବ୍ୟ ଯଥା ମାଛ, ତେଲ, ଗ୍ୟାସ, ସମୁଦ୍ର ଗୁଳ୍ମ ଇତ୍ୟାଦି ଦୁଇଶହ ମାଇଲ ଯାଏଁ ଉପକୂଳବର୍ତ୍ତୀ ଦେଶର ମାଲିକାନା ଅନ୍ତର୍ଭୁକ୍ତ। ମାତ୍ର, ପୃଥିବୀରେ ବୈଷୟିକ ଜ୍ଞାନ କୌଶଳର ବହୁ ଉନ୍ନତି ଫଳରେ ସମୁଦ୍ର ଭିତରୁ ଏତେ ଅଧିକ ପଦାର୍ଥ ଉତ୍ପାଦିତ ହେଉଥିବାରୁ

ସମୁଦ୍ର ସମ୍ପର୍କରେ ଥିବା ନୀତି ନିୟମ ଠିକ ରୂପେ କାର୍ଯ୍ୟକାରୀ ହୋଇ ପାରୁ ନାହିଁ ଏବଂ ସମୁଦ୍ର ନିୟମ ରାଜିନାମା ପାଳନ କରିବା କ୍ଷେତ୍ରରେ ବହୁ ସମସ୍ୟା ଦେଖାଦେଉଛି। ସ୍ଥଳଭାଗ ରାଜିନାମା ଠାରୁ ଏହା ଅଧିକ ଜଟିଳ ହୋଇ ପଡୁଛି। ଏଥିରେ 150ଟି ଦେଶ ଅନ୍ତର୍ଭୁକ୍ତ ହୋଇଛନ୍ତି ଓ ତିନିଶହ ସତୁରିଟି ଧାରା ଆଲୋଚନା ପାଇଁ ରହିଛି। ଯଦି ଏହି ଚୁକ୍ତିନାମା ମତ ପାର୍ଥକ୍ୟ ଦୂର କରିବାରେ ସଫଳ ହୁଏ, ତେବେ ଏହା ଏକ ବଡ଼ ସଫଳତା ହେବ ଯାହାକି ବୈଷୟିକ ଜ୍ଞାନ କୌଶଳ, ରାଜନୀତି ଓ ପୃଥିବୀର ପରିବେଶ ଅବସ୍ଥାକୁ ସୁଧାରିବା ଦିଗରେ ଏକ ମିଳିତ କାର୍ଯ୍ୟକ୍ରମ ପ୍ରସ୍ତୁତ କରିପାରିବ।

ଆମେ ଯଦି ସମସ୍ୟାଗୁଡ଼ିକୁ ବିଶ୍ଳେଷଣ କରିବା, ଆମେ ଦେଖିବା ଯେ ସମୁଦ୍ର ପାଇଁ ମୁଖ୍ୟତଃ ଦୁଇଟି ବଡ଼ ବିପଦ ରହିଛି। ଗୋଟିଏ ହେଉଛି ନୂତନ ପଦ୍ଧତି, ଯାହାଦ୍ୱାରା ପରମ୍ପରାଗତ କାର୍ଯ୍ୟକ୍ରମ ଚାଲୁରହିଛି, ଅର୍ଥାତ ନୂଆ ପଦ୍ଧତିରେ ମାଛ ଧରିବା, ତୈଳ ପ୍ରଦୂଷଣ, ସମୁଦ୍ର ସମ୍ପଦର ଉତ୍ତୋଳନ ଓ ବାୟବୀୟ ଉଦ୍ଭିଦର ବିନାଶ ଇତ୍ୟାଦି। ବର୍ତ୍ତମାନ ଯାଏଁ ଅତ୍ୟଧିକ ବୈଷୟିକ ଜ୍ଞାନର ବିକାଶ ନ ହେବା ଆମ ପାଇଁ ସୁବିଧାଜନକ ହୋଇଛି। ଅନ୍ୟ ଦେଶ ମାନେ ସେମାନଙ୍କର ଶକ୍ତିଶାଳୀ ମାଛଧରା ଜାଲ ଦ୍ୱାରା ସମୁଦ୍ର ଶଯ୍ୟା ଯାଏଁ ମାଛ ଧରି ଆଣି ମାଛଙ୍କ ସଂଖ୍ୟା କମାଇ ଏକ ଉଦ୍‌ବେଗଜନକ ଅବସ୍ଥାକୁ ନେଇ ଆସିଲେଣି। ଉଦାହରଣ ସ୍ୱରୂପ, ବର୍ଷ ପରେ ବର୍ଷ ଆମେ କ୍ରମାଗତ ତିମି ଶିକାର କରି ଚାଲିଛୁ। ଏମାନେ ଏବେ ଏପରିଭାବେ ଆତଙ୍କଜନକ ଅବସ୍ଥାକୁ ଆସିଗଲେଣି ଯେ ସଂରକ୍ଷଣକାରୀ ମାନେ ଏହାର ସୁରକ୍ଷା ପାଇଁ ଆସନ୍ତା ତିନିବର୍ଷ ପାଇଁ ତିମି ଶିକାର ନିଷିଦ୍ଧ କରିବାକୁ ଦାବୀ କଲେଣି। ଯଦିଓ ସେମାନେ ବର୍ତ୍ତମାନ ସୁଦ୍ଧା ଆଂଶିକ ଭାବେ ସଫଳ ହୋଇଛନ୍ତି କେବଳ ଭାରତ ମହାସାଗର ବର୍ତ୍ତମାନ ତିମିଙ୍କ ପାଇଁ ଏକ ସୁରକ୍ଷିତ ଅଞ୍ଚଳ ରୂପେ ପରିଗଣିତ ହୋଇପାରିଛି। ଏଠାରେ ଦଶ ବର୍ଷ ଯାଏଁ ତିମି ଶିକାର ବନ୍ଦ କରାଯାଇଛି। ପର୍ଚ୍ଚ ମାଛ, ଯାହାକି ୟୁରୋପ ମହାଦେଶରେ ମିଳୁଥିବା ଏକ ପ୍ରିୟ ଓ ଶସ୍ତା ଖାଦ୍ୟ, ଅତି ମାତ୍ରାରେ ଧରା ହେବାରୁ ଏମାନଙ୍କ ସଂଖ୍ୟା ବିପଦଜନକ ଭାବେ କମିଯାଇଛି। ମାଛ ଧରାଳୀମାନେ ଏହାର ଛୁଆଙ୍କୁ ଓ ବଡ଼ଙ୍କୁ ବହୁ ସଂଖ୍ୟାରେ ଧରିବାରୁ ଏପରି ଅବସ୍ଥା ସୃଷ୍ଟି ହୋଇଛି। ସାରଡ଼ାଇନ ବର୍ତ୍ତମାନ କାଲିଫର୍ଣ୍ଣିଆ ଉପକୂଳର ମତ୍ସ୍ୟ-ଉନ୍ନତ ଅଞ୍ଚଳରୁ ବାରମ୍ବାର ଧରାଯିବାରୁ

ଏମାନେ ଉଭେଇ ଗଲେଣି । ଏହା ନ ପାଇ ଲୋକେ ଆଞ୍ଚୋଭିସ ବ୍ୟବହାର କରୁଛନ୍ତି । ନିଜ ଅଞ୍ଚଳରେ ବାରମ୍ବାର ମାଛ ଧରିବାରୁ ଆଉ ଅଧିକ ମାଛ ନ ମିଳୁଥିବା ଏହିପରି ବହୁ ଦେଶ ରହିଛି ଏବଂ ଏମାନଙ୍କ ଠାରୁ ଅନ୍ତତଃ ଆମେ କିଛି ଶିକ୍ଷା ଲାଭ କରିବା ଉଚିତ । ଏହା ଆମର ନିଷ୍ଠୁରତା ପ୍ରତି ଏକ ଲଜ୍ଜାକର ଧକ୍କା । ସମୁଦ୍ର ବହୁ ପ୍ରାକୃତିକ ସମ୍ପଦ ପ୍ରସ୍ତୁତ କରୁଥିବା ବେଳେ ଆମେ ଏହାର ସମ୍ପଦକୁ ଅଧିକ ନଷ୍ଟ କରିବା ଦ୍ୱାରା ମାଛଙ୍କୁ ଏକ କୃତ୍ରିମ ଅଞ୍ଚଳରେ ବଢ଼ାଇବା ଭଳି ଅବସ୍ଥା ଦେଖାଦେଇଛି ।

ଦ୍ୱିତୀୟ ପ୍ରକାରର ବିପଦ ନୂତନ ବୈଷୟିକ ଜ୍ଞାନ କୌଶଳ ସୃଷ୍ଟି ଦ୍ୱାରା ହୋଇଛି, ଯାହାକି ସମୁଦ୍ରରେ ଏକ ସ୍ୱତନ୍ତ୍ର ନୂତନ ପ୍ରକାରର କାର୍ଯ୍ୟକ୍ରମ ସୃଷ୍ଟି କରିଛି । ଉଦାହରଣ ସ୍ୱରୂପ ପ୍ରାକୃତିକ ବାଷ୍ପ ଉତ୍ତୋଳନ, ତୈଳ ଓ ଖଣିଜ ସମ୍ପଦ ଉତ୍ତୋଳନ ଇତ୍ୟାଦି ।

ଏବେ ଆମେ ଏହି ବିରାଟ କ୍ଷତି ପାଇଁ ସାମାନ୍ୟ ସଚେତ ହୋଇଛୁ । ଆମର ଅତ୍ୟଧିକ ବ୍ୟବହାର ନିଶା ଓ ଖାମଖିଆଲି ବା ଲୋଭ ଯୋଗୁ ଆମେ ଏପରି ଅବସ୍ଥା ସୃଷ୍ଟି କରିଛୁ । ବର୍ତ୍ତମାନ ଏହାର ବିଲୋପ ପାଇଁ ଆମେ ଏକ ନୂତନ ଆଭିମୁଖ୍ୟ ନେଇ ଆଗେଇ ଆସିବା ଉଚିତ । ଆମେ ବହୁମୂଲ୍ୟ ପଦାର୍ଥ ରଖିଥିବା ଏହି ଭଣ୍ଡାରକୁ ନଷ୍ଟ କରିବା ଉଚିତ ନୁହେଁ । ଯଦି ଆମେ ସମୁଦ୍ରକୂଳକୁ ସମ୍ମାନର ସହ ବ୍ୟବହାର କରିବା, ଏହାର ସୌନ୍ଦର୍ଯ୍ୟକୁ ବର୍ବରତା ତ୍ୟାଗ କରି ଯତ୍ନ ଓ ଆଦରର ସହିତ ବ୍ୟବହାର କରିବା, ତେବେ ଏହା ସମୟର ଶେଷ ଯାଏଁ ଆମକୁ ସବୁଠାରୁ ଅଧିକ ପରିପୁଷ୍ଟତା ଯୋଗାଇ ଚାଲିବ, ଯାହା ଫଳରେ କି ଆମେ ବାରମ୍ବାର ଚିନ୍ତା କରି ମନେ ପକାଇ ପୂର୍ବେ ଆମେ ଯାହା ସମୁଦ୍ର ପ୍ରତି କରିଛୁ, ତାହା ନ କରିବାକୁ ଶପଥ ନେବୁ । ଯଦି ଆମର ଏକ ସମୃଦ୍ଧ ସାଗର ନାହିଁ, ତେବେ ଆମେ ଏକ ସମୃଦ୍ଧ ସ୍ଥଳଭାଗ ପାଇ ପାରିବା ନାହିଁ । ଆମେ ପ୍ରତ୍ୟକ୍ଷଭାବେ ସମୁଦ୍ର ଉପରେ ଖାଦ୍ୟ ଓ ଅନ୍ୟ ଆବଶ୍ୟକତା ପାଇଁ ନିର୍ଭରଶୀଳ, ଏବଂ ସମୁଦ୍ର ହିଁ ଅଧିକ ଭାବେ ଆମର ପରିବେଶର ବିଭିନ୍ନ ଉପାଦାନକୁ ସୁଧାରିବାରେ ଓ ଆୟତ୍ତ କରିବାରେ ମୁଖ୍ୟ ଦାୟିତ୍ୱ ନେଇ ପାରିବ ।

# ଗ୍ରାମାଞ୍ଚଳ

## I

### *ସେମାନଙ୍କ ପରମ୍ପରାଗତ ଶକ୍ତି*

ଭାରତର ଏକ କ୍ଷୁଦ୍ରଚାଷୀ ସବୁବେଳେ ତା'ଘରେ ରହେ ନାହିଁ। ତାର ଘର ହୁଏତ ଚାଷ ଜମିଠାରୁ କିଛି ମାଇଲ ଦୂରରେ ଅବସ୍ଥିତ। ତେଣୁ ଅଧିକାଂଶ ଭାରତୀୟ ଗ୍ରାମରେ ବହୁ ସଂଖ୍ୟକ ପାଖାପାଖି ଲାଗି ରହିଥିବା ବାସଗୃହ ରହିଥାଏ ଯେଉଁଠାରୁ କି ଚାଷୀମାନେ ପ୍ରତିଦିନ ସକାଳୁ ଚାଷ କ୍ଷେତ୍ରକୁ ଯାଆନ୍ତି। ଏହା ଏକ ସୁନ୍ଦର ବ୍ୟବସ୍ଥା। ଏକ ଛୋଟ ଗ୍ରାମରେ ଗୋଟିଏ ସମ୍ପ୍ରଦାୟ ପାଇଁ ସମସ୍ତ ପ୍ରକାର ଆବଶ୍ୟକତା ପୂରଣ ହୋଇଥାଏ ଏବଂ ଏହି ବାସିନ୍ଦାଙ୍କ ଚାଷଜମି ସାଧାରଣତଃ ପଲ୍ଲୀ ଅଞ୍ଚଳର ଚାରିଆଡ଼େ ଖେଳେଇ ହୋଇ ରହିଥାଏ।

ପାଣି ମିଳୁଥିବା ସ୍ଥାନରେ ସାଧାରଣତଃ ଏକ ଗ୍ରାମ ଆରମ୍ଭ ହୋଇଥାଏ। ଏହା ବ୍ୟତୀତ ସ୍ଥାନଟି ଯାତାୟତ ପାଇଁ ସୁବିଧାଜନକ ଓ ଉତ୍ତମ ହୋଇଥିବା ଆବଶ୍ୟକ। କେତେକ ଛୋଟ କୁଡ଼ିଆ ଘର ଅନ୍ୟମାନଙ୍କୁ ଆକର୍ଷଣ କରିଥାଏ ଏବଂ ଏହା ଏକ ସମ୍ପୂର୍ଣ୍ଣ ଗ୍ରାମ ରୂପେ ପରିଚିତ ହୋଇପାରେ ଯେ କି ଗ୍ରାମର ବାସିନ୍ଦାମାନେ ଆବଶ୍ୟକ କରୁଥିବା ସମସ୍ତ ପଦାର୍ଥ ନିଜେ ଗ୍ରାମବାସୀଙ୍କୁ ଯୋଗାଇପାରେ। ଏକ ସୁସ୍ଥ ଗ୍ରାମ୍ୟ ଜୀବନରେ ଉତ୍ତମ ବା ସ୍ଥାୟୀ ଗ୍ରାମ୍ୟ ଚିତ୍ର ସହିତ ନିଜସ୍ୱ ସମ୍ପୂର୍ଣ୍ଣତା ସହ ପରସ୍ପର ନିର୍ଭରଶୀଳ ଲୋକ ରହିବା ଆବଶ୍ୟକ। ସାଧାରଣତଃ ଗ୍ରାମ ଲୋକେ ସେମାନଙ୍କର ମୁଖ୍ୟ ଖାଦ୍ୟ ପାଇଁ ନିଜ ଶସ୍ୟ କ୍ଷେତ୍ର ଉପରେ ନିର୍ଭର କରିଥାନ୍ତି କିମ୍ବା ନିଜର ଆବଶ୍ୟକତା ପାଇଁ ପଡ଼ୋଶୀଙ୍କ ସହିତ କେତେକ ପଦାର୍ଥ ବଦଳାଇଥାନ୍ତି। କିନ୍ତୁ ଏହାର

ଆକାର ଓ ସାଧାରଣ ଆବଶ୍ୟକତାକୁ ଦେଖି ଏହି ଗ୍ରାମବାସୀ ଦୈନନ୍ଦିନ ଆବଶ୍ୟକତା ପୂରଣ ପାଇଁ ଅନ୍ୟ କେତେକଙ୍କ ଉପରେ ନିର୍ଭର କରିଥାନ୍ତି। ଚାଷ କାର୍ଯ୍ୟ ପାଇଁ ଓ ଶଗଡ଼ ତଥା ଗୃହ ଉପକରଣ ନିର୍ମାଣ ପାଇଁ ବଢ଼େଇ ଆବଶ୍ୟକ, ଗୋଟିଏ କମାର ଓ କୁମ୍ଭକାର ନିଶ୍ଚିତ ଭାବେ ରହିବା ଆବଶ୍ୟକ କାରଣ ମାଠିଆ ଓ ପାତ୍ର ବ୍ୟତୀତ ଚଳିବା କଷ୍ଟକର। ଏହା ହୁଏତ ତମ୍ବା ବା ମାଟିରେ ହୋଇଥାଇପାରେ। ତନ୍ତୀ ଓ ଅନ୍ୟାନ୍ୟ ଶିଳ୍ପୀ, ଧୋବା ଓ ଦରଜୀ ପରି ଅନ୍ୟାନ୍ୟ କର୍ମୀମାନେ ରହିବା ଅତ୍ୟାବଶ୍ୟକ। ସେମାନଙ୍କ ଉପସ୍ଥିତି ଗ୍ରାମର ଆକାର ଉପରେ ନିର୍ଭର କରିଥାଏ।

କେତେକ ସମୟରେ ଗୋଟିଏ ଗୋଟିଏ ଗ୍ରାମ ସ୍ୱତନ୍ତ୍ର ଶିଳ୍ପକଳା ପାଇଁ ପ୍ରସିଦ୍ଧି ଲାଭ କରିଥାଏ। ଉଦାହରଣ ସ୍ୱରୂପ ଲୁଗାବୁଣା, ରଙ୍ଗ ଦେବା ଇତ୍ୟାଦି। ଏହିପରି ସ୍ଥାନ କ୍ରମେ ସେମାନଙ୍କ କଳା ପାଇଁ ପ୍ରସିଦ୍ଧି ଲାଭ କରି ଛୋଟ ସହରରେ ପରିଣତ ହୋଇଯାଏ।

ପ୍ରାକୃତିକ ସ୍ଥିତାବସ୍ଥା ଯୋଗୁଁ ଏବଂ ପ୍ରତ୍ୟେକ ଅନ୍ୟ ଉପରେ ସାମୂହିକ ଭାବେ ଓ ବ୍ୟକ୍ତିଗତ ଭାବେ ନିର୍ଭର କରୁଥିବା ଯୋଗୁଁ ଗ୍ରାମକୁ ଏକ ପ୍ରାକୃତିକ ପରିପୂର୍ଣ୍ଣତାର କ୍ଷେତ୍ର ନ କହି ଏକ ସମନ୍ୱୟର କ୍ଷେତ୍ର କହିଲେ ଅତ୍ୟୁକ୍ତି ହେବ ନାହିଁ।

ଗ୍ରାମର ଚରିତ୍ର ଓ ଗୁଣାତ୍ମକ ଚିତ୍ର ଏହାର ସ୍ଥିତି ଉପରେ ନିର୍ଭର କରେ ନାହିଁ। ଏହାର ସଫଳତା ଗ୍ରାମର ଏକତ୍ର ସହାବସ୍ଥାନ, ପାରସ୍ପରିକ ସହଯୋଗ, ବିଶ୍ୱାସ ଓ ସମ୍ମାନ ଏବଂ ପରସ୍ପର ବିଶ୍ୱାସ ସହିତ ସମସ୍ତଙ୍କର ଦରକାର ପୂରଣ କରିବା ସହିତ ସାମଗ୍ରିକ ଉନ୍ନତି ବିଧାନ ପାଇଁ ଆବଶ୍ୟକ ହୋଇଥାଏ। ବାସ୍ତବିକ ଗ୍ରାମ୍ୟ ଚିତ୍ର ହିଁ ସ୍ଥାନୀୟ, ପ୍ରାକୃତିକ ଓ ମାନବ ସମ୍ବଳ ବିନିଯୋଗ ପ୍ରଦର୍ଶନର ଏକ ନିଚ୍ଛକ ଚିତ୍ରପଟ। ଗ୍ରାମ୍ୟ ବାସିନ୍ଦାଙ୍କ ଜୀବନ ସବୁବେଳେ ସ୍ଥାନୀୟ ପଦାର୍ଥ ଉପରେ ନିର୍ଭରଶୀଳ ହୋଇଥାଏ। ସ୍ଥାନୀୟ ପଥର ଓ କାଦୁଅକୁ ଘର ତିଆରି ପାଇଁ, ସ୍ଥାନୀୟ ଗଛ ବୃକ୍ଷକୁ ଛପର ପାଇଁ, ସ୍ଥାନୀୟ ଶସ୍ୟକୁ ଖାଦ୍ୟ ପାଇଁ ଏମାନେ ବିନିଯୋଗ କରିଥାନ୍ତି। ମାଟିର ପ୍ରକାର, ଜଳ ବ୍ୟବସ୍ଥା ଓ ଅବସ୍ଥିତି ହିଁ ଲୋକଙ୍କ କାର୍ଯ୍ୟକ୍ଷମ, କଳାକୌଶଳ ଓ ଦକ୍ଷତା ଉପରେ ନିର୍ଭର କରିଥାଏ।

ଗ୍ରାମରେ ବାସ କରୁଥିବା ଲୋକଙ୍କ ଭିତରେ ସହଯୋଗ ବଂଶାନୁକ୍ରମିକ ଭାବେ ଆବଦ୍ଧ ହୋଇ ରହି ଆସିଥାଏ। ମଣିଷର ସାଧୁତାକୁ ଏହିପରି ପଂକ୍ତି

ଅନୁସାରେ କୁହାଯାଇପାରେ, *'ଆରେ, ତୁ ଆମର ଗାଁର ଲୋକ'*। ଏଥିରୁ ମଣିଷ ଯେ ସବୁବେଳେ ନିର୍ଭରଶୀଳ ତାହା ଜଣାପଡ଼େ। ପଡ଼ୋଶୀଙ୍କ ସହ ଥିବା ସମ୍ପର୍କଠାରୁ ଗ୍ରାମବାସୀଙ୍କ ମଧ୍ୟରେ ରହିଥିବା ସହଯୋଗ ଅଧିକ। ଏହା ବହୁ ପ୍ରକାର ଜଟିଳ ଓ ସହଯୋଗଦ୍ୱାରା ଆବଦ୍ଧ ଯାହାକି ପୂର୍ବ ଓ ବର୍ତ୍ତମାନ ବଂଶର ଲୋକଙ୍କ ମଧ୍ୟରେ ଥିବା ଇତିହାସ ଓ ଅଭିଜ୍ଞତା ଭିତ୍ତିରେ ହୋଇଥାଏ।

ଆମ ଗ୍ରାମ କଥା ବିଚାରକୁ ନେଲେ କଠିନ ଭାବେ ରହି ଆସିଥିବା ଜାତିପ୍ରଥା ଅନେକ ସମୟରେ ପ୍ରକୃତ ସମ୍ପର୍କ ମଧ୍ୟରେ କିଛିଟା ବ୍ୟାଘାତ ସୃଷ୍ଟି କରିଥିବାର ଦେଖାଯାଏ। ନିମ୍ନ ଜାତିର ଲୋକେ ସେମାନଙ୍କ ପୂର୍ବ ସ୍ଥିତିରେ ରହି ବହୁ ପ୍ରକାର ଅସୁନ୍ଦର କାମ କରିବାକୁ ବାଧ୍ୟ ହୋଇଥାନ୍ତି। ସେମାନେ ପ୍ରାୟ ଭୂମିହୀନ, ସବୁବେଳେ ସେମାନଙ୍କୁ ଜମିଦାର ଓ ମାଲିକଙ୍କ ପ୍ରଭୁତ୍ୱ ତଳେ ରହିବାକୁ ହୋଇଥାଏ, ଯାହା ଫଳରେ ପ୍ରତ୍ୟେକ ଲୋକ ନିଜ ନିଜର ପ୍ରତିଷ୍ଠା ଅର୍ଜନ କରିବାରେ ଏହା ବାଧା ସୃଷ୍ଟି କରିଥାଏ, ମାତ୍ର ଏକ ଜାତିଭିତ୍ତିକ ସମ୍ପ୍ରଦାୟରେ ଏହା କରିବା ସମ୍ଭବ ନୁହେଁ। ଚାଷୀ, ବ୍ୟବସାୟୀ ପ୍ରମୁଖଙ୍କ ଜୀବନ ଧାରଣ ପଦ୍ଧତି, ସାମାଜିକ ଚଳଣି ଓ ଅକ୍ଷମତା ବଂଶାନୁକ୍ରମିକ ଭାବେ ପିଢ଼ି ପରେ ପିଢ଼ି ସେହିପରି ରହି ଆସିଛି। କେତେକ ସ୍ୱତନ୍ତ୍ର ଜାତିର ସଭ୍ୟ ହିସାବରେ ଏବଂ ବ୍ୟକ୍ତିଗତ କାର୍ଯ୍ୟକ୍ରମ ଓ ଋଣଗ୍ରହଣ ଯୋଗୁଁ ଆମ ଲୋକେ ବଂଶାନୁକ୍ରମିକ ଭାବେ ଅତ୍ୟଧିକ ଚାପର ବଶବର୍ତ୍ତୀ ହୋଇ ଆସିଛନ୍ତି। ବହୁ କ୍ଷେତ୍ରରେ ଜଣେ ବ୍ୟକ୍ତି ନିଜସ୍ୱ ମତାମତ ଦେବାକୁ ସକ୍ଷମ ନୁହେଁ କିମ୍ବା ଜନ୍ମରୁ ସେ ସାମାଜିକ ଭାବେ ସ୍ୱୀକୃତ କୌଣସି ପଥରୁ ନିଜକୁ ନିଜ ଇଚ୍ଛାରେ ପରିବର୍ତ୍ତନ କରିବାରେ ସମର୍ଥ ନୁହେଁ।

ଯୌଥପରିବାର ଉପରେ ଗ୍ରାମ୍ୟଜୀବନର କେତେକ ପ୍ରଭାବ ଓ ନିରାପତ୍ତା ରହିଛି। ଏହା ମଧ୍ୟ ନିଜର ସ୍ୱତନ୍ତ୍ରତା ଓ ସ୍ୱାଧୀନତା ନ ଥିବା ବ୍ୟକ୍ତି ବିଶେଷଙ୍କୁ ପ୍ରଭାବିତ କରିଥାଏ। ଏହା ସମାଜବିଜ୍ଞାନୀଙ୍କ ପାଇଁ ଏକ କୌତୂହଳପ୍ରଦ ପ୍ରଶ୍ନ ଯେ କେତେବେଳେ ଓ କେତେ ସଂଖ୍ୟକ ବାସିନ୍ଦା ଭାରତର ସାମ୍ପ୍ରଦାୟିକ ସ୍ଥିତି ମଧ୍ୟରେ ବାସ କରୁଥିବା ଆମର ଦୁଃସାହସିକ କାର୍ଯ୍ୟ ପ୍ରତିରୋଧ କରିବା ପାଇଁ ଦାୟୀ। ଯେଉଁଠାରେ ଚଳଣି ଓ ପ୍ରଥାକୁ ପ୍ରାଧାନ୍ୟ ଦିଆଯାଏ; ଯେଉଁଠାରେ ସାମୂହିକ ଅଞ୍ଚଳର ମତାମତ ହିଁ ଗୁରୁତ୍ୱପୂର୍ଣ୍ଣ ସେଠାରେ କେତେଜଣ ବ୍ୟକ୍ତି ଏକ ନୂତନ କାର୍ଯ୍ୟକ୍ରମ ପାଇଁ ସମସ୍ତଙ୍କୁ ଏକତ୍ର କରି ଆଦର୍ଶପୂର୍ଣ୍ଣ ଓ ଶାରୀରିକ ଶକ୍ତି ବୃଦ୍ଧି ପାଇଁ କାର୍ଯ୍ୟକ୍ରମ ଯେତେ ମର୍ମଭେଦୀ, ଅନ୍ଦରକାରୀ, କଠୋର

ହୋଇଥାଉନା କାହିଁକି, କରିପାରନ୍ତି ।

ଏହାର ବିପରୀତ ଦିଗ ହେଉଛନ୍ତି ଦୁର୍ବଳବର୍ଗ । ସେମାନେ ଅସମର୍ଥ, ଅକର୍ମଣ୍ୟ ଓ ଅନେକ ସମୟରେ ଭାଗ୍ୟ ଉପରେ ନିର୍ଭରଶୀଳ । କଷ୍ଟକର ଭାବେ ଯେ କେହି ଜଣେ ଗରିବ ବନ୍ଧୁକୁ ସାହାଯ୍ୟ କରିବାକୁ ମନା କରିଥାଏ । ଏହି ପ୍ରଥାଦ୍ୱାରା ଯେ ଏକ ଆଶ୍ଚର୍ଯ୍ୟଜନକ ସୁରକ୍ଷା ମିଳିଥାଏ ତାହା ନୁହେଁ, ଏହା ଗରିବ, ନିଃସ୍ୱ ଓ ନିଃସହାୟ ଲୋକଙ୍କୁ ନିଶ୍ଚିତ ଭାବରେ ସୁରକ୍ଷା ପ୍ରଦାନ କରିଥାଏ । ବଳଶାଳୀମାନଙ୍କୁ ଅଧିକ ସକ୍ଷମ ହେବାକୁ ଏହା ବିରୋଧ କରିଥାଏ, ଯେଉଁମାନେ କି କଠୋର ପରିଶ୍ରମ କରି ଅଧିକ ଲାଭ ପାଇବା ପାଇଁ ଆଶା କରିଥାନ୍ତି ।

ବଂଶାନୁକ୍ରମିକ ଭାବେ ହୋଇ ଆସୁଥିବା ଭାରତୀୟ କୃଷି ପ୍ରଣାଳୀ ସୀମାବଦ୍ଧ ଓ ପୂର୍ବକାଳରୁ ଚଳିଆସୁଥିବା ବ୍ୟବସ୍ଥା ସହିତ ଅଭ୍ୟସ୍ତ । ବଳଦ ଜମିକୁ ହଳ କରିଥାଏ ଏବଂ ପରିବହନ ତଥା ଖତ ଇତ୍ୟାଦି ପକାଇବା ପାଇଁ ବ୍ୟବହୃତ ହୋଇଥାଏ । ଖତ ପାଇଁ ବ୍ୟବହୃତ ଗୋବର ମଧ୍ୟ ଘର ତଳକୁ ଓ କାନ୍ଥକୁ ଲିପିବା ପାଇଁ ବ୍ୟବହୃତ ହୋଇଥାଏ । ଏହା ବ୍ୟତୀତ ବଳଦ ସାଧାରଣତଃ କୁଟା ଖାଇଥାଏ ଓ ନୂତନ ବୃକ୍ଷ ବଢ଼ିବାରେ ଅନ୍ତରାୟ ସୃଷ୍ଟି କରେ ନାହିଁ । ଶସ୍ୟଗୁଡ଼ିକ ଅମଳ ହୋଇ ସାରିବା ପରେ ଛଣକୁ ସାଧାରଣତଃ ଘରଛପର ଓ ଗାଈଗୋରୁଙ୍କ ଖାଦ୍ୟରୂପେ ବ୍ୟବହାର କରାଯାଏ । ଏହା ମଧ୍ୟ ଘର ତିଆରି, କାନ୍ଥର ସୁରକ୍ଷା ପାଇଁ ଓ ଶଗଡ଼ର ଛପର ତଥା ଅନ୍ୟାନ୍ୟ ବ୍ୟବହାର ପାଇଁ ସାଧାରଣ ଭାବେ ବ୍ୟବହୃତ ହୋଇଥାଏ । ପ୍ରତ୍ୟେକ ଅଞ୍ଚଳ ସେ ଅଞ୍ଚଳର ସ୍ଥାନୀୟ ଅବସ୍ଥା ଓ ମିଳୁଥିବା କଞ୍ଚାମାଲ ଅନୁଯାୟୀ ସେମାନଙ୍କର ସ୍ୱତନ୍ତ୍ର ବୈଷୟିକ ଅବସ୍ଥାର ଉନ୍ନତି ଘଟାଇଥାନ୍ତି । ଗୋଟିଏ ଜିଲ୍ଲାର ମାଟି, ପଥର, ପାଣି ଓ ବୃକ୍ଷରାଜି ଉପରେ ଜ୍ଞାନ ଥାଇ ଦୈନନ୍ଦିନ ବ୍ୟବହାର ପାଇଁ ଏଗୁଡ଼ିକର ବିନିଯୋଗର ଉନ୍ନତି ବିଧାନ କରିବାକୁ ଶତାବ୍ଦୀ ସମୟ ଲାଗିଯାଏ । ଏହା ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ଯେ ନୂତନ ବୈଷୟିକ ଜ୍ଞାନର ଉନ୍ନତି ସହିତ ଆମେ ଏହି ଜ୍ଞାନକୌଶଳକୁ ଭୁଲିଯିବା ଉଚିତ ନୁହେଁ ।

ବଂଶାନୁକ୍ରମିକ ଭାବେ ଗ୍ରାମବାସୀମାନେ ଟଙ୍କା ପଇସା କାରବାର କରିବାରେ ବିଶେଷ ଧୁରନ୍ଧର ନୁହଁନ୍ତି । ଚାଷୀ ତାର ଜିନିଷପତ୍ର ତିଆରି କରିଦେବା ପାଇଁ ତା ଶସ୍ୟର କିଛି ଅଂଶ ବଢ଼େଇକୁ ଦେଇଥାଏ । ଧୋବାକୁ ମଧ୍ୟ ଟଙ୍କା ଦିଆଯାଏ ନାହିଁ, ମାତ୍ର ସେ ଖାଇବା ସମୟରେ ଯେ କୌଣସି

ଗ୍ରାହକଙ୍କ ଘରେ ପହଁଞ୍ଚିପାରେ । ଏପରିକି ଶିକ୍ଷକ ଓ ମୁନସିଙ୍କୁ ମଧ୍ୟ ବିଭିନ୍ନ ପ୍ରକାରର ପଦାର୍ଥ ଦିଆଯାଇଥାଏ । ଏହାର କାରଣ ଖୋଜିଲେ ଆମେ ହୁଏତ ପରେ ଦେଖିବା ଯେ ଅଧିକାଂଶ ଗ୍ରାମବାସୀଙ୍କ ନିକଟରେ ବ୍ୟବହାର କରିବାକୁ ଅଧିକ ଟଙ୍କା ନ ଥାଏ । ଟଙ୍କା ପଇସା ଜନିତ ଅର୍ଥନୀତି ସାଧାରଣତଃ ଜିନିଷ ବିନିମୟରେ କିଣାବିକା ପଦ୍ଧତିଠାରୁ ଭିନ୍ନ, ଯାହାକୁ ଗ୍ରାମ ବିଷୟରେ ପ୍ରଥମେ ଜାଣିଥିବା ଜଣେ ବ୍ୟକ୍ତି ବୁଝି ପାରିବ ନାହିଁ ।

ବାସ୍ତବିକ ସହର ସୃଷ୍ଟିଠାରୁ ଏକ ଗାଁର ସୃଷ୍ଟି ଅଲଗା । ଏଠାରେ ସରଞ୍ଜାମ ନିର୍ମାଣ, ଗୃହର ଉନ୍ନତି କରିବା, ମନୋରଞ୍ଜନ ପାଇଁ ଜିନିଷପତ୍ର ଉନ୍ନତି କରିବା ଇତ୍ୟାଦିରେ ବହୁ କମ୍ ଖର୍ଚ୍ଚ ହୋଇଥାଏ । ଅନ୍ୟ ପକ୍ଷରେ ବିବାହ ଓ ବିଭିନ୍ନ ପର୍ବ ପର୍ବାଣି ଉତ୍ସାହ ଉଦ୍ଦୀପନା ମଧ୍ୟରେ ପାଳନ କରାଯାଇଥାଏ । ଜୀବନସାରା ସଞ୍ଚିତ ଅର୍ଥ ହୁଏତ ଗୋଟିଏ ବିବାହରେ ଖର୍ଚ୍ଚ କରାଯାଇଥାଏ କିମ୍ବା ଗୋଟିଏ ବିବାହ ଉତ୍ସବ କେତେକ କ୍ଷେତ୍ରରେ ଗୋଟିଏ ଗୋଟିଏ ପରିବାରଙ୍କୁ ଏପରି ଋଣଗ୍ରସ୍ତ କରିପକାଏ ଯେ ଦୁଇ ପୀଢ଼ି ଯାଏଁ ଏମାନେ ଋଣମୁକ୍ତ ହୋଇପାରନ୍ତି ନାହିଁ ।

ସହରୀ ଜୀବନ ଗ୍ରାମ୍ୟ ଜୀବନଠାରୁ ସମ୍ପୂର୍ଣ୍ଣ ଭିନ୍ନ । ଏଠାରେ ଘଣ୍ଟା, ଦିନ, ସପ୍ତାହ ଏପରିକି ମାସକୁ ଗୁରୁତ୍ୱପୂର୍ଣ୍ଣ ଭାବେ ଦେଖାଯାଏ ନାହିଁ । ଏଠାରେ ଋତୁ ହିଁ ମୁଖ୍ୟ । ବୁଣିବା ଓ ଅମଳ କରିବା ଋତୁରେ ସମସ୍ତେ ଅତ୍ୟଧିକ ବ୍ୟସ୍ତ ଥାନ୍ତି । ସେତେବେଳେ କାମ କରିବା ସମୟ ଆଠ ଘଣ୍ଟାରୁ ଅଧିକ ହୋଇ ଯାଇଥାଏ । ସୂର୍ଯ୍ୟୋଦୟର ବହୁ ପୂର୍ବରୁ ଦିନ ଗ୍ରାମବାସୀଙ୍କ ପାଇଁ ଆରମ୍ଭ ହୋଇ ଅନ୍ଧାର ହେବା ଯାଏଁ ଚାଲୁ ରହେ । ଯେତେବେଳେ ଆଲୋକ ଆସେ ସମଗ୍ର ଅଞ୍ଚଳର ବାସିନ୍ଦା କାର୍ଯ୍ୟକ୍ଷମ ହୋଇ ଉଠନ୍ତି । ଶସ୍ୟ ଉତ୍ପାଦନ ପରବର୍ତ୍ତୀ ଓ ନୂତନ ଶସ୍ୟ ବୁଣା ପୂର୍ବର ସମୟକୁ ଗ୍ରାମବାସୀମାନେ ବିବାହ ଓ ପର୍ବପର୍ବାଣି ମାଧ୍ୟମରେ ପାଳିଥାନ୍ତି । ଏହି ସମୟରେ ମଧ୍ୟ ବର୍ଷକ ପାଇଁ ଲୁଗାପଟା, ଘରକରଣା ଜିନିଷ ସଂଗ୍ରହ କରାଯାଏ କିମ୍ବା ଏଥିପାଇଁ ଅଗ୍ରିମ ଦିଆଯାଏ । ବାର୍ଷିକ ଉତ୍ପାଦନରୁ ମିଳୁଥିବା ଟଙ୍କାପଇସାର ଉପଯୋଗ ଏହି ସମୟରେ ହିଁ ହୋଇଥାଏ ।

ଏହି ସମୟରେ ଚାଷୀ ନୂଆ ବଳଦଙ୍କୁ ଗୋରୁହାଟରୁ କିଣିଥାଏ, ନିଜର ଛପରକୁ ମରାମତି କରେ, କୂଅ ଖୋଳାଏ, କିମ୍ବା ନୂଆ ପଦାର୍ଥ ସଂଗ୍ରହ କରେ । ବ୍ୟାଙ୍କ ବ୍ୟବସ୍ଥା ଆମର ଗ୍ରାମାଞ୍ଚଳରେ ସମ୍ପୂର୍ଣ୍ଣ ଭାବେ ପହଁଞ୍ଚି ପାରିନାହିଁ ।

ଏକ ଛୋଟ ଗାଁର ସାଧାରଣ ଚଳଣି ପାଇଁ ଏକ ବ୍ୟାଙ୍କର ଆବଶ୍ୟକତା ନାହିଁ, ମାତ୍ର ଦରକାର ବେଳେ ବ୍ୟବହାର ପାଇଁ ଅର୍ଥ ସଞ୍ଚୟ କରିବା ଦ୍ୱାରା ସେମାନେ ମହାଜନୀ କାରବାରରୁ ଋଣ ଆଣିବାରୁ ରକ୍ଷା ପାଇପାରନ୍ତେ। ମହାଜନଙ୍କଠାରୁ ଋଣ ଆଣିବା ଏକ ଏପରି କର୍କଟରୋଗ ଯାହାକି ଗ୍ରାମାଞ୍ଚଳ ଲୋକଙ୍କ ଉନ୍ନତିର ପଥରୋଧ କରିଥାଏ।

ଗୋଟିଏ ଗୋଷ୍ଠୀ ଉପରେ ଗୁରୁତ୍ୱ ଦିଆଯାଇ ବ୍ୟକ୍ତିଗତ କାର୍ଯ୍ୟକୁ ବିରୋଧ କରି ଗ୍ରାମାଞ୍ଚଳର ମନୋରଞ୍ଜନ କାର୍ଯ୍ୟ ହୋଇଥାଏ। ଅଳ୍ପ କେତେ ସଂଖ୍ୟକ ବ୍ୟକ୍ତିଗତ ମନୋରଞ୍ଜନକାରୀ ଅଛନ୍ତି। ଜାତିଭେଦ ଭୁଲି ଦଳଗତ ଭାବେ ନୃତ୍ୟ ପରିବେଷଣ କରିବା, ସଙ୍ଗୀତ ଗାଇବା ଦ୍ୱାରା ଏହା ଧର୍ମ ଭାବନା ମନରେ ସୃଷ୍ଟି କରିଥାଏ।

ପ୍ରାୟ ସମସ୍ତ ଆଞ୍ଚଳିକ ଯାତ୍ରାଦଳ ରାମାୟଣ, ମହାଭାରତର ଘଟଣାବଳୀକୁ ନାଟକ ଆକାରରେ ପରିବେଷଣ କରିଥାନ୍ତି। ଲୋକଙ୍କର କୌଣସି ବ୍ୟକ୍ତିଗତ ସୃଷ୍ଟି ବା ଗୁଣ ନ ଥାଏ। ବ୍ୟକ୍ତିକେନ୍ଦ୍ରିକ ଭାବେ ସେମାନେ କୌଣସି ବିଷୟରେ ଅଭ୍ୟାସ କରନ୍ତି ନାହିଁ। କଳାକାରମାନେ ବିଭିନ୍ନ ଯାନିଯାତ୍ରା ସମୟରେ ନିଜେ ମାଟିର ମୂର୍ତ୍ତି ତିଆରି କରି ନିଜ ପ୍ରତିଭାର ପରିଚୟ ଦେଇଥାନ୍ତି। ମାତ୍ର, ସେମାନେ ଏହାକୁ ପ୍ରକୃତ ଭାବେ ନ କରି ବଂଶାନୁକ୍ରମିକ ପ୍ରଥାରେ ତିଆରି କରିଥାନ୍ତି। ଏହା ପ୍ରକୃତ କଳା ବ୍ୟତୀତ କଳାକାର ଭାବନା ଉଦ୍ରେକ କରିବାରେ ସାହାଯ୍ୟ କରିଥାଏ। ସାଧାରଣତଃ ଗ୍ରାମାଞ୍ଚଳକୁ ଉଠାଇ ନିଆଯାଇ ପାରୁଥିବା ଆଲୋକଦ୍ୱାରା ଆଲୋକିତ କରାଯାଇଥାଏ। କ୍ରମାଗତ ଭାବେ ନୂତନ ଗୃହ ତିଆରି ହେଉଥିବାର ଦେଖି ଗୋଟିଏ ପୁରାତନ ଗାଁକୁ ଜାଣି ହେବ। ଅଧିକାଂଶ ଗ୍ରାମକୁ ସୁବିଧାରେ ଘୁଞ୍ଚାଇ ନିଆଯାଇପାରେ। ବନ୍ୟା ଆସିଲେ, ମରୁଡ଼ି ପଡ଼ିଲେ କିମ୍ୱା ଗୋଟିଏ ନୂତନ ରାସ୍ତା ନିର୍ମିତ ହେଲେ ଲୋକ ଉଠିଯାଇ ସେଠାରେ ବସତି ସ୍ଥାପନ କରିବା ପାଇଁ ଯଥେଷ୍ଟ ପ୍ରେରଣା ପାଇଥାନ୍ତି। ଗୋଟିଏ ମନ୍ଦିର ବା ପବିତ୍ର ସ୍ଥାନ ବା ଜଳବିଦ୍ୟୁତ ଯୋଜନା ଗୋଟିଏ ଗ୍ରାମର ଅବସ୍ଥିତିକୁ ନିୟନ୍ତ୍ରଣ କରେ। ଏହାଦ୍ୱାରା ଗ୍ରାମର ପ୍ରାକୃତିକ ପରିବେଶରେ କୌଣସି ପ୍ରଭାବ ପଡ଼େ ନାହିଁ।

ଏହିପରି କେତେକ ଅବସ୍ଥା ବଦଳିବା ସହିତ ଗ୍ରାମଗୁଡ଼ିକ ଉଠିଯାଇଥାଏ। କେତେକ ପରିବର୍ତ୍ତନକୁ କଷ୍ଟକର ଭାବେ ଜାଣିହୁଏ, ମାତ୍ର ଅନ୍ୟ କେତେକ ଗ୍ରାମରେ ପରିବର୍ତ୍ତନ ଖୁବ ଶୀଘ୍ର ଆସିଥାଏ। ନାଇଲନ ସାର୍ଟର ବ୍ୟବହାର,

ଟ୍ରାକ୍ଟର ଓ ବିଦ୍ୟୁତ ମୋଟର ଭଳି ଯନ୍ତ୍ରର ବ୍ୟବହାରରୁ ଏହା ବାରି ହୋଇଯାଏ। ବଡ଼ ବଡ଼ ସହର ବଜାର ସହ ସମ୍ପର୍କ ବିଦ୍ୟୁତିକରଣ ଭଳି ବ୍ୟବସ୍ଥା ଦ୍ୱାରା ଗ୍ରାମାଞ୍ଚଳର ଅବସ୍ଥା କ୍ରମେ ପରିବର୍ତ୍ତିତ ହେଉଛି। ଯେଉଁଗ୍ରାମ ବସ୍‌ଦ୍ୱାରା ସହର ବଜାର ସହ ସଂଯୁକ୍ତ, ସେଠାରେ ଦୂରରେ ଥିବା ଗ୍ରାମାଞ୍ଚଳଠାରୁ ନୂତନ ପଦ୍ଧତିକୁ ଲୋକେ ସହଜରେ ଅନୁସରଣ କରୁଛନ୍ତି।

ଏହିସବୁ ପ୍ରାକୃତିକ ପରିବର୍ତ୍ତନ ମଧ୍ୟରେ ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ହେଉଛି ଗ୍ରାମାଞ୍ଚଳରେ ଅଧିକ କୂପ ଓ ପାଣି ପମ୍ପ ବସାଯାଇ, ଭଲ ରାସ୍ତା ଓ ଯୋଗାଯୋଗ ବ୍ୟବସ୍ଥାଦ୍ୱାରା ଜଳ ଯୋଗାଇ ଦିଆଯିବା। ଗ୍ରାମ ଲୋକଙ୍କର ମାନସିକ ଧାରଣା ଯେ ଗ୍ରାମାଞ୍ଚଳର ଅବସ୍ଥା ଅପରିବର୍ତ୍ତନୀୟ। ଏଠାରେ ବହୁ ଦିନରୁ ଚଳି ଆସୁଥିବା ପ୍ରଥା ଅନୁସାରେ ଜୀବନଯାପନ ପ୍ରଣାଳୀ, ଜାତି ଓ ଧର୍ମ ବିଶ୍ୱାସର ଭିତ୍ତି ପ୍ରତିଷ୍ଠିତ। ଯାହାକି ଲୋକଙ୍କୁ ସେମାନଙ୍କ ସ୍ୱତନ୍ତ୍ରତା ପ୍ରତିପାଦନ କରିବାକୁ ବାରଣ କରିଥାଏ। ପ୍ରକୃତ ଯୋଜନା ନ କରି ଶକ୍ତକୈନ୍ଦ୍ରିକ ଭାବେ ଅଂଶ ଗ୍ରହଣ ନ କରିବା ଦ୍ୱାରା ଓ ପ୍ରଚଳିତ ପଦ୍ଧତିରେ ପରିବର୍ତ୍ତନ କରିବା ଦ୍ୱାରା ଗୋଟିଏ ଗୋଷ୍ଠୀ ସଂକ୍ରମିତ ହେଉଛି।

ଦେଖିବାକୁ ଗୋଟିଏ ଭାରତୀୟ ଗ୍ରାମ ଅତି ସୁନ୍ଦର। ଛୋଟ ଛୋଟ ଘର ଓ ଚାରିପାଖରେ ସୁନ୍ଦର ବୃକ୍ଷରାଜି, ପଲପଲ ଗୋରୁଗାଈ, କାରୁକାର୍ଯ୍ୟପୂର୍ଣ୍ଣ ବ୍ରାସ ଓ ପିତଳର ବାସନକୁସନ, ମାଠିଆ ଏବଂ ଗୋଟିଏ ପୋଖରୀ ବା କୂଅ ନିକଟରେ କାର୍ଯ୍ୟ ଚଞ୍ଚଳତା ଏବଂ ସର୍ବୋପରି ଗ୍ରାମାଞ୍ଚଳ ଏକ ଅପରିବର୍ତ୍ତିତ, ପୁନଃସୃଷ୍ଟ, ଅସ୍ୱାସ୍ଥ୍ୟକର ଜୀବନ ପ୍ରଣାଳୀ ଠାରୁ ଦୂରରେ ରହିଥିବା ଏକ ଉତ୍ତମ କ୍ଷେତ୍ର। ବାସ୍ତବିକ ଗ୍ରାମାଞ୍ଚଳର ଲୋକଙ୍କ ମଧ୍ୟରେ ଭାଙ୍ଗିପଡ଼ିବା ଭାବ ସୃଷ୍ଟି ହୋଇଥାଏ ଯେତେବେଳେ ପ୍ରାକୃତିକ ସମ୍ପଦ ଯଥା-ପାଣିପାଗ, ଜମିର ଉର୍ବରତା, ଜଳ ମିଳିବାର କ୍ଷେତ୍ର, ଭଲ ଉତ୍ପାଦନ ଓ ସ୍ଥାନୀୟ ବଜାରକୁ ଯୋଗାଯୋଗ ପ୍ରଭୃତି ସ୍ଥାନୀୟ ସମସ୍ୟା ଦେଖାଦିଏ। ଯେତେବେଳେ ଯାଏଁ ଏହି ସବୁ ପଦାର୍ଥ ଭାରସାମ୍ୟ ରକ୍ଷା କରି ରହିଥାଏ, ସେତେବେଳେ ଯାଏଁ ପରସ୍ପର ମଧ୍ୟରେ ବିଭିନ୍ନ କାର୍ଯ୍ୟକ୍ରମ ଓ ସମ୍ପର୍କ ଏକ ସୁସ୍ଥ ପରିସଂସ୍ଥା ସୃଷ୍ଟିରେ ସହାୟତା ପ୍ରଦାନ କରିଥାଏ। ଯେଉଁଠାରେ ମାନବ କୃତ କାର୍ଯ୍ୟଯୋଗୁଁ ପ୍ରାକୃତିକ ସମ୍ପଦ ବିପଦର ସମ୍ମୁଖୀନ, ସେଠାରେ ଅନ୍ୟଦ୍ୱାରା ହେଉଥିବା ପ୍ରତ୍ୟେକ ଲାଭକର କାର୍ଯ୍ୟ ଶୁଭଦାୟକ। ଏହି ପ୍ରକାର ଭାରସାମ୍ୟ ରକ୍ଷା କରିବା ସବୁବେଳେ କଷ୍ଟକର ଏବଂ ନୂତନ ଧାରଣା ଓ ବୈଷୟିକ ବ୍ୟବସ୍ଥା

ଏହି ସମୃଦ୍ଧିରେ ପ୍ରତିବନ୍ଧକ ସୃଷ୍ଟି କରିଥାଏ ।

ଏହା ସବୁ ସମୟରେ କୁହାଯାଇଥାଏ, ଯେ ଭାରତ ହିଁ ପ୍ରକୃତରେ ଗ୍ରାମରେ ବଞ୍ଚୁଛି । ଏହା ମିଥ୍ୟା ନୁହେଁ । ଭାରତ ସାରା ହଜାର ହଜାର ଗ୍ରାମ ବିସ୍ତାରିତ ହୋଇ ରହିଛି । ଏହା ଭିତରେ ଅନେକ ଛୋଟ ଓ କେତେକ ବଡ଼, ଉନ୍ନତ କିମ୍ବା ଅନୁନ୍ନତ, ପରିବର୍ତ୍ତିତ କିମ୍ବା ସ୍ଥିର, ଯେଉଁଠାରେ କି ଆମେ ଆମର ମାନସିକ ଓ ଶାରୀରିକ ଅଭ୍ୟାସର ଚିତ୍ର ଦେଖିପାରିବା । ଆମେ ଅନ୍ଧଭାବରେ ସବୁ ଆଧୁନିକତାକୁ ଗ୍ରହଣ କରିନେବା ଉଚିତ ହେବ ନାହିଁ । ଆମେ ବର୍ତ୍ତମାନର ଶୁଷ୍କ ଓ ଉନ୍ନତ ପୃଥିବୀ ମଧ୍ୟରୁ ଆମର ଦାୟିତ୍ୱବୋଧ ଓ ମନୋଭାବର ଉଚିତ ମୂଲ୍ୟାୟନ କରିବା ଆବଶ୍ୟକ ।

# ଗ୍ରାମାଞ୍ଚଳ

## II

### ନୂତନ ଦୁର୍ବଳତା

ଗ୍ରାମ ବିଷୟରେ ଯାହା ବର୍ଣ୍ଣନା କରାଯାଇଛି, ତାହା ହେଲା ଏହା ଭଲ ପରିବେଶରେ ଗଢ଼ି ଉଠିଥିବା ଏକ ଛୋଟ ପବିତ୍ର ସ୍ଥାନ, ଯାହାର ପ୍ରତ୍ୟେକ କ୍ଷେତ୍ର ଶାନ୍ତ ବାତାବରଣରେ ପୂର୍ଣ୍ଣ ଓ ଯେଉଁଠାରେ ଲୋକେ ଜୀବନ ବଞ୍ଚାଇବାକୁ ପ୍ରାଣପ୍ରଣେ ଚେଷ୍ଟା କରୁଥାନ୍ତି। କିନ୍ତୁ, ପ୍ରକୃତ ସତ୍ୟ ବାସ୍ତବରେ ଏହାଠାରୁ ବହୁ ଭିନ୍ନ। ବହୁ ଗ୍ରାମର କୌଣସି ରୋଜଗାର ପନ୍ଥା ନ ଥାଏ। ଗ୍ରାମବାସୀଙ୍କ ମଧ୍ୟରୁ ଅଧିକାଂଶ ଅଶିକ୍ଷିତ ଓ ଅଜ୍ଞ, ଅନେକ ରୋଗା ଶରୀର ସହିତ କୌଣସି ପ୍ରକାର ଡ଼ାକ୍ତରୀ ସାହାଯ୍ୟ ବିନା ବଞ୍ଚି ରହିଥାନ୍ତି। ଏହି ଅବସ୍ଥାର ଉନ୍ନତି ଗ୍ରାମ ଭିତରେ କିମ୍ବା ବାହାରେ ହେବା ଆଶା କରିବା ମଧ୍ୟ ବୃଥା।

ରୋଜଗାରରେ ଏପରି ତାରତମ୍ୟ ବୁଝିବା ବିଶେଷ କଷ୍ଟକର ନୁହେଁ। ଏହା ଖୁବ ସ୍ପଷ୍ଟ ଯେ ଏଠାରେ ଅଧିକାର ଭିତ୍ତିରେ ବ୍ୟକ୍ତିଗତ ସମ୍ପତ୍ତିର ମାଲିକାନା ସାବ୍ୟସ୍ତ ହୋଇଥାଏ ଏବଂ ଦେଖାଯାଏ ଯେ ଜମିର ଅଧିକାଂଶ ଭାଗର ମାଲିକ ମାତ୍ର ଅଳ୍ପ କେତୋଟି ପରିବାର। ଅନ୍ୟ ବହୁ ପରିବାରଙ୍କର ଛୋଟ ଛୋଟ ଜମି ଥାଏ, ଅବଶିଷ୍ଟ ଭୂମିହୀନ ଏବଂ ଏମାନେ ଧନୀ ଜମିଦାରମାନଙ୍କ ଘରେ କାମଦାମ କରି ଗୁଜୁରାଣ ମେଣ୍ଟାନ୍ତି।

ଧନ ସମ୍ପତ୍ତିର ଏ ପ୍ରକାର ବ୍ୟତିକ୍ରମଯୁକ୍ତ ବଣ୍ଟନ ବିଷୟରେ ଆଲୋଚନାର କୌଣସି ମୂଲ୍ୟ ନାହିଁ। ଏହା ଅଧିକ ଭାବେ କୁହାଯାଇପାରେ ଯେ ଉଚ୍ଚ ଜାତିର ଲୋକେ ବହୁ ଜମିର ମାଲିକ ଏବଂ ନିମ୍ନ ଜାତିର ଲୋକେ ଖୁବ

କମ ଧନର ମାଲିକ। ସୁଯୋଗ ହିଁ ସୁବିଧାର ସୃଷ୍ଟି କର୍ତ୍ତା। ଯାହାକି ଶିକ୍ଷାର ମୂଳ ଓ ଏହା ଅଧିକାରୀଙ୍କୁ ତାର ଆଧିପତ୍ୟ ସବୁଆଡ଼େ ବଢ଼ାଇବାରେ ସାହାଯ୍ୟ କରିଥାଏ। ଗରିବ ହିଁ ଅଧିକ ଦରିଦ୍ରତା, ଅଜ୍ଞତା ଓ ଅସହାୟତା ସୃଷ୍ଟି କରିଥାଏ। କୌଣସି ଗୋଷ୍ଠୀ ଆନ୍ଦୋଳନ ଓ ପୁନଃସୃଷ୍ଟି ପରେ ମଧ୍ୟ କ୍ରମାଗତ ଭାବେ ସବୁ ସମୟରେ ସମାନ ରହିବାରେ ସକ୍ଷମ ହୋଇ ନାହିଁ। କିନ୍ତୁ ପୃଥିବୀର ଅଧିକାଂଶ ଅଞ୍ଚଳର ଲୋକେ ଅସମତା ବିରୋଧରେ କ୍ରମାଗତ ସଂଗ୍ରାମ କରି ଆସିଛନ୍ତି, ଯାହା କି ଧନ ସମ୍ପଦର ବଣ୍ଟନ ଓ ବ୍ୟକ୍ତିଗତ ଅଧିକାର ଉପରେ ନିର୍ଭର କରେ ଏବଂ ଯେଉଁଠାରେ ଲୋକ ନିଜର ସ୍ଥିତି ପରିବର୍ତ୍ତନ ନେଇ ବିଶେଷ ଚିନ୍ତିତ ହୋଇନଥାନ୍ତି।

ଭାରତରେ ଧର୍ମ ଓ ଚଳି ଆସୁଥିବା ବ୍ୟବସ୍ଥା ଯାହାକୁ କି ଜାତି ପ୍ରଥା ସମର୍ଥନ କରେ, ଏହାକୁ ପରିବର୍ତ୍ତନ କରିବା ସବୁବେଳେ କାର୍ଯ୍ୟତଃ ସମ୍ଭବ ହୁଏ ନାହିଁ। ଜିନିଷପତ୍ର ଓ ସୁଯୋଗ ଯାହାକି ଉଚ୍ଚ ଜାତିର ଲୋକେ ଉପଭୋଗ କରିଥାନ୍ତି ଏବଂ ଏହାକୁ ସେମାନଙ୍କର ଅଧିକାରଭୁକ୍ତ କରିଦେଇଥାନ୍ତି, ସେମାନେ ନୀଚ ଜାତିର ଲୋକଙ୍କୁ ଖରାପ ବ୍ୟବହାର ଦେଖାଇବାକୁ ପଛାଇ ନଥାନ୍ତି। ଏହାର ସବୁଠାରୁ ଭଲ ଉଦାହରଣ ହେଉଛି ହରିଜନମାନଙ୍କୁ ମନ୍ଦିର ଭିତରକୁ ଯିବାକୁ ବାରଣ କରିବା। ଏବଂ ଏହାଠାରୁ ଅଧିକ ଅମଣିଷ କାର୍ଯ୍ୟ ହେଉଛି ଗୋଟିଏ ସ୍ଥାନରୁ ପାଣି ନେବାକୁ ବନ୍ଦ କରିବା। ଶହ ଶହ ବର୍ଷ ଧରି ଚଳି ଆସିଥିବା ଏ ପ୍ରକାର ବ୍ୟବହାର ବର୍ତ୍ତମାନ ଆମର ସମଗ୍ର ଦେଶ ପାଇଁ ଚିନ୍ତାର କାରଣ ହୋଇଛି। ଯେଉଁଥିପାଇଁ ହିନ୍ଦୁ ଓ ହରିଜନଙ୍କ ମଧ୍ୟରେ କୁସମ୍ପର୍କ ରହି ଆସିଛି ଓ ବହୁ ସମୟରେ ହିଂସାକାଣ୍ଡ ସୃଷ୍ଟି ହୋଇଛି। ବର୍ତ୍ତମାନର ସଭ୍ୟ ସମାଜରେ ଆମେ ଏହା ଫଳରେ ନିଜକୁ ପ୍ରତିଷ୍ଠିତ କରିବାକୁ ଶଙ୍କାଗ୍ରସ୍ତ ହେଉଛୁ।

ଅଧିକାଂଶ ଗ୍ରାମର ମୁଖ୍ୟ ଜୀବିକା ହେଉଛି କୃଷି। ଆମ ଦେଶରେ ଅଧିକାଂଶ କୃଷକ କଠିନ ଅବସ୍ଥା ଦେଇ ଜୀବିକା ନିର୍ବାହ କରିଥାନ୍ତି। ଅଧିକାଂଶଙ୍କର ଜମି ଛୋଟ ଓ ଏଥିରେ ଜଳସେଚନର ସୁବିଧା ନ ଥାଏ। ମୌସୁମୀ ବାୟୁ ହିଁ ଅଧିକାଂଶ ଚାଷୀଙ୍କର ଜଳ ପ୍ରାପ୍ତିର ମୂଳ ସୂତ୍ର। ତେଣୁ ସେମାନେ ବର୍ଷରେ ଗୋଟିଏ ମାତ୍ର ଫସଲ ଉତ୍ପାଦନ କରିଥାନ୍ତି। ଯଦି ତାର ନିଜର ଜମି ନ ଥାଏ କିମ୍ବା ଛୋଟିଆ ଖଣ୍ଡେ ଜମିଥାଏ, ସେପରି ସ୍ଥଳେ ସେ ଜମି ମାଲିକଙ୍କ ଠାରୁ ଜମି ଆଣି ଚାଷ କରିଥାଏ ଓ ଏପରି ସ୍ଥଳେ

ଶସ୍ୟ ଉଭୟଙ୍କ ମଧ୍ୟରେ ଭାଗ ହୋଇଥାଏ। କିନ୍ତୁ ଏହି କାମ ଅତି କଷ୍ଟକର ଏବଂ ମିଳୁଥିବା ଶସ୍ୟର ମୂଲ୍ୟ ଅତି କମ। ସରକାର ମଧ୍ୟ ଖାଦ୍ୟଶସ୍ୟର ମୂଲ୍ୟ କମାଇବାରେ ବ୍ୟଗ୍ର। ଯାହାଫଳରେ କୃଷକ ତାର ଶସ୍ୟରୁ ଏତେ କମ୍ ପରିମାଣର ମୂଲ୍ୟ ପାଏ ଯେ ତାହା ତାର ଜୀବନ ଯାପନ ପ୍ରଣାଳୀର ଉନ୍ନତି ଦିଗରେ ସହାୟକ ହୋଇପାରେ ନାହିଁ। ତେଣୁ ଆମ ଦେଶରେ ସାଧାରଣ ଲୋକଙ୍କ ଅବସ୍ଥାର ଉନ୍ନତି କରିବାର ବାଟ ହେଉଛି, ଆମକୁ ଦେଖିବାକୁ ହେବ ଯେ ଯେଉଁମାନେ ଜମିରେ କାମ କରୁଛନ୍ତି ସେମାନେ ଯେପରି ଅଧିକ ଲାଭ ପାଇବେ। ଏହା ସତ୍ୟ ଯେ ଯେଉଁ ଅଞ୍ଚଳରେ ସ୍ୱତନ୍ତ୍ର ବ୍ୟବସ୍ଥା ରହିଛି, ଯେଉଁଠାରେ ଭଲ ଜମି ଓ ଜଳସେଚନ ବ୍ୟବସ୍ଥା ରହିଛି ଏବଂ ଯେଉଁଠାରେ ଚାଷୀ ଟଙ୍କା ପାଇବା ଭଳି ଶସ୍ୟ ଉତ୍ପାଦନ କରିଥାଏ, ସେଠାକାର ଚାଷୀଙ୍କ ଅବସ୍ଥା ପ୍ରାୟ ଭଲ। ପଞ୍ଜାବର ଚାଷୀଙ୍କୁ ସଫଳତାର ଏକ ଉଦାହରଣ ଭାବେ ଗ୍ରହଣ କରାଯାଇପାରେ। ମାତ୍ର ମୋଟ ଉପରେ ଭାରତୀୟ ଚାଷୀ କଷ୍ଟ ଓ ଚାପ ଭିତରେ ଜୀବନ ଅତିବାହିତ କରିଥାଏ ଏବଂ ବର୍ତ୍ତମାନ ଅବସ୍ଥାରେ "ଦାରିଦ୍ର୍ୟଚକ୍ର" ରେ ନିଷ୍ପେଷିତ, ଯେଉଁଠାରୁ ମୁକୁଳିବା କଷ୍ଟକର।

ଦାରିଦ୍ର୍ୟ ହେତୁ ସେ ନିଜ ଜମିର ନିମ୍ନ ମାନ ପାଇଁ ବାଧ୍ୟ ହୋଇଥାଏ ଏବଂ ପରିଣାମରେ ଅଧିକ ଗରିବ ହୋଇଯାଏ। ଜାଳେଣିକାଠ ସଂଗ୍ରହ କରିବାକୁ ସେ ନିକଟବର୍ତ୍ତୀ ଗଛକୁ ସଫା କରିଥାଏ ଓ ପରିଣାମରେ ମୃତ୍ତିକା କ୍ଷୟ କରିଥାଏ। ସେ ଜମିର ଉର୍ବରତା ବୃଦ୍ଧି ପାଇଁ ଗୋବରକୁ ବ୍ୟବହାର ନ କରି ଏହାକୁ ଜାଳେଣି ରୂପେ ବ୍ୟବହାର କରିଥାଏ। ନିଜ ଜମି ପୋଖରୀ, ଗାଡ଼ିଆ କୂଳରେ ଥିବାରୁ ଏଥିରୁ ଉର୍ବର ମାଟି ପୋଖରୀକୁ ଧୋଇ ଆସି ଏହାକୁ ପୋତି ପକାଏ ଓ ଏହାର ଜଳଧାରଣ କ୍ଷମତା କମିଯାଏ। ସେ ଛେଳି ପାଳିଥାଏ ଯେଉଁମାନେ କି ସବୁ ସବୁଜ ଅଞ୍ଚଳରେ ଚରି ବୁଲି ଏହାକୁ ବୃକ୍ଷ ଶୂନ୍ୟ କରିବା ସହିତ ନୂତନ ଗଛ ସୃଷ୍ଟିରେ ବାଧା ଦେଇଥାନ୍ତି ଓ ପରେ ମୃତ୍ତିକା କ୍ଷୟ ପାଇଁ ଦାୟୀ ହୋଇଥାନ୍ତି।

ଦେଶର କେତେକ ସମୃଦ୍ଧଶାଳୀ ଅଞ୍ଚଳର ବିଂଶ ଶତାବ୍ଦୀର ଚିତ୍ରରୁ ଏହା ସୁସ୍ପଷ୍ଟ। ଆଧୁନିକ ଯନ୍ତ୍ର ଟ୍ରାକ୍ଟର ଏବେ ସବୁଆଡ଼େ ବ୍ୟବହୃତ ହେଲାଣି ଏବଂ ଯେଉଁଠାରେ ବିଦ୍ୟୁତଶକ୍ତି ଅଛି ସେଠାରେ ବିଜୁଳି ପମ୍ପ ଓ ନଳକୂପ ମଧ୍ୟ ପହଁଞ୍ଚିଗଲାଣି। ଚାଷୀ ବଳଦଗାଡ଼ି ଛାଡ଼ି ଏବେ ମଟର ସାଇକେଲରେ

ଯିବା ଆସିବା କଲାଣି। ଏହା ଚାଷୀମାନଙ୍କୁ ଅତ୍ୟଧିକ ସୁଖ ସୁବିଧା ପ୍ରଦାନ କରୁଛି ଏବଂ ସେମାନେ ବହୁ କଷ୍ଟକର ଓ ଅସୁବିଧାଜନକ କାମକୁ ତ୍ୱରାନ୍ୱିତ କରିପାରୁଛନ୍ତି।

ଏକା ସଙ୍ଗରେ ଏହି ସବୁ କାମ ହେଉଛି, କିନ୍ତୁ ପରିତାପର ବିଷୟ ହେଉଛି ଯେ ଅନ୍ୟ କେତେକ ଆଧୁନିକ ବିଷୟର ପରିବର୍ତ୍ତନ ଚାଷୀମାନଙ୍କୁ ତତ୍‌କ୍ଷଣାତ ସାହାଯ୍ୟ କରୁଥିବା ବେଳେ ଏହା ସ୍ଥାନୀୟ ଅଞ୍ଚଳକୁ ନଷ୍ଟ କରିଦେବାର ସୁଦୂର ପ୍ରସାରୀ କାର୍ଯ୍ୟ ରହିଛି, ନଷ୍ଟ ହୋଇ ସାରିଥିବା ଜମିରେ ଅଧିକ ରାସାୟନିକ ସାର ସାହାଯ୍ୟରେ ଅଧିକ ଉତ୍ପାଦନ କରାଯାଇ ପାରିବ। ଏହି ରାସାୟନିକ ପଦାର୍ଥଗୁଡ଼ିକ, ଯାହା ବିଷୟରେ ଆମେ ନଦୀ ପରିଚ୍ଛେଦରେ ଆଲୋଚନା କରିଛେ, ନିକଟବର୍ତ୍ତୀ ନଦୀକୁ ଧୋଇ ହୋଇ ଯାଇ ପାଣିକୁ ପ୍ରଦୂଷିତ କରିଥାଏ। ଏହା ବ୍ୟତୀତ ଆଧୁନିକ ଚାଷ ପଦ୍ଧତି ମଧ୍ୟ ଅନିଷ୍ଟକାରୀ ଯାହା ପୋକ ମାନଙ୍କ ବୃଦ୍ଧିକୁ ତ୍ୱରାନ୍ୱିତ କରିବା ଫଳରେ ଅତ୍ୟଧିକ ରାସାୟନିକ ପୋକମରା ଔଷଧ ବ୍ୟବହାର କରିବାକୁ ହୋଇଥାଏ। ଏହି ବିଷ ଖାଦ୍ୟ ଭିତରକୁ ପଶିଯାଏ, କାରଣ ପକ୍ଷିମାନେ ବିଷ ଦ୍ୱାରା ଆକ୍ରାନ୍ତ କୀଟ ପତଙ୍ଗକୁ ଖାଇଥାନ୍ତି। କେତେ ସମୟ ପରେ ଦେଖାଯାଏ ଯେ ଏହି ପ୍ରକାର କୀଟ ପତଙ୍ଗମାନେ ବିଷକୁ ସହିବାର ପ୍ରବୃତ୍ତି ନିଜ ଦେହରେ ସୃଷ୍ଟି କରି ପାରିଛନ୍ତି କିନ୍ତୁ ଯେହେତୁ ଏହା ସେମାନଙ୍କ ଶରୀରରେ ରହିଥାଏ, ଏମାନଙ୍କୁ ଖାଉଥିବା ପକ୍ଷି ପରିଣାମରେ ଆକ୍ରାନ୍ତ ହୋଇଥାଏ। ଡ଼ି.ଡ଼ି.ଟିର ବ୍ୟବହାର ପରେ ବହୁ ସଂଖ୍ୟକ ପକ୍ଷିଙ୍କ ସଂଖ୍ୟା କମିଯାଇଛି। ଯଦିଓ ପକ୍ଷି ନିଜେ ମରେ ନାହିଁ, କିନ୍ତୁ ପ୍ରଦୂଷିତ ପୋକଜୋକଙ୍କୁ ଖାଇବା ଦ୍ୱାରା ଏହାର ଅଣ୍ଡାଖୋଳ ଆକ୍ରାନ୍ତ ହୁଏ ଓ ଏହା ପ୍ରଜନନ ପାଇଁ ଅକ୍ଷମ ହୋଇଥାଏ। ଏହା ଅନିଷ୍ଟକାରୀ ଜୀବଜନ୍ତୁଙ୍କୁ ନଷ୍ଟ କରୁଥିବା ପକ୍ଷୀମାନଙ୍କ ସଂଖ୍ୟା କମାଇ ଦିଏ। ଫଳରେ ଚାଷୀମାନେ ଅଧିକ ପୋକମରା ଔଷଧ ବ୍ୟବହାର କରିଥାନ୍ତି।

ଆମକୁ ସ୍ୱୀକାର କରିବାକୁ ହେବ ଯେ ଯଦିବା ଚାଷୀମାନେ ରାସାୟନିକ ପଦାର୍ଥର ବ୍ୟବହାର ଜନିତ ଭୟାବହ ଧ୍ୱଂସାତ୍ମକ ଗୁଣ ବିଷୟରେ ଜାଣିସାରିଲେଣି, ଯଦିବା ସେମାନେ ପରିବେଶର ଅଧିକ କ୍ଷତି ନ ହେବା ପାଇଁ ସଚେତନ, ତେବେ ବି ସେମାନେ ଏହାର ବ୍ୟବହାର ସମ୍ପୂର୍ଣ୍ଣ ରୂପେ ବନ୍ଦ କରି ପାରିବେ ନାହିଁ। ଅତିଶୀଘ୍ର ଫଳ ପାଇବା ପାଇଁ ସେ ଆଶାବାଦୀ। ସେ ସର୍ବସାଧାରଣଙ୍କ ଭଲ ପାଇଁ ତାଙ୍କୁ ଅତିଶୀଘ୍ର ମିଳୁଥିବା ଲାଭକୁ ବିନିଯୋଗ କରିପାରିବେ ନାହିଁ।

ଅଧିକାଂଶ ସମୟରେ କୁହାଯାଏ ଯେ ଗ୍ରାମାଞ୍ଚଳର ଲୋକମାନଙ୍କର ଅବସ୍ଥାର ପ୍ରତିବନ୍ଧକ ହେଉଛି ଶିକ୍ଷାର ଅଭାବ। ସ୍ୱାଧୀନତା ପରେ ଗ୍ରାମାଞ୍ଚଳରେ ପ୍ରାଥମିକ ବିଦ୍ୟାଳୟମାନ ସ୍ଥାପନ କରାଯାଇ ଲୋକମାନଙ୍କୁ ଶିକ୍ଷିତ କରିବା ପାଇଁ ବହୁ ଚେଷ୍ଟା କରାଯାଇଛି। ଏହା ସମ୍ପୂର୍ଣ୍ଣ ସଫଳତା ହାସଲ କରିନାହିଁ। ଦେଖାଯାଉଛି ଯେ ଏହି ଶିକ୍ଷାପଦ୍ଧତି ଗ୍ରାମାଞ୍ଚଳର ପିଲାମାନଙ୍କ ପାଇଁ ପ୍ରାସଙ୍ଗିକ ନୁହେଁ। କିଛି ବର୍ଷ ପାଇଁ ସ୍କୁଲକୁ ଯିବାଦ୍ୱାରା ଏହା ହୁଏତ ସମ୍ପୂର୍ଣ୍ଣ ବ୍ୟର୍ଥତାରେ ପରିଣତ ହୋଇଥାଏ କିମ୍ବା ଏହାଦ୍ୱାରା ପିଲାମାନେ ଏପରି ବଦଳିଯାଆନ୍ତି ଯେ ସେମାନେ ତାଙ୍କର କୌଳିକ କାମ ଓ ପ୍ରଥାକୁ ଭୁଲିଯାଇ କୌଣସି କାମ ପାଇଁ ଅନୁପଯୁକ୍ତ ବିବେଚିତ ହୁଅନ୍ତି।

ଗାଁ ଗହଳର ପିଲାମାନେ ସାଧାରଣତଃ ସେମାନଙ୍କ ପିତାମାତାଙ୍କୁ ଅନୁସରଣ କରି, ସାହାଯ୍ୟ କରି କୌଳିକ କାର୍ଯ୍ୟ ଶିଖିଥାନ୍ତି। ଏପରି ଅଳ୍ପ କେତେକ କାର୍ଯ୍ୟ ଅଛି, ଯାହାକୁ ବଡ଼ ହେବା ପରେ ଯାଇ ଶିଖାଯାଏ। ପିଲା ତେଣୁ ସାଧାରଣତଃ କଳା ସହିତ ବଢ଼େ ଯାହା ହୁଏତ ଲୁଗାବୁଣା କିମ୍ବା କୂଅଖୋଳା ବା ଧାନଚାଷ ଇତ୍ୟାଦି ଯାହା କିଛି ହୋଇପାରେ। ଏହି କାର୍ଯ୍ୟ ସାଧାରଣତଃ ସ୍କୁଲରେ ଶିଖାଯାଏ ନାହିଁ। ତେଣୁ ଯେଉଁପିଲା ପିଲାଦିନରୁ ଏ ଦିଗରେ ମନ ନ ଦେଇ ସ୍କୁଲକୁ ପାଠ ପଢ଼ିବାକୁ ଯାଏ, ସେ ପରବର୍ତ୍ତୀ କାଳରେ ଜଣେ କୁଶଳୀ କୌଳିକ କାରିଗର ହୋଇ ଏହା ଉପରେ ନିର୍ଭର କରିପାରେ ନାହିଁ। ଅନ୍ୟପକ୍ଷରେ ଶ୍ରେଣୀରେ ଶିକ୍ଷା ଦିଆଯାଉଥିବା ପୁସ୍ତକଗତ ବିଦ୍ୟାର ସାରା ପୃଥିବୀ ସହିତ ଅଳ୍ପ ସମ୍ପର୍କ ଥାଏ, ଯାହାଦ୍ୱାରା କି ଗ୍ରାମର ପିଲା ଉପକୃତ ହେବ। ସଂକ୍ଷେପରେ ଗାଁ ଗହଳ ପିଲାଙ୍କର ବାହ୍ୟ ଜ୍ଞାନ ଜାଣିବା ଅତି ଦରକାର ନୁହେଁ। ସେ ସବୁବେଳେ ବ୍ୟବହାରିକ ତଥ୍ୟ ଜାଣିବା ଦରକାର ଯାହାକି ନିକଟବର୍ତ୍ତୀ ପାରିପାର୍ଶ୍ୱିକ ଅବସ୍ଥା ସହିତ ଜଡ଼ିତ ଥିବ।

ସହରରେ ଥିବା ଲୋକ ସାଧାରଣତଃ ବହୁ ଅନୁଷ୍ଠାନ ଓ ବିଶେଷଜ୍ଞଙ୍କ ଉପରେ ନିର୍ଭର କରିଥାଏ ଯାହାକି ଗ୍ରାମ ଲୋକଙ୍କ ପକ୍ଷରେ ସମ୍ଭବ ନୁହେଁ। ଅଧିକାଂଶ ଗ୍ରାମରେ ହାଇସ୍କୁଲଟିଏ ନାହିଁ, ସମ୍ବାଦପତ୍ର, ଲାଇବ୍ରେରୀ, ଶିକ୍ଷକ, ଡ଼ାକ୍ତର, ଡ଼ାକ୍ତରଖାନା, ନର୍ସ, ଓକିଲ ନାହାଁନ୍ତି। ମାତ୍ର ସେମାନଙ୍କ ସାଧାରଣଜ୍ଞାନ ଦ୍ୱାରା ସେମାନେ ଏହି ମାନଙ୍କର ଅଭାବ ଅନେକ ସମୟରେ ଆପଣାଛାଏଁ ପୂରଣ କରିଥାନ୍ତି। ସାଧାରଣ ଜ୍ଞାନ ସବୁ ସମୟରେ ଏକ ଅନୁଷ୍ଠାନରେ ଶିକ୍ଷା ଦିଆଯାଏ ନାହିଁ। ମାତ୍ର ନିର୍ମଳ ଓ କର୍ମଗତ ଚିନ୍ତାଧାରା ଯାହାକି

କିଛି ସାଧାରଣ ଘଟଣାବଳୀ ସନ୍ନିବେଶିତ ହୋଇଥାଏ, ଏହା ମଧ୍ୟରେ ଅନ୍ତର୍ଭୁକ୍ତ ହୋଇଥାଏ। ପଢ଼ିବା ଓ ଲେଖିବା କଳା, ବିଭିନ୍ନ ପଦାର୍ଥକୁ ଭଲ ଭାବରେ ବ୍ୟବହାର କରିବା ଜ୍ଞାନ, ପରିବେଶକୁ ଲକ୍ଷ୍ୟ କରି ସବୁ ପଦାର୍ଥକୁ ବୁଝିବାର ଶକ୍ତି ହେଉଛି ସବୁଠାରୁ ବଡ଼ କଥା। ଏଗୁଡ଼ିକ ତାଙ୍କର ଶିକ୍ଷାର ଆବଶ୍ୟକ ଅଙ୍ଗ। ସହର ବଜାରଠାରୁ ଗ୍ରାମାଞ୍ଚଳର ପଦ୍ଧତି ସେଥିପାଇଁ ଅଲଗା ହେବା ଆବଶ୍ୟକ। ସହରରେ ଶିକ୍ଷା ପ୍ରଣାଳୀ ସାଧାରଣତଃ ଉଚ୍ଚ ଶିକ୍ଷାକୁ ଦୃଷ୍ଟିରେ ରଖି ପାହାଚ ସଦୃଶ ପ୍ରସ୍ତୁତ କରାଯାଇଥାଏ। ଗ୍ରାମରେ ସ୍କୁଲ ପରିବେଶ କାର୍ଯ୍ୟାବଳୀକୁ ନେଇ ପରିଚାଳିତ ହେବା ଦରକାର ଯଦ୍ୱାରା ପିଲାଏ ଜୀବନରେ ସବୁ ପ୍ରକାର କାମ କରିବାର ଯୋଗ୍ୟତା ହାସଲ କରିପାରିବେ। ଶିକ୍ଷା ଓ କାର୍ଯ୍ୟ ମଧ୍ୟରେ କୌଣସି ପ୍ରକାର ବିଚ୍ଛେଦ ରହିବା ଅନାବଶ୍ୟକ।

ବୋଧହୁଏ ଗ୍ରାମ୍ୟ ଶିକ୍ଷାର ମୁଖ୍ୟ ଆଭିମୁଖ୍ୟ ହେଉଛି ଟଙ୍କା ପଇସାକୁ କିପରି ଭାବରେ ପରିଚାଳନା କରିବ ସେ ବିଷୟରେ କିଛି ଜ୍ଞାନ ଆହରଣ କରିବା। ଆମେ ଯାହା ଦେଖୁ ଗ୍ରାମବାସୀମାନେ ସାଧାରଣତଃ କିଣା ବିକା ନ କରି ସେବା ଓ ପଦାର୍ଥକୁ ବଦଳାଇଥାନ୍ତି। ଜଣେ ଗ୍ରାମବାସୀ ବର୍ଷରେ ଥରେ ଟଙ୍କା ରୋଜଗାର ଓ ଖର୍ଚ୍ଚ କରେ। ଅଧିକ ଭାବେ ବିବାହ, ଧାର୍ମିକ ଅନୁଷ୍ଠାନ ଓ ଉତ୍ସବରେ ଟଙ୍କା ଖର୍ଚ୍ଚ ହୋଇଥାଏ। ଏ ପ୍ରକାର ଖର୍ଚ୍ଚ ଯେ କୌଣସି ଲୋକକୁ ଦୀର୍ଘମିଆଦି ସୁବିଧା ଦେଇପାରେ ନାହିଁ, ସେଥିପାଇଁ ଏହାକୁ ନିରର୍ଥକ ବୋଲି କୁହାଯାଇଥାଏ ଏବଂ ଏହିପରି ଘଟଣାରେ ସେ ବହୁ ଭାବରେ ଋଣ ଗ୍ରସ୍ତ ହୋଇ ପଡ଼ିଥାଏ। ସେ ବହୁ ଉଚ୍ଚ ହାରରେ ମହାଜନକୁ ସୁଧ ଦେଇ ଏହି ଅର୍ଥ ଆଣେ, ମାତ୍ର ସେ ସେତେବେଳେ ଜାଣିନଥାଏ ଯେ ତାକୁ ଏହା ଶୁଝିବା ବେଳକୁ ହୁଏତ ମୂଳଧନର ବହୁ ଗୁଣ ଅର୍ଥ ଦେବାକୁ ପଡ଼ିବ। ବାସ୍ତବିକ ତା' ପରେ ଅନେକ ସମୟରେ ତା'ର ପିଲାଏ ମଧ୍ୟ ଏହି ଋଣକୁ ଶୁଝିଥାନ୍ତି। ଏହିପରି କ୍ଷେତ୍ରରେ ଋଣ ଗ୍ରହୀତା ମହାଜନ ନିକଟରେ କାମ କରି ଟଙ୍କା ଶୁଝିଥାଏ ଏବଂ ତାର ସୁଧ ଠିକ ଭାବେ ହିସାବ କରିବାର ଦକ୍ଷତା ନ ଥିବାରୁ ତା'ଜୀବନର ସବୁଠାରୁ ଉତ୍ପାଦନକ୍ଷମ ଓ କାର୍ଯ୍ୟକ୍ଷମ ସମୟ କ୍ରୀତଦାସ ରୂପେ କଟିଯାଇଥାଏ।

ଗ୍ରାମର ଅଧିକାଂଶ କାର୍ଯ୍ୟ ମୁଖ୍ୟତଃ ବାକୀ ଓ ଧାର କରଜ ସୂତ୍ରରେ ହୋଇଥାଏ। ଏପରିକି ଦୈନନ୍ଦିନ ବ୍ୟବହାର ପାଇଁ ଦରକାରୀ ସାଧାରଣ ପଦାର୍ଥ ମଧ୍ୟ ବାକୀରେ ଅଣାଯାଏ। ଗ୍ରାମ ଲୋକେ ସେମାନଙ୍କର ଦୈନନ୍ଦିନ

ଆବଶ୍ୟକ ପଦାର୍ଥ ସ୍ଥାନୀୟ ବଣିଆ ଦୋକାନରୁ ସଂଗ୍ରହ କରିଥାନ୍ତି, ଯାହାକି ଅର୍ଥ ଦେଇ ନୁହେଁ, ବାକୀରେ। ତେଣୁ ସାଧାରଣତଃ ଟଙ୍କା ଦେଇ ଆଣିଲେ ଯାହା ମୂଲ୍ୟ ହୁଅନ୍ତା ତାଠାରୁ ବହୁ ଅଧିକ ଅର୍ଥ ଦୋକାନୀ ଦାବୀ କରିଥାଏ। ମାତ୍ର ଦୋକାନୀ ଯାହା କୁହେ, ତା ବ୍ୟତୀତ ତା ପାଖରେ ଅନ୍ୟ କୌଣସି ବିକଳ୍ପ ନ ଥାଏ। ଭଲ ଜିନିଷ ପାଇଁ ସେ ଏ ଦୋକାନ ସେ ଦୋକାନ ହୋଇପାରେ ନାହିଁ। ସେ ବାକୀ ଦେଉଥିବା ଦୋକାନରୁ ହିଁ ଜିନିଷ ନିଏ ଏବଂ ଅନେକ ସମୟରେ ସେଥିପାଇଁ ଜିନିଷ ଖରାପ, ଅପମିଶ୍ରିତ ହୋଇଥାଏ, ମାତ୍ର ଏହା ବିରୋଧରେ କୌଣସି କାର୍ଯ୍ୟ କରିବା ପାଇଁ ତା ନିକଟରେ କୌଣସି ବିକଳ୍ପ ନ ଥାଏ। ଯଦି ଆମେ ତାର ଆର୍ଥିକ ଅବସ୍ଥାକୁ ସଂଗଠିତ କରିପାରିବା, ଯଦ୍ଵାରା ସେ ତାର ଦରକାର ବେଳେ ଅର୍ଥ ପାଇପାରିବ, ତେବେ ସେ ହୁଏତ ଶସ୍ତାରେ ଭଲ ଜିନିଷ କିଣିପାରିବ।

ଟଙ୍କା ପଇସା କାରବାର ବେଳେ ଶିକ୍ଷା ଥିଲେ ଅତ୍ୟଧିକ ଟଙ୍କା ଖର୍ଚ୍ଚ କରିବା ବା ଅତ୍ୟଧିକ ଟଙ୍କା ଋଣ କରିବାର ଫଳାଫଳ ଲୋକ ସହଜରେ ଜାଣି ପାରିଥାଏ। ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ବିଷୟ ହେଉଛି ଏହାଦ୍ୱାରା ମଣିଷ ତାର ଟଙ୍କାର କିପରି ଉଚିତ ବିନିଯୋଗ କରାଯାଇ ପାରିବ, ତାହା ନିର୍ଦ୍ଧାରଣ କରିପାରେ। ଉଦାହରଣ ସ୍ୱରୂପ (କ) ତାର ପିଲାମାନଙ୍କୁ ଶିକ୍ଷା ଦେବାର ଇଚ୍ଛା ରହିଛି। (ଖ) ତାର ଖାଦ୍ୟ ପଦାର୍ଥକୁ ଭଲ କରିବାର ଇଚ୍ଛା (ଗ) ତାର ଘରକୁ ଅଧିକ ସଫାସୁତୁରା ଓ ଟେକନକ୍ଷମ କରିବା (ଘ) କେତେକ ଉତ୍ସବାନୁଷ୍ଠାନ କରିବା ଇତ୍ୟାଦି ଇଚ୍ଛା ରହିଛି। ତେଣୁ ସେ କଣ ବାଛି ନେବ ? ନିୟମ ଅନୁସାରେ ସେ ପ୍ରଥମେ କେତେଗୁଡ଼ିଏ ପଦାର୍ଥ ପାଇଁ କମ ଦୃଷ୍ଟି ଦେବ। ତାକୁ କେହି ସଫା ସୁତୁରାର ଆବଶ୍ୟକତା ବିଷୟରେ କହି ନଥାନ୍ତି କିମ୍ବା ପରିବାରର ସୁସ୍ୱାସ୍ଥ୍ୟ ଓ ସୁଖ ପାଇଁ ତାର ଖାଦ୍ୟକୁ ଟିକେ ଉନ୍ନତ କରିବାକୁ ମଧ୍ୟ କେହି ପରାମର୍ଶ ଦେଇ ନଥାନ୍ତି। ସେ ପୂର୍ବ ପରି ସଂଗ୍ରାମପୂର୍ଣ୍ଣ ଜୀବନଯାପନ କରିବାରେ ଅଭ୍ୟସ୍ତ କିନ୍ତୁ ଉତ୍ସବାନୁଷ୍ଠାନ ହେଉଛି ଏକ ଧାର୍ମିକ କାର୍ଯ୍ୟ ଯାହାକି ତାକୁ *ନାମ* ଓ ସାଧାରଣଙ୍କ ଭିତରେ ପରିଚିତ କରାଇବ, ତେଣୁ ସେଥିପାଇଁ ଏହା ହିଁ ବସ୍ତୁତଃ ତାର ସବୁଠାରୁ ଆକର୍ଷଣୀୟ ପସନ୍ଦ।

ଅସାବଧାନତା ବଶତଃ କିଛି ଅଳ୍ପ ବ୍ୟୟ, ଆସ୍ତେ ଆସ୍ତେ କିଛି ସଞ୍ଚୟ କରିବାରେ ପ୍ରାୟ ଅଧିକାଂଶ ଗ୍ରାମବାସୀ ବିରୋଧୀ। ବ୍ୟବସାୟୀ, ବିଶେଷ

କରି ବଣିଆମାନେ ଜନ୍ମରୁ ଟଙ୍କା ସହିତ ପରିଚିତ ଏବଂ ଏହାକୁ ଯେ କୌଣସି ପ୍ରକାର ପ୍ରତିଶ୍ରୁତି ଓ ପୂର୍ବଜ୍ଞାନ ସହିତ ଖଟାଇଥାନ୍ତି ଏବଂ ଏହା କିପରି ବହୁଗୁଣିତ ହେବ, ତାହା ସେମାନଙ୍କୁ ସାଧାରଣତଃ ଜଣାଥାଏ। ଗ୍ରାମ୍ୟ ସ୍କୁଲର ମୁଖ୍ୟ କାର୍ଯ୍ୟ ହେଉଛି ବହିପତ୍ର ରଖିବା। ଆମ ଗ୍ରାମାଞ୍ଚଳର ସ୍କୁଲ ମାନଙ୍କରେ ଶିକ୍ଷାପାଇଁ ଯେଉଁ ଟଙ୍କା ଖର୍ଚ୍ଚ ହେଉଛି ତାର ମୂଲ୍ୟ ଗ୍ରାମକୁ କିଛି ମିଳୁ ନାହିଁ। ଏହା ଅନେକଙ୍କୁ ଜଣେ ଜଣେ ଅସନ୍ତୁଷ୍ଟ ଅସମର୍ଥ ବ୍ୟକ୍ତିଭାବେ ପରିଣତ କରୁଛି। ଆଜିର ଅଧିକାଂଶ ଶିକ୍ଷା ବ୍ୟବସ୍ଥା ହୁଏତ ଗ୍ରାମାଞ୍ଚଳର ଲୋକଙ୍କ ପ୍ରକୃତ ଆବଶ୍ୟକତାକୁ ଘୋଡ଼ାଇ ଯାଉଛି କିମ୍ବା ଏହା ସହିତ ସମାନ୍ତରାଳ ଭାବେ ଗତି କରି ଚାଲିଛି, ଯାହାର କି ସେମାନଙ୍କ ପ୍ରକୃତ ଜୀବନଯାପନ ସହିତ କୌଣସି ସମ୍ପର୍କ ନାହିଁ। ଗ୍ରାମାଞ୍ଚଳର ଶିକ୍ଷା ବ୍ୟବସ୍ଥା ଯେପରି ସେମାନଙ୍କର ଜୀବନ ଉପରେ ପ୍ରଭାବ ବିସ୍ତାର କରି ଏହାର ଉନ୍ନତି କରିପାରିବ ତାହା ଦେଖିବା ଆବଶ୍ୟକ।

ଏହା ଆଶ୍ଚର୍ଯ୍ୟଜନକ ଭାବେ ସତ୍ୟ ଯେ ଅଧିକାଂଶ ଗ୍ରାମବାସୀ ସେମାନେ ବାସ କରୁଥିବା କଷ୍ଟକର ଜୀବନ ମଧ୍ୟରେ ଅଲଗା ଏବଂ ସେମାନଙ୍କ ଅବସ୍ଥାର ଉନ୍ନତି ପାଇଁ କୌଣସି ପ୍ରକାର ପରାମର୍ଶକୁ ଗ୍ରହଣ କରିବାକୁ ନାରାଜ। ଆମେ ଗ୍ରାମବାସୀମାନଙ୍କର ଏ ପ୍ରକାର ନିରୁତ୍ସାହ, ସେମାନଙ୍କ ଅବସ୍ଥା ବିଷୟରେ ତାଙ୍କର ଅବହେଳା, ନିଜକୁ ନିଜେ ସାହାଯ୍ୟ କରିବା ପାଇଁ ଉତ୍ସାହର ଅଭାବ ଏପରିକି ସମ୍ପୂର୍ଣ୍ଣ ଭାବେ ଶାରୀରିକ ସ୍ତରରେ ଆଗ୍ରହ ଇତ୍ୟାଦି ବିଷୟରେ ଆଲୋଚନା କରୁ। ସେମାନେ ସମସ୍ତେ ଏକ ଖରାପ ରାସ୍ତାରେ ଚଳପ୍ରଚଳ କରିବେ, ମାତ୍ର କିଛି ଶ୍ରମ ସ୍ୱୀକାର କରି ଏହାକୁ ମରାମତି କରିବାକୁ ଇଚ୍ଛା କରିବେ ନାହିଁ। ସେମାନେ ଏକ କୂଅ ନ ଖୋଳାଇ ସ୍ୱାସ୍ଥ୍ୟରକ୍ଷା ପ୍ରତି ଦୃଷ୍ଟି ଦେବେ ନାହିଁ, କୌଣସି ଜାଳେଣିକାଠ ଗଛ ଲଗାଇବା କାର୍ଯ୍ୟ, ଯାହାକି ସେମାନଙ୍କୁ ବହୁ ଦିନ ଧରି ସେମାନଙ୍କର ପରିଶ୍ରମ ଉପଶମ କରିବାରେ ସାହାଯ୍ୟ କରିଥାଏ, ତାହା ସେମାନେ କରନ୍ତି ନାହିଁ। ଏହି କାର୍ଯ୍ୟର ମୂଳ ବିଶ୍ୱାସ ହେଉଛି "ଯାହା ଭାଗ୍ୟରେ ଥିବ, ତାହା ହିଁ ଘଟିବ", କିନ୍ତୁ ଆଂଶିକଭାବେ ହେଉ ବା ଅନେକ କ୍ଷେତ୍ରରେ ଖରାପ ସ୍ୱାସ୍ଥ୍ୟ ଯୋଗୁଁ ଏହା ଘଟିଥାଏ। ଜଣେ ବଳିଷ୍ଠ ଓ କାର୍ଯ୍ୟବାନ ପୁରୁଷ ଦୁର୍ବଳ ଓ ରୋଗାକ୍ରାନ୍ତ ମଣିଷ ଠାରୁ କମ୍ ଭାଗ୍ୟରୂପକ ହାତ୍ତାରେ ବିଶ୍ୱାସ କରେ।

ସହରର ମଝି ଅଞ୍ଚଳରେ ବାସ କରୁଥିବା ଜଣେ ମଣିଷ ଠାରୁ ଗାଁ

ଗହଳରେ ବାସ କରୁଥିବା ମଣିଷ ଅଧିକ ସ୍ୱାସ୍ଥ୍ୟବାନ ବୋଲି ସାଧାରଣତଃ ବିଶ୍ୱାସ କରାଯାଇଥାଏ । ଗ୍ରାମାଞ୍ଚଳର ଲୋକ ଈଶ୍ୱରଦତ୍ତ ମୁକ୍ତ ନିର୍ମଳ ପବନ ପାଇଥାଏ । ତାର ଖାଦ୍ୟ ସିଧାସଳଖ କ୍ଷେତରୁ ଆସିଥାଏ, ଏବଂ ଶୀଘ୍ର ଶୋଇବା ଓ ଶୀଘ୍ର ଉଠିବା ତାର ଅଭ୍ୟାସରେ ପରିଣତ ହୋଇ ଯାଇଥାଏ । ଫଳତଃ, ଏକ ସ୍ଥାନରେ ବସିବା ପରିବର୍ତ୍ତେ ତାକୁ ବହୁ ବ୍ୟାୟାମ କରିବାର ସୁଯୋଗ ମିଳିଥାଏ ।

ଏହା ସତ୍ତ୍ୱେ ଏ ସବୁ ଭଲ ସ୍ୱାସ୍ଥ୍ୟ ଗଠନ କରିବାରେ ସହାୟକ ହୋଇପାରନ୍ତି ନାହିଁ । ଆମ ଗ୍ରାମାଞ୍ଚଳର ବହୁ ଲୋକ ଅଧିକାଂଶ ସମୟରେ ଅସୁସ୍ଥତାରେ ଆକ୍ରାନ୍ତ । ଏହାର ମୁଖ୍ୟ କାରଣ ହୁଏତ ଜଳାଶୟ, ଯାହାକି ମଳମୂତ୍ର ଦ୍ୱାରା ପ୍ରଦୂଷିତ ହୋଇ ଗ୍ରାମ ଓ ତାର ଆଖପାଖ ଅଞ୍ଚଳକୁ ରୋଗଗ୍ରସ୍ତ କରେ । ଏହା ଆଶ୍ଚର୍ଯ୍ୟଜନକ ନୁହେଁ ଯେ ଗ୍ରାମବାସୀମାନେ ରୁଗ୍ଣଶରୀର ଯୁକ୍ତ ହୋଇ ଥାଆନ୍ତି, ପିଇବା, ଖାଦ୍ୟ ପ୍ରସ୍ତୁତି ଓ ଲୁଗାସଫା ପାଇଁ ବ୍ୟବହାର କରୁଥିବା ଜଳ ପ୍ରଦୂଷିତ ହୋଇଥାଏ । ଗ୍ରାମାଞ୍ଚଳର ଜଳକୁ ବିଶୋଧନ କରିବାର ପ୍ରଥମ ପଦକ୍ଷେପ ହେଉଛି ଲୋକଙ୍କୁ ଗଭୀର ଖାତକୁ ପାଇଖାନା ରୂପେ ବ୍ୟବହାର କରିବାକୁ ଶିକ୍ଷା ଦେବା ।

ଏଠାରେ ଖାଦ୍ୟ ଅବସ୍ଥା ମଧ୍ୟ ସମଭାବରେ ଆକ୍ରାନ୍ତ । ଏହା ସତ୍ୟ ନୁହେଁ ଯେ ଗ୍ରାମବାସୀମାନେ ଅଧିକ ଖରାପ ଖାଦ୍ୟ ଖାଆନ୍ତି, କାରଣ ସେମାନେ ଅଧିକା ପାଆନ୍ତି ନାହିଁ । ଗ୍ରାମାଞ୍ଚଳରେ ପ୍ରାୟ ଅର୍ଦ୍ଧାଧିକ ଲୋକ ସମ୍ପୂର୍ଣ୍ଣ ପୁଷ୍ଟ ନୁହନ୍ତି ବା ଖାଦ୍ୟାଭାବ ରୋଗରେ ଆକ୍ରାନ୍ତ ।

ଯେଉଁଠାରେ ପ୍ରକୃତ ଦରିଦ୍ରତା ଥାଏ, ସେଠାରେ ସମତା ରକ୍ଷା କରିବା ବା ବଢ଼ାଇବା ଭଳି ଖାଦ୍ୟ ଖାଇବା ବିଷୟରେ ଉପଦେଶ ଦେବା ନିରର୍ଥକ । ତେଣୁ ସେଠାରେ କେତେକ ଅସ୍ୱାସ୍ଥ୍ୟକର ଖାଦ୍ୟ ବିଷୟରେ ଏବଂ ଖାଦ୍ୟ ଖାଇବା ଅଭ୍ୟାସରେ ପରିବର୍ତ୍ତନ କରାଯିବା ଆବଶ୍ୟକ । ସେମାନଙ୍କର ଖାଦ୍ୟରେ ଅଧିକ ପରିବା ବା ଫଳ ନ ଥାଏ । ଏମାନଙ୍କ ପାଇଁ ପୁଷ୍ଟିସାରର ମୁଖ୍ୟ ଆଧାର ହେଉଛି ଡ଼ାଲି । ଯୁବକ ଓ ପିଲାମାନଙ୍କ କ୍ଷେତ୍ରରେ ବହୁ ଶୋଚନୀୟ ଅଭାବ ପରିଲକ୍ଷିତ ହୋଇଥାଏ । ଶାରୀରିକ ଓ ମାନସିକ ଭାବେ ବଢ଼ିବାକୁ ପିଲା କେତେକ ଶକ୍ତି ପ୍ରଦାନକାରୀ ଖାଦ୍ୟ ଆବଶ୍ୟକ କରେ । କେତେକ କ୍ଷେତ୍ରରେ ମୌଳିକ ପ୍ରଥା ଓ ବ୍ୟବସ୍ଥା ଶିଶୁକୁ ଏହା ଖାଇବାକୁ ବାରଣ କରିଥାଏ ଏବଂ ତାହାକୁ କେବଳ କ୍ଷୀର କିମ୍ୱା ଚାଉଳମଣ୍ଡ, ପେଜ ପ୍ରଥମ

ଦୁଇ ତିନି ବର୍ଷ ଖାଇବାକୁ ଏକ ପ୍ରକାର ବାଧ୍ୟ କରାଯାଇଥାଏ। ଏବେ ଏହା ବିଶ୍ୱାସ କରାଯାଉଛି ଯେ ଗ୍ରାମାଞ୍ଚଳର ଲୋକଙ୍କର ଶାରୀରିକ ଓ ମାନସିକ ଉନ୍ନତି ଦିଗରେ ଏହା ହିଁ ମୁଖ୍ୟ ପ୍ରତିବନ୍ଧକ।

ମାତ୍ର, ଗ୍ରାମାଞ୍ଚଳର ଲୋକଙ୍କର ଅସୁସ୍ଥତା ଏପରି ନୁହେଁ ଯାହା ତତ୍‌କ୍ଷଣାତ ଏକ ଡ଼ାକ୍ତର ବା ହାସପାତାଳ ଆବଶ୍ୟକ କରେ। ଯାହା ଦରକାର ହୁଏ ତାହା ହେଉଛି ଭଲ ସ୍ୱାସ୍ଥ୍ୟ ରକ୍ଷା, ପରିଷ୍କାର ପରିଚ୍ଛନ୍ନତା ଓ କିଛି ପ୍ରତିଷେଧକ ଔଷଧ। ଦରିଦ୍ରତା ଯୋଗୁଁ ପୁଷ୍ଟିହୀନତା ଓ ଅସ୍ୱାସ୍ଥ୍ୟକର ପରିବେଶ ଅଧିକ ରୋଗାକ୍ରାନ୍ତ ବ୍ୟକ୍ତି ସୃଷ୍ଟି କରିଥାଏ ଯାହାକୁ ପ୍ରତିରୋଧ କରିବା କଷ୍ଟକର ହୁଏ। ଏକ ଖୋଲାସ୍ଥାନକୁ ମଳ ତ୍ୟାଗର କ୍ଷେତ୍ର ରୂପେ ବ୍ୟବହାର କରିବାରୁ ଚାପ ପକାଇବା ହେଉଛି ଏ ସବୁକୁ ପ୍ରତିରୋଧ କରିବାର ମୂଳମନ୍ତ୍ର। ଗ୍ରାମ ଭିତରେ ବା ବାହାରେ ଯେ କୌଣସି ସ୍ଥାନରେ ଯେପରି ଖୋଲାସ୍ଥାନ ଥାଏ, ତାହାକୁ ଯଦି ଏହି ଉଦ୍ଦେଶ୍ୟରେ ବ୍ୟବହାର କରାଯାଏ, ତେବେ ଫଳତଃ ଗ୍ରାମାଞ୍ଚଳ ଯାହାକି ସୁନ୍ଦର ଶୋଭାବର୍ଦ୍ଧନକାରୀ ଓ ସୁଗନ୍ଧଯୁକ୍ତ, ତାର ବିପରୀତ କାର୍ଯ୍ୟ ସୃଷ୍ଟି କରିଥାଏ।

ମଣିଷ ସମାଜ ଓ ପରିବେଶ ମଧ୍ୟରେ ଉତ୍ତମ ସମ୍ପର୍କ ସ୍ଥାପିତ ହୋଇଥିବା ଅଞ୍ଚଳ ହିଁ ଏକ ଭଲ ଗ୍ରାମର ଉଦାହରଣ। ଗତ ଶତାବ୍ଦୀରେ ଅନେ୍କ ବହୁତେ ଏହା କାର୍ଯ୍ୟକାରୀ ହୋଇଥିଲା। ପୀଢ଼ି ପରେ ପୀଢ଼ି ଗ୍ରାମ ହିଁ ଶାନ୍ତ ପରିବେଶରେ ଏକ ମୁଖ୍ୟସ୍ଥଳୀ, ଯାହାକି ଏହାର ଜମିରୁ ଉତ୍ପାଦିତ ପଦାର୍ଥ ଦ୍ୱାରା ଲୋକ ସଂଖ୍ୟାକୁ ଖାଦ୍ୟ ଯୋଗାଇଥାଏ ଏବଂ କେତେବେଳେ ଏହାର ସୌଜନ୍ୟ ବା ସୂତ୍ରକୁ ନଷ୍ଟ କରିବା ଅବସ୍ଥା ସୃଷ୍ଟି କରେ ନାହିଁ। କିନ୍ତୁ ଗତ 40ବର୍ଷ ଭିତରେ ଘଟଣାବଳୀରେ ବହୁ ପରିବର୍ତ୍ତନ ଘଟିଛି। ମୁଖ୍ୟ ସଡ଼କ କଡ଼ରେ ଥିବା ଗ୍ରାମଗୁଡ଼ିକ ବସ୍ ଯାତାୟତ ସୁବିଧା ନ ଥିବା ଗ୍ରାମଗୁଡ଼ିକ ଠାରୁ ଅଧିକ ପରିବର୍ତ୍ତିତ ହୋଇଯାଇଛି। ଏହାର ମୁଖ୍ୟ ଉଦ୍ଦେଶ୍ୟ ହେଉଛି ବସରେ ସିଧାସଳଖ ଯାତ୍ରା କରିବାର ସୁଯୋଗ ଲାଭ କରିବା। ବସ ଯାତାୟତ ଦ୍ୱାରା ଗ୍ରାମ ଜୀବନ ଭିତରେ ବିରକ୍ତିକର ପରିବେଶ ସୃଷ୍ଟି ହେବା ସହିତ ଉଜ୍ଜ୍ୱଳ ଆଲୋକର ଆବଶ୍ୟକତା, ଅଧିକ ଆମୋଦ ପ୍ରମୋଦ, ସିନେମା ଓ ଭଲ ଉପାର୍ଜନକ୍ଷମ ଚାକିରୀର ଆବଶ୍ୟକତା ସୃଷ୍ଟି ହୋଇଛି, ଏଥି ସହିତ ଏହାଦ୍ୱାରା କେତେକ ସୁବିଧା ମଧ୍ୟ ହୋଇଛି। ଗତାନୁଗତିକ ପୁରାତନ ଭାବଧାରାର ବିଲୋପ ସହ ପୃଥିବୀ ବିଷୟରେ ଅଧିକ ଜ୍ଞାନ ଲାଭ ସହିତ ଉତ୍ତମ ଶିକ୍ଷା

ବ୍ୟବସ୍ଥା ଓ ଖାଦ୍ୟ ଖାଇବା ପ୍ରବୃତ୍ତିର ପରିବର୍ତ୍ତନର ସମ୍ଭାବନା ଏବେ ସୃଷ୍ଟି ହୋଇପାରିଛି।

ସର୍ବୋପରି ବିଗତ 40 ବର୍ଷ ମଧ୍ୟରେ ଆରୋଗ୍ୟକାରୀ ବହୁ ଔଷଧର ଉଦ୍ଭାବନ ପରେ ଲୋକସଂଖ୍ୟା କ୍ରମେ ବୃଦ୍ଧି ପାଉଛି। ଏବେ ଲୋକେ ଆତଙ୍କ ସୃଷ୍ଟି କରିଥିବା ଯକ୍ଷ୍ମା, ମ୍ୟାଲେରିଆ, ବସନ୍ତ ଏପରିକି ଶିଶୁ ଜନ୍ମ ବେଳେ ଆଉ ମୃତ୍ୟୁ ମୁଖରେ ପଡ଼ୁ ନାହାଁନ୍ତି। ଅଧିକନ୍ତୁ କେତେକ ପିଲା ଜନ୍ମର ପ୍ରଥମ ବର୍ଷ ଭିତରେ ମୃତ୍ୟୁବରଣ କରୁଛନ୍ତି। ଫଳତଃ ନାଟକୀୟ ଭାବେ ଗ୍ରାମାଞ୍ଚଳର ଲୋକ ସଂଖ୍ୟା ବହୁତ ବଢ଼ିଯାଇଛି, ଏବଂ ଉତ୍ପାଦିତ ପଦାର୍ଥ ଏମାନଙ୍କୁ ଖାଦ୍ୟ ଯୋଗାଇବାରେ ସଫଳ ହେଉ ନାହିଁ।

ଏକ ସ୍ପଷ୍ଟ ଉଦାହରଣ ହେଉଛି ଏବେ ନୂତନ ଭାବେ ଦେଖାଦେଇଥିବା କାଠର ଅଭାବ। ଅର୍ଦ୍ଧ ଶତାବ୍ଦୀ ପୂର୍ବରୁ ଜାଳେଣିକାଠ ଏତେ ପରିମାଣରେ ମହଜୁଦ ଥିଲା ଯେ ଏହାକୁ ପଇସା ଦେଇ କିଣିବା ଏକ ଆଶ୍ଚର୍ଯ୍ୟଜନକ ଘଟଣା ଥିଲା। ସେତେବେଳେ ଘର ନିକଟରୁ ପ୍ରଚୁର ଶୁଖିଲାକାଠ ସଂଗ୍ରହ କରାଯାଇ ପାରୁଥିଲା। ବିରାଟକାୟ ଛାୟା ପ୍ରଦାନକାରୀ ବୃକ୍ଷ ପ୍ରତ୍ୟେକ ଗ୍ରାମର ଶୋଭାବର୍ଦ୍ଧନ କରୁଥିଲା। ବୟସ୍କମାନେ ଗାଁରେ ଥିବା ବିରାଟକାୟ ଗଛ କିମ୍ବା ପିପ୍ପଳଗଛ ମୂଳରେ ପ୍ରଥାଗତ ଭାବେ ଏକାଠି ହେଉଥିଲେ। ପ୍ରାକୃତିକ ଭାବେ ସୃଷ୍ଟ ବୃକ୍ଷରାଜି ସ୍ଥାନୀୟ ଅବସ୍ଥା ଉପରେ ନିର୍ଭର କରୁଥିବା ବେଳେ ବର, ଅଶ୍ୱତ୍ଥ, ସିମିଳି, ନିମ ପ୍ରଭୃତି ଗଛ ଗୁଡ଼ିକ ମୂଲ୍ୟବାନ ଓ ଛାୟାଯୁକ୍ତ ବହୁଦିନ ବଞ୍ଚୁଥିବା ଗଛ, ଯେଉଁମାନେ ମରୁଭୂମି ବ୍ୟତୀତ ଭାରତର ଅଧିକାଂଶ ଅଞ୍ଚଳରେ ପ୍ରାୟ ଦେଖାଯାଆନ୍ତି। ବର୍ତ୍ତମାନ ଏକ ଭଲ ଛାୟାଭରା ଗ୍ରାମ ଦେଖିବା କଷ୍ଟକର ହେଲାଣି, ଯାହାକି ରୋଷେଇ ଓ ଅନ୍ୟକାର୍ଯ୍ୟ ପାଇଁ ପରୋକ୍ଷରେ ଆବଶ୍ୟକ ହେଉଥିବା କାଠ ଯୋଗାଇଥାଏ। ଅତି ଶୀଘ୍ର କାଠ ଏକ ଅତି ଦୁର୍ଲଭ ପଦାର୍ଥରେ ପରିଣତ ହୋଇ ଯାଇଛି। ପୂର୍ବେ ମଞ୍ଜିରୁ ଆପଣାଛାଏଁ ଗଛ ଉଠୁଥିଲା ଓ ଗଛ ଗୁଡ଼ିକ ଆପଣାଛାଏଁ ବଢୁଥିଲା। ବର୍ତ୍ତମାନ ମଞ୍ଜିରୁ ଆପଣାଛାଏଁ ଗଛ ସୃଷ୍ଟି ହେଉ ନାହିଁ କାରଣ ଗ୍ରାମାଞ୍ଚଳର ଚାରିଆଡ଼େ ବହୁ ମଣିଷ ଓ ଅନ୍ୟାନ୍ୟ ଜୀବଙ୍କ ପାଦ ଚିହ୍ନ ବାରମ୍ବାର ପଡ଼ିବା ଦ୍ୱାରା ମୃତ୍ତିକା ଏତେ କଠିନ ହୋଇଯାଇଛି ଯେ ଖୁବ ଶୀଘ୍ର ବଢ଼ିପାରୁଥିବା କେତେକ ଗଛ ମଧ୍ୟ ଠିକ୍ ଭାବେ ଉଧେଇ ପାରୁନାହିଁ ଏବଂ ପରେ ଗାଈ ଗୋରୁଙ୍କ ଦ୍ୱାରା ଡ଼ାଳକୁ ଭାଙ୍ଗି ଦିଆଯାଉଛି। ଯଦି ଏ ସବୁ ସତ୍ତ୍ୱେ ଗୋଟିଏ ଚାରାଗଛ

ଉଠିଲା, ତେବେ ବି ତାହାକୁ କିଛିଦିନ ପରେ ହୁଏ ତ ଜାଳେଣି ପାଇଁ ଖୁଣ୍ଟ ପାଇଁ ହାଣି ଦିଆଯାଉଛି।

ପ୍ରତ୍ୟେକ ଗ୍ରାମ ନିଜର ଆବଶ୍ୟକ ମୁତାବକ କାଠ କାହିଁକି ପ୍ରସ୍ତୁତ କରୁନାହିଁ? ତଥ୍ୟଗତ ଭାବେ ଗୋଟିଏ ଗାଁ ସାମୁହିକ ଭାବେ ନିଜର ଆବଶ୍ୟକ ସଂଖ୍ୟକ କାଠ ଅତି ସହଜରେ ପ୍ରସ୍ତୁତ କରିପାରିବ। ଏଥିପାଇଁ କେତେକ ଗଛ ଏକ ଜମିରେ ପୋତିବାକୁ ହେବ ଓ ଏହାକୁ ଏକୁଟିଆ ବଢ଼ିବାକୁ ଛାଡ଼ି ଦେବାକୁ ହେବ। ପାଞ୍ଚ ବର୍ଷ ପରେ ଏହା ଏକ ଗହଳିଆ ଛୋଟ ଜଙ୍ଗଲରେ ପରିଣତ ହୋଇଯିବ ଏବଂ ଏହାପରେ ଗଛ କାଟିବା ଓ ନୂଆଗଛ ପୋତିବା କାର୍ଯ୍ୟ ଦ୍ୱାରା ଏହି ବ୍ୟବସ୍ଥାକୁ ରକ୍ଷା କରାଯାଇ ପାରିବ। ମାତ୍ର, ପ୍ରକୃତ ଯୋଜନାରେ ଏହି କାର୍ଯ୍ୟ କଷ୍ଟସାଧ। ତୁମେ କିପରି ଭାବେ ନିଶ୍ଚିନ୍ତ ହେବ ଯେ ଏହି ସ୍ଥାନକୁ ଗାଈଗୋରୁ ଓ ଛେଳି ମେଣ୍ଢା ଯିବେ ନାହିଁ? କିପରି କୁହାଯିବ ଯେ ଗଛ ସମ୍ପୂର୍ଣ୍ଣ ବଢ଼ିବା ପୂର୍ବରୁ କେହି ଜଣେ ଏହି ଗଛକୁ ଚୋରି କରି ନେଇ ନ ଯିବ? ଗଛ ପୋତିବା ଓ ଏହାର ଦେଖାଚାହାଁ କରିବା ଯେତେ କଷ୍ଟକର ନୁହେଁ, ଶାନ୍ତି ଶୃଙ୍ଖଳା ରକ୍ଷା ଓ ସହଯୋଗ ସୃଷ୍ଟି କରିବା ସେତେ ଅତ୍ୟାବଶ୍ୟକ, ଯାହା ବ୍ୟତୀତ ଏହି ଯୋଜନା ସଫଳ ହୋଇପାରିବ ନାହିଁ।

ଭାରତୀୟ ଗ୍ରାମମାନଙ୍କରେ ପରମ୍ପରାଗତ ଭାବେ ଗ୍ରାମ କୂଅକୁ ଏକାଠି ବ୍ୟବହାର କରିବାର ପ୍ରଥା ଚଳିଆସିଛି। ଯେପର୍ଯ୍ୟନ୍ତ କୂଅରେ ପାଣି ଅଛି, ଏହାର ବ୍ୟବହାର କୌଣସି ଅଶାନ୍ତି ସୃଷ୍ଟି କରେ ନାହିଁ, ମାତ୍ର ଏହାପରେ ଅସୁବିଧା ସୃଷ୍ଟି ହୋଇଥାଏ। ଆମେ ଏହି ପ୍ରକାର ଏକ ବ୍ୟବସ୍ଥା ଗ୍ରାମ୍ୟ ଜଙ୍ଗଲ ସୃଷ୍ଟି ପାଇଁ ଆବଶ୍ୟକ କରିଥାଉ ଏବଂ ପରେ ଏହାର ଫଳକୁ ସମଭାବରେ ବାଣ୍ଟି ନେଇଥାଉ। ସର୍ବୋପରି ଆମର କୃଷି କ୍ଷେତ୍ରରେ ଆମକୁ କେତେକ କ୍ଷେତ୍ରରେ ହଇରାଣ କରୁଥିବା ଶ୍ରମିକମାନଙ୍କ ଭଳି ବୃକ୍ଷରୋପଣ ଓ ବୃକ୍ଷକୁ ଜଗାରଖା କରିବାରେ ମଧ୍ୟ ଏହିପରି କେତେକ ଅସୁବିଧା ଦେଖାଯାଇଥାଏ।

ଭାରତୀୟ କୃଷକ କଠୋର ପରିଶ୍ରମୀ ଓ ଅନିଶ୍ଚିତ ଉତ୍ପାଦନ ପାଇଁ ପ୍ରସ୍ତୁତ। ଏହା ସତ୍ୟ ଯେ ଯାନ୍ତ୍ରିକ ଅବସ୍ଥାର ଉନ୍ନତି ପୂର୍ବରୁ ପୃଥିବୀର ପ୍ରାୟ ଅଧିକାଂଶ କୃଷକ ହଳକରି ମଞ୍ଜି ବୁଣି ଅମଳ କରୁଥିଲେ ଯାହାକି ଏବେ ମଧ୍ୟ ଭାରତର ବହୁ ଅଞ୍ଚଳରେ କରାଯାଏ। ଅନ୍ୟ ଦେଶର ଚାଷୀଙ୍କଠାରୁ

ଅତ୍ୟଧିକ ଉତ୍ତାପ ଯୋଗୁଁ ଆମ ଚାଷୀଙ୍କୁ ଅଧିକ କଷ୍ଟ କରିବାକୁ ହୋଇଥାଏ। ସମଶୀତୋଷ୍ଣ ପାଣିପାଗରେ ବାହାରେ କାମ କରିବା ଠାରୁ ପ୍ରଚଣ୍ଡ ସୂର୍ଯ୍ୟ ତାପ ତଳେ କାମ କରିବା ଅଧିକ କଷ୍ଟକର।

ଆମ ଦେଶର ବହୁ ଗ୍ରାମାଞ୍ଚଳ ପଥକୁ ରାସ୍ତା ବୋଲି କୁହାଯାଇପାରେ, କାରଣ ବଳଦ ଏହା ଉପରେ ଶଗଡ଼କୁ ଟାଣି ନେଇପାରେ ଏବଂ ଏଥିପାଇଁ ଆମର ହଜାର ହଜାର ଗ୍ରାମ ବହୁ ବସ୍ତିରୁ ବିଚ୍ଛିନ୍ନ ହୋଇ ଯାଇଛି। ଗାଈଗୋରୁ ମାନେ ହିଁ ଆମର କୃଷି ଅର୍ଥନୀତିର ମୁଖ୍ୟ କର୍ଣ୍ଣଧାର, ଏଥିରେ ଦ୍ୱିରୁକ୍ତି ନାହିଁ। ମାତ୍ର ଏକ ଭଲ ଜିନିଷ ଅତିମାତ୍ରାରେ କରାଯିବାର ମଧ ବହୁ ବିଘ୍ନ ରହିଛି ଏବଂ ଭାରତରେ ଆମେ ଏବେ ବହୁ ସଂଖ୍ୟକ ଗାଈଗୋରୁ ରହିଥିବାର ଦେଖୁଛୁ, ବିଶେଷ ଭାବେ ଏମାନଙ୍କ ଭିତରୁ ଅନେକ ଦୁର୍ବଳ ଓ ଅସୁସ୍ଥ। କାଠ ଯେପରି ନିଜେ ନିଜେ ସୃଷ୍ଟି ହୋଇଥାଏ ବୋଲି ଆମେ ଭାବି ଆସିଛୁ, ଗାଈ ଗୋରୁଙ୍କ କ୍ଷେତ୍ରରେ ମଧ ଆମେ ଭାବି ନେଇଥାଉ ଯେ ସେମାନେ ନିଜ ବିଷୟରେ ନିଜେ ବୁଝିବେ। ଯେତେବେଳେ ସେମାନେ ବୁଢ଼ା ହୋଇ ଯାଆନ୍ତି ଓ କାମ କରିବାକୁ ଅକ୍ଷମ ହୋଇଯାଆନ୍ତି, ଆମେ ସେମାନଙ୍କର ଆବଶ୍ୟକତା ଉପରେ ଗୁରୁତ୍ୱ ଦେଉନାହୁଁ। ଆମେ ସେମାନଙ୍କୁ ବୁଲିବାକୁ ଛାଡ଼ିଦେଉ ଏବଂ ସେମାନେ ଯେଉଁଠାରୁ ଯାହା ପାଇଲେ ତାହା ଖାଇ ବଞ୍ଚନ୍ତି। ଏହି ପରିସ୍ଥିତିରେ ପ୍ରାଣୀଟି ସମଗ୍ର ଦେଶ ପାଇଁ ଏକ ବୋଝ ବନିଯାଏ। ଏହିପରି ବୃଦ୍ଧ ପ୍ରାଣୀଙ୍କ ପରି ଅସୁସ୍ଥ ପ୍ରାଣୀମାନେ ମଧ୍ୟ ମୃତ୍ୟୁକୁ ଅପେକ୍ଷା କରି ପଡ଼ିଥାନ୍ତି ଓ ବହୁ କ୍ଷତି କରିଥାନ୍ତି। ଯାହାର ଫଳ ନୂତନ ଗଛ ସୃଷ୍ଟିପାଇଁ ପ୍ରତିବନ୍ଧକ ସୃଷ୍ଟି କଲେ ମଧ ଅତିଶୀଘ୍ର ଜଣାପଡ଼େ ନାହିଁ।

ଆମେ ଆଲୋଚନା କରି ସାରିଛେ ଯେ ଯେତେବେଳେ ଗୋଟିଏ ଗ୍ରାମକୁ ଶିକ୍ଷାଦାନ କରିବାକୁ ସ୍କୁଲଟିଏ ଖୋଲାଯାଏ, ଏହା କେତେକ କ୍ଷେତ୍ରରେ ଆଶ୍ଚର୍ଯ୍ୟଜନକ ଭାବେ କିଛି ଦିନ ପରେ ଆସ୍ତେ ଆସ୍ତେ ନଷ୍ଟ ହୋଇଯାଏ। ସ୍କୁଲରେ ଭଲ କରୁଥିବା ଛାତ୍ରମାନେ ନିକଟବର୍ତ୍ତୀ ସହରରେ ଥିବା କଲେଜକୁ ଯାଆନ୍ତି ଏବଂ ପରେ ସହରରେ ଚାକିରୀ କରନ୍ତି। କମ ପାଠୁଆମାନେ ଗାଁର ଭଲ ମନ୍ଦ ବୁଝିବାକୁ ଗାଁରେ ରହିଯାଆନ୍ତି। ଏହାର ଅର୍ଥ ହେଉଛି ଗାଁ, ଯେଉଁମାନେ ଗାଁର ଉନ୍ନତି କରିପାରିବେ, ସେମାନଙ୍କ ସେବାରୁ ବଞ୍ଚିତ ହୋଇଥାଏ। ଯେଉଁମାନେ କୃଷିକ୍ଷେତ୍ରରେ ଉନ୍ନତିମୂଳକ ବ୍ୟବସ୍ଥା ଗ୍ରହଣ କରି ସାରିଛନ୍ତି, ସେମାନେ ସାମାଜିକ ବ୍ୟବସ୍ଥାର ନେତୃତ୍ୱ ନିଅନ୍ତି ବା ନୂତନ

କାର୍ଯ୍ୟକ୍ରମ ଆରମ୍ଭ କରିବାକୁ ସେମାନଙ୍କ ନିକଟରେ ସମ୍ବଳ ଓ ଶକ୍ତି ଥାଏ। ମାତ୍ର ଏମାନେ ସହରରେ ଅଫିସ କାମ କରିବା ଫଳରେ ଗ୍ରାମ୍ୟ ଜୀବନ ମାନ୍ଦା ଓ କଷ୍ଟକର ହୋଇ ସେହିପରି ରହିଥାଏ।

ଭାରତୀୟ ଗ୍ରାମର ସଂରକ୍ଷଣ ପାଇଁ ଏହା ଏକ ବଡ଼ ସମସ୍ୟା। ଜଣେ ବାହାର ବା ବିଦେଶୀ ବ୍ୟକ୍ତି ଏହି ସମସ୍ୟା ବିଷୟରେ ସଂଶ୍ଳିଷ୍ଟ ହେବା କଷ୍ଟକର। ଯେଉଁମାନେ ଗାଁରେ ରହି ଗାଁ ବିଷୟରେ ଜାଣିଥାନ୍ତି, ଯେଉଁମାନେ ଗ୍ରାମ୍ୟ ଜୀବନର ଅଂଶ ସ୍ୱରୂପ, ସେମାନେ ଗାଁ କଣ ଚାହେଁ, ତାହା ଜାଣିପାରନ୍ତି। ଏବଂ ସେମାନେ ମଧ୍ୟ ନୂତନ ଧାରଣାକୁ ଲୋକଙ୍କ ଭିତରେ ବିସ୍ତାରିତ କରିବାରେ କି ପ୍ରକାର ଅସୁବିଧା ସୃଷ୍ଟି ହେବ, ତାହା ଜାଣିପାରନ୍ତି। ଏହା ସତ୍ୟ ଯେ ପ୍ରତ୍ୟେକ ସମସ୍ୟା ସମାଧାନ ଗ୍ରାମରେ ବସବାସ କରି ରହୁଥିବା କେତେଜଣ ସମାଜସେବୀଙ୍କ ଦ୍ୱାରା ସମ୍ଭବ, ଯେଉଁମାନେ ଲୋକମାନଙ୍କର ଅବସ୍ଥାର ଉନ୍ନତି ପାଇଁ ସାହାଯ୍ୟ କରିପାରିବେ। ମାତ୍ର ଏପରି କର୍ମୀଙ୍କ ସଂଖ୍ୟା କମ୍ ଓ ଏମାନଙ୍କୁ ପାଇବା ମଧ୍ୟ କଷ୍ଟକର। ଗ୍ରାମକୁ ଉନ୍ନତି ପଥରେ ଆଗେଇ ନେବାର ଗୋଟିଏ ବାଟ ହେଉଛି ଗ୍ରାମର ବୁଦ୍ଧିମାନ ପିଲାଙ୍କୁ ଉତ୍ସାହିତ କରି ସେମାନଙ୍କୁ ଗ୍ରାମାଭିମୁଖୀ କରି ଗ୍ରାମର ବିଭିନ୍ନ ଘଟଣାରେ ସଂଶ୍ଳିଷ୍ଟ କରିବା।

ବହୁ କ୍ଷେତ୍ରରେ ଯୁବକମାନେ ଗାଁ ଛାଡ଼ି ସହରକୁ ଚାଲିଆସି ଚାକିରୀ ବାକିରୀ କରିବା ଦ୍ୱାରା ଗ୍ରାମର ବହୁ କ୍ଷତି ଘଟିଥାଏ। ପ୍ରତ୍ୟେକ କ୍ଷେତ୍ରର ସ୍ୱତନ୍ତ୍ର ଚରିତ୍ର ଓ ଗୁଣ ରହିଛି। ମାଟିର ଚରିତ୍ର, ଜଳସ୍ତର ଏବଂ ଆହୁରି ବହୁ ଘଟଣା। ଗୋଟିଏ ଅଞ୍ଚଳର ମୃତ୍ତିକା ବିଷୟରେ ଜାଣିବାକୁ ବହୁ ପୀଢ଼ି ଚାଲିଯାଏ। ନୂତନ ପୀଢ଼ିର ଲୋକେ ସେମାନଙ୍କ ପୂର୍ବ ପୁରୁଷଙ୍କ ଦ୍ୱାରା ଜ୍ଞାତ ଜ୍ଞାନ ଓ ଅଭିଜ୍ଞତାକୁ ସମ୍ବଳ କରି ଆଗେଇ ଚାଲନ୍ତି। ଏହି ଅଭିଜ୍ଞତାର ଅବସାନ ଘଟେ ଯେତେବେଳେ ଯୁବକମାନେ ସ୍ଥାନ ଛାଡ଼ି ଚାଲିଯାଆନ୍ତି ଓ ନୂଆଲୋକ ଜମି ବିଷୟରେ ଜାଣିବାକୁ ବହୁ ପରୀକ୍ଷା କରି ଋତୁ ପରେ ଋତୁ ନଷ୍ଟ କରିଥାନ୍ତି।

ଭାରତରେ ଗ୍ରାମାଞ୍ଚଳର ଉନ୍ନତି ପାଇଁ ବହୁମୁଖୀ ଆଧୁନିକୀକରଣର ଆବଶ୍ୟକତା ନାହିଁ। ବହୁ କାର୍ଯ୍ୟ କରୁଥିବା ଶଗଡ଼ର ବ୍ୟବହାର ବ୍ୟତୀତ ଟ୍ରାକ୍ଟର ଓ ଜିପ ବ୍ୟବହାର କରାଯିବା ଅନାବଶ୍ୟକ। ମାତ୍ର ଏହା ମଧ୍ୟବର୍ତ୍ତୀ ବୈଷୟିକ ଜ୍ଞାନ ଆବଶ୍ୟକ କରେ। ଆମେ ଆଲୋକ, ଉନ୍ନତ ପ୍ରକାରର

ଶଗଡ଼ ଗାଡ଼ି, ଉନ୍ନତ ଚାଷ କରିବା ଯନ୍ତ୍ର, ବଡ଼ ବଡ଼ ଜଳସେଚନ ଯୋଜନା ବ୍ୟତୀତ ଅଧିକ କୂଅ ଓ ପୋଖରୀ ଆବଶ୍ୟକ କରିଥାଉ। ଆମେ ଶକ୍ତି ପାଇଁ ପବନର ବ୍ୟବହାର ଓ ଉତ୍ତାପ ପାଇଁ ସୂର୍ଯ୍ୟର ଆବଶ୍ୟକତା ଶିଖିବା ଉଚିତ। ଆମେ ଆମର ମୃତ୍ତିକାକୁ ଭଲ ଭାବରେ ବ୍ୟବହାର କରିବା ଶିକ୍ଷା କରିବା ଉଚିତ। ଅନ୍ୟ ଭାଷାରେ ଆମ ଦେଶରେ ବହୁଳ ଭାବେ ଯାହା ସବୁ ରହିଛି ତାର ବ୍ୟବହାର ଆମେ ଶିକ୍ଷା କରିବା ଉଚିତ। ଅଳ୍ପ କେତେକ ସୁବିଧା ଥାଇଁ ଅନ୍ୟ ବହୁ ଦେଶ ଉନ୍ନତିର ଚରମ ସୀମାରେ ପହଁଞ୍ଚି ପାରିଛନ୍ତି।

# ସହର

## I

### ସଂସ୍କୃତିର ସମନ୍ୱୟ ସ୍ଥଳ

ଯଦି ଗ୍ରାମକୁ ମଣିଷ ଓ ପରିବେଶ ମଧ୍ୟରେ ପରସ୍ପର ନିର୍ଭରଶୀଳ ଏକ ପୀଠ ବୋଲି ବିବେଚନା କରିବା, ତେବେ ସହର ହେଉଛି ମଣିଷ ଓ ମଣିଷ ମଧ୍ୟରେ ପରସ୍ପର ନିର୍ଭରଶୀଳ ହୋଇ ରହିଥିବା ପୀଠସ୍ଥଳ। ସହର ଏପରି ସ୍ଥାନରେ ଗଢ଼ି ଉଠିଥାଏ, ଯେଉଁଠାରେ କେତେକ ସ୍ୱତନ୍ତ୍ର ଗୁଣ ଯୋଗୁଁ ଲୋକେ ଏକତ୍ରିତ ହୋଇଥାନ୍ତି। ଏହା ହୁଏତ ଜିନିଷପତ୍ର କିଣାବିକାର ଏକ କ୍ଷେତ୍ର ହୋଇପାରେ କିମ୍ବା ଏକ ବନ୍ଦର ବା ରେଳଷ୍ଟେସନ ହୋଇପାରେ, ଯେଉଁଠାରୁ ଜିନିଷ ପତ୍ର ଓହ୍ଲାଯାଇ ପରିବାହିତ ହୋଇଥାଏ। କିମ୍ବା କୌଣସି ବିଶ୍ୱବିଦ୍ୟାଳୟ, ଦେବାଳୟ କିମ୍ବା କେତେକ ପାର୍ବତ୍ୟ କେନ୍ଦ୍ରରେ ଏହା ଗଢ଼ି ଉଠିଥାଏ ଯେଉଁଠାରୁ ପର୍ବତାଞ୍ଚଳର ସୌନ୍ଦର୍ଯ୍ୟ ଦେଖିହେବ ଏବଂ ଛୁଟିଦିନ ମାନଙ୍କରେ ଏହି ସ୍ଥାନକୁ ପର୍ଯ୍ୟଟକ ମାନେ ଆସିଥାନ୍ତି।

ଏକ ବରଫ ପିଣ୍ଡୁଳା ପରି ଏକ କ୍ଷୁଦ୍ର ସ୍ଥାୟୀ ବସତି ଲୋକଙ୍କୁ ଆକୃଷ୍ଟ କରିଥାଏ ଓ ଏହି ସ୍ଥାନର ଅବସ୍ଥିତିକୁ ନେଇ ସହରଟି ଆକାର ଓ ଗୁଣରେ ବୃଦ୍ଧିପ୍ରାପ୍ତ ହୋଇଥାଏ। ସହର ଓ ନଗରରେ ହିଁ ବହୁ ପୁରାତନ ସଂସ୍କୃତି ଗଢ଼ି ଉଠିଥିଲା। ସଭ୍ୟତା ଓ ସଂସ୍କୃତିର ବିକାଶ ମଣିଷର ମିଳିତ ଚିନ୍ତାଧାରା, ଧୀଶକ୍ତି, କାର୍ଯ୍ୟ, କଳା ଓ ଅନୁଷ୍ଠାନ ଦ୍ୱାରା ସମାହିତ ହୋଇଥିଲା। ସଂକ୍ଷେପରେ ଅଧିକ ମଣିଷ ଏକାଠି ହେବାଦ୍ୱାରା ସେମାନଙ୍କ କାର୍ଯ୍ୟକଳାପ ଦ୍ୱାରା ଯେଉଁ ଜଟିଳ ଅବସ୍ଥା ସୃଷ୍ଟି ହୁଏ, ତାହାଦ୍ୱାରା ପରସ୍ପର ଆକ୍ରାନ୍ତ

ହୋଇଥାଏ। ଅନ୍ୟ ପ୍ରକାରେ ଏହା କୁହାଯାଇପାରେ ଯେ ସହର ହେଉଛି ଏକ ବଡ଼ ଗ୍ରାମ ପରି, ଯେଉଁଠାରେ ବହୁ ଲୋକ ଚଳପ୍ରଚଳ ହେଉଥାନ୍ତି ଓ ରହିଥାନ୍ତି। ମାତ୍ର ଏଠାରେ ଦୁଇଟି କଥା ମନେ ରଖିବାକୁ ହେବ। ପ୍ରଥମତଃ, ଗ୍ରାମ୍ୟ ଜୀବନ ନିର୍ଭରଶୀଳ ଏବଂ ସବୁବେଳେ ପ୍ରକୃତି ଉପରେ ନିର୍ଭର କରେ। ଖୋଲାପଡ଼ିଆ, ଶସ୍ୟ, ମୃତ୍ତିକା ଅବସ୍ଥା ଓ ପାଣିପାଗ ଉପରେ ଏହା ନିର୍ଭର କରିଥାଏ। ସେହି ଏକା କଥା ମଧ୍ୟ ସହର କ୍ଷେତ୍ରରେ ସତ୍ୟ। ଅବଶ୍ୟ ଆମ୍ଭେମାନେ ଶେଷରେ ହିଁ ପ୍ରାକୃତିକ ସମ୍ପଦ ଉପରେ ଆମର ଆବଶ୍ୟକତା ଅନୁସାରେ ନିର୍ଭର କରିଥାଉ, କିନ୍ତୁ ସହରରେ ଏହା ଉପରେ ଅତ୍ୟଧିକ ନିର୍ଭରଶୀଳତା ଦେଖାଯାଏ ନାହିଁ। ଏଠାରେ ଜିନିଷପତ୍ର କଞ୍ଚାମାଲ ଆକାରରେ ନ ମିଳି ତତ୍‌କ୍ଷଣାତ ମିଳିପାରେ। ସହର ବାସିନ୍ଦାମାନଙ୍କ ପାଇଁ ପ୍ରାକୃତିକ ପଦାର୍ଥ ପାଇବା ସବୁବେଳେ ଆଶା କରାଯାଏ ନାହିଁ, ଏହା ବହୁ ପଛରେ ଥାଏ।

ଦ୍ୱିତୀୟ କଥା ହେଉଛି ସହରର ଆକାର ଓ କାର୍ଯ୍ୟକଳାପ ଏହାକୁ ଗ୍ରାମ୍ୟ ଜୀବନଠାରୁ ଭିନ୍ନ କରିଥାଏ। ଏଠିକାର ଅନୁଷ୍ଠାନ ଗୁଡ଼ିକ ଆଇନ ଅନୁସାରେ ଦୃଢ଼ ଓ ସାଧାରଣ, ମାତ୍ର ପରିଚାଳନାଗତ ଭାବେ ଏହା ଅଧିକ ଜଟିଳ।

ସବୁଠାରୁ ଅଧିକ ଜଣାଶୁଣା କାମ ଗୃହ ନିର୍ମାଣଠାରୁ ଆରମ୍ଭ କଲେ ଆମେ ଦେଖିବା ଗ୍ରାମରେ ଯେ କୌଣସି ଲୋକ ତା ନିଜ ପାଇଁ ଛୋଟ ଘରଟିଏ ତିଆରି କରି ସେଥିରେ ବସବାସ କରିପାରେ, ମାତ୍ର ସହରରେ ଏହାଦ୍ୱାରା ହୁଏତ ବିଶୃଙ୍ଖଳା ସୃଷ୍ଟି ହେବ। ଘରଗୁଡ଼ିକ ଏଠାରେ ଏପରି ସ୍ଥାନରେ ନିର୍ମିତ ହେବା ଦରକାର, ଯେଉଁଠାରୁ ଭଲ ରାସ୍ତା ସଂଯୋଗ ରହିଥିବ, ଯେଉଁଠି ଭଲ ସ୍ୱାସ୍ଥ୍ୟରକ୍ଷା ଅବସ୍ଥା ଓ ପାଣି ରହିଥିବ ଏବଂ ବିଦ୍ୟୁତ ଯୋଗାଣ ବ୍ୟବସ୍ଥା ଥିବ (ଏହା ଭାରତର ସବୁ କ୍ଷେତ୍ର ପାଇଁ ପ୍ରଜୁଯ୍ୟ ନୁହେଁ, ଯାହା କି ଆମେ ଆସନ୍ତା ଅଧ୍ୟାୟରେ ଦେଖିବା) ଏହା ବ୍ୟତୀତ ଅଧିକାଂଶ ସହରରେ ନିୟମ ଅନୁସାରେ ରାସ୍ତା ଓ ଘର ମଧ୍ୟରେ କିଛି ଖୋଲା ସ୍ଥାନ ଛାଡ଼ିବାର ବ୍ୟବସ୍ଥା ରହିଛି ଏବଂ ଅନ୍ୟ କେତେକ ନିୟମକାନୁନ ରହିଛି। ଜଳ ଓ ସ୍ୱାସ୍ଥ୍ୟରକ୍ଷା ପରି ଲୋକସେବା ମୂଳକ କାର୍ଯ୍ୟ ମଧ୍ୟ ବ୍ୟୟାଧିକ ଏବଂ ସହର ଅଧିବାସୀଙ୍କ ଘରକୁ ସବୁ ପ୍ରକାର ସୁବିଧା ସୁଯୋଗ ଯୋଗାଇଦେବା ଭଳି ସ୍ଥାନରେ ନିର୍ମାଣ କରାଯାଇଛି ବୋଲି ବୁଝାଇବାକୁ ହେବ। ଏହା ବ୍ୟତୀତ

ପ୍ରତ୍ୟେକ ରାସ୍ତା କେତେକ ସ୍ୱତନ୍ତ୍ର ନିୟମ ଅନୁସାରେ ନିର୍ମିତ ହୋଇଥାଏ। ତୁମେ ଯଦି ପରିଷ୍କାର ଓ ସୁନିୟନ୍ତ୍ରିତ ଭାବେ ଚେଷ୍ଟା କରିବ, ତେବେ ହୁଏତ ଗୋଟିଏ ସୁଟକେଶ୍‌ରେ ଅତ୍ୟଧିକ ପଦାର୍ଥ ରଖିପାରିବ। ଏହି ଅର୍ଥରେ ବହୁ ସଂଖ୍ୟକ ଲୋକ ଏକ ସହରରେ ଭଲରେ ବାସ କରିପାରିବେ, ଯଦି ସେମାନେ ଏକ ସୁନିର୍ବାଚିତ ଓ ନିୟନ୍ତ୍ରିତ ବାଟରେ କାର୍ଯ୍ୟ କରନ୍ତି।

ସହର ନିର୍ମାଣ ଯୋଜନା ପାଇଁ କେତେକ ଅତ୍ୟାବଶ୍ୟକ ସୁଖ ସ୍ୱାଚ୍ଛନ୍ଦ୍ୟ ଯଥା- ଭୂତଳରେ ରହିଥିବା ଜଳ ଓ ନିଷ୍କାସନ ପାଇପ ଇତ୍ୟାଦି ପ୍ରତି ଦୃଷ୍ଟି ଦିଆଯିବା ଆବଶ୍ୟକ। ଯଦି ତୁମେ ଏକ ସୁସ୍ଥ ନିଷ୍କାସନ ବ୍ୟବସ୍ଥା ଓ ଭଲ ଜଳଯୋଗାଣ ବ୍ୟବସ୍ଥା ନିର୍ମାଣ କରି ପାରିବ, ତେବେ ପ୍ରକୃତ କୋଠାଘର ନିର୍ମାଣ ଅଧିକ ସହଜ ହୋଇଯିବ। ବାସ୍ତବିକ ଦେଖାଯାଇଛି ଯେ ଗରିବ ଲୋକଙ୍କ ପାଇଁ ଗୃହ ନିର୍ମାଣର ସବୁଠାରୁ ଭଲ ବାଟ ହେଉଛି ସେମାନଙ୍କୁ ଜଳ, ଡ୍ରେନ ସୁବିଧା ଓ ଜଳ ନିଷ୍କାସନ ସୁବିଧା ଥିବା ଏକ ଅଞ୍ଚଳ ପ୍ରଦାନ କରିବା ଏବଂ ସେମାନଙ୍କୁ ନିଜେ ନିଜ ପାଇଁ ଛୋଟ କୁଡ଼ିଆ ଘର ନିର୍ମାଣ କରିବାକୁ ଛାଡ଼ିଦେବା, ସେ ଯାହା ହେଉ କୁଡ଼ିଆଟି ଛୋଟ ଓ ଅସୁବିଧାଜନକ ହେଲେ ମଧ୍ୟ ଏହା ବର୍ତ୍ତମାନର ତଥାକଥିତ ଗୃହ ଯାହାକି କାଦୁଅପୂର୍ଣ୍ଣ ମଇଳା ସମୁଦ୍ର ଦ୍ୱାରା ଚାରିଆଡୁ ପରିପୂର୍ଣ୍ଣ ଓ ଶୁଦ୍ଧଜଳ ଯୋଗାଣରୁ ବଞ୍ଚିତ, ଏ ପ୍ରକାର ଅବସ୍ଥାଠାରୁ ମୁକ୍ତ। ବିଦ୍ୟୁତତାର ଗୁଡ଼ିକ ରାସ୍ତାର ବହୁ ଉଚ୍ଚରେ ସିଧାସଳଖ ଭାବେ ରହିଥାଏ ଏବଂ ଅନେକ ସମୟରେ ଏହା କେତେକ ଗଛକୁ ସ୍ପର୍ଶ କରେ ଯା ଫଳରେ ବାରମ୍ବାର ବିଦ୍ୟୁତ ତାରକୁ ସ୍ପର୍ଶ କରୁଥିବାରୁ ଏହି ଗଛ ଡ଼ାଳକୁ କାଟିବାକୁ ହୋଇଥାଏ।

ଜଳଯୋଗାଣ, ନିଷ୍କାସନ, ବିଦ୍ୟୁତ ଯୋଗାଣ ଓ ଡ୍ରେନ ଇତ୍ୟାଦି ଯାହାକୁ କି ସହରର ଗୁରୁତ୍ୱପୂର୍ଣ୍ଣ ମୂଳଚିତ୍ର ବୋଲି କୁହାଯାଏ, ଏଗୁଡ଼ିକ ସହର ବାସିନ୍ଦାଙ୍କର ସ୍ୱାସ୍ଥ୍ୟରକ୍ଷା ଓ ସଦଭାବନା ରକ୍ଷା ପାଇଁ ଅତି ଗୁରୁତ୍ୱପୂର୍ଣ୍ଣ। କିନ୍ତୁ ଏଗୁଡ଼ିକ ଦେଖିବା ଭଳି ଜିନିଷ ନୁହେଁ। ସହରରେ ଯାହା ଆମେ ଦେଖୁ, ଏହା ହୁଏତ ଆମକୁ ଭଲ ବା ଖରାପ ଲାଗିପାରେ। ସାଧାରଣତଃ ଏଗୁଡ଼ିକ ହେଲା ଏହାର ବାସଗୃହ, ରାସ୍ତା, ଅଟ୍ଟାଳିକା, ବୃକ୍ଷ ଓ ଉଦ୍ୟାନ। ଏହି ସବୁ ଦ୍ୱାରା ପର୍ଯ୍ୟଟକ ଓ ସହରର ବାସିନ୍ଦାମାନେ ଏହାର ମାନ ନିର୍ଦ୍ଧାରଣ କରିଥାନ୍ତି।

ଏହା ଗୁରୁତ୍ୱପୂର୍ଣ୍ଣ ଯେ ସହରର ସବୁ ରାସ୍ତା ସୁନ୍ଦର ନ ହେଲେ

ମଧ୍ୟ ଅସ୍ୱାସ୍ଥ୍ୟକର ବା ଅସୁନ୍ଦର ହେବା ଉଚିତ ନୁହେଁ। ଦେଖିବାଦ୍ୱାରା ମନରେ ସୃଷ୍ଟି ହେଉଥିବା ଧାରଣାରୁ ମାନସିକ ସ୍ତରରେ ଦ୍ୱନ୍ଦ ସୃଷ୍ଟି ହୋଇଥାଏ ଏବଂ ସହର, ଯେଉଁଠାରେ ଲୋକେ ଅତ୍ୟଧିକ ଗହଳି ଚହଳି ମଧ୍ୟରେ ବାସ କରିବାକୁ ବାଧ୍ୟ, ସେଠାରେ ପ୍ରତ୍ୟେକ ଅଞ୍ଚଳର ବାହ୍ୟ ଦୃଶ୍ୟ ଅନ୍ତତଃ ନିୟନ୍ତ୍ରିତ ଓ ମନୋମୁଗ୍ଧକର ହେବା ଆବଶ୍ୟକ। ଅଧିକାଂଶ ଦେଶ ସେଇଥିପାଇଁ ନିୟମଗତ ଭାବେ ଉଦ୍ୟାନର ଆକାର ଓ ଅବସ୍ଥିତି ରାସ୍ତାରୁ ଉଚିତ ବ୍ୟବଧାନରେ ରଖିଥାନ୍ତି। ସେମାନେ ପ୍ରତ୍ୟେକ କୋଠାର ନକ୍ସାକୁ ଅନୁମୋଦନ ପୂର୍ବରୁ ଅତି ସତର୍କତାର ସହିତ ପରୀକ୍ଷା କରିଥାନ୍ତି ଏବଂ ସେମାନେ ନିଶ୍ଚିତ ହୋଇଥାନ୍ତି ଯେ ଏହା ତିଆରି ହୋଇ ସାରିବା ପରେ ରାସ୍ତା ଉପରୁ ଦେଖିଲେ ଅସୁନ୍ଦର ଦେଖାଯିବ ନାହିଁ।

ବାସ୍ତବିକ ପୃଥିବୀର ସବୁଠାରୁ ପ୍ରସିଦ୍ଧ ସହର ହେଉଛି ସେଗୁଡ଼ିକ ଯେଉଁଗୁଡ଼ିକର ନିର୍ମାଣ ଶୈଳୀ ଅତି ଉତ୍କୃଷ୍ଟ ଏବଂ ଏହା ପ୍ରମାଣ କରେ ଯେ ତିଆରି ହେଉଥିବା କୋଠାଘର ଗୁଡ଼ିକ ପୂର୍ବ ଘରର ମାନ ବଜାୟ ରଖିପାରିବ। ଆମ ଦେଶର ଦିଲ୍ଲୀ ହେଉଛି ଦୃଷ୍ଟିଆକର୍ଷଣକାରୀ ଏହିପରି ଏକ ସହର ଯାହାକି ଗର୍ବର ସହିତ ଉନ୍ନତ ନିର୍ମାଣଶୈଳୀ ଦ୍ୱାରା ନିର୍ମିତ ହୋଇ ବହୁ ଶତାବ୍ଦୀ ଯାଏଁ ତିଷ୍ଠି ରହିପାରିବ। ଏହାର ଠିକ ଓଲଟା ଅବସ୍ଥା ଦେଖାଯାଏ ଆଗ୍ରା ସହରରେ। ଦିଲ୍ଲୀରେ ପୃଥିବୀର ବହୁ ସୁନ୍ଦର ବଡ଼ ବଡ଼ କୋଠାଘର ରହିଛି, କିନ୍ତୁ ଅନ୍ୟ ସହରରେ ସୁନ୍ଦର କୋଠାଘର ଥିଲେ ମଧ୍ୟ କୌଣସି ନିୟମ କାନୁନ ନାହିଁ। କେତେକ ଅସୁନ୍ଦର ଅବର୍ଣ୍ଣନୀୟ ପ୍ରତିବନ୍ଧକ ଭିତରେ ଗଠିତ ହୋଇଛି।

ସହର ହେଉଛି ଏକ ଚଳଚଞ୍ଚଳ କ୍ଷେତ୍ର। ଏହା ବଡ଼ ବଡ଼ କୋଠାଘର, ରାସ୍ତା ଓ ପାର୍କ ପରିବେଷ୍ଟିତ ଏକ ସୌଭାଗ୍ୟପୂର୍ଣ୍ଣ ସ୍ଥାନ। କିନ୍ତୁ ଏହା ଏପରି ଲୋକଙ୍କ ଦ୍ୱାରା ପରିପୁଷ୍ଟ ଯେଉଁମାନେ କି ସେଠାରେ ସେମାନଙ୍କର ନିଜସ୍ୱ ମତ ସାବ୍ୟସ୍ତ କରିବାରେ ନିପୁଣ ଏବଂ ଏଥି ସହିତ ଇଚ୍ଛା ଓ କାର୍ଯ୍ୟ, ଯାହାକି ଅନ୍ୟକୁ ଆକ୍ରାନ୍ତ କରେ, ଦେଖାଇବାରେ ସିଦ୍ଧହସ୍ତ। ଏମାନେ କୌଣସି କାରଣରୁ ବା କୌଣସି ଅବସ୍ଥାରେ ହଠାତ ଏକତ୍ର ହୋଇଥାନ୍ତି। ଏହିପରି ଲୋକଙ୍କୁ ନେଇ ଗଢ଼ି ଉଠିଥିବା ଲୋକଚରିତ୍ରରୁ ହିଁ ସହରର ଚରିତ୍ର ବିଷୟରେ ଜଣାପଡ଼େ। ଦିଲ୍ଲୀପରି କେତେକ ସହର ଅମଲାତନ୍ତ୍ରୀ ଓ ଅଫିସରମାନଙ୍କ ଚରିତ୍ର ଦ୍ୱାରା ପୁଷ୍ଟ। ବମ୍ବେ ହେଉଛି ଏକ ଅତ୍ୟଧିକ ବ୍ୟସ୍ତ ବ୍ୟାବସାୟିକ

କ୍ଷେତ୍ର। କେତେକ ସହର ଶିଳ୍ପଭିତ୍ତିକ। କେତେକ ବିଶ୍ୱବିଦ୍ୟାଳୟ ଓ ଶିକ୍ଷାନୁଷ୍ଠାନ ଦ୍ୱାରା ପରିପୁଷ୍ଟ, କେତେକ ବଡ଼ ବଡ଼ ସହର ଅବସରପ୍ରାପ୍ତ କର୍ମଚାରୀଙ୍କ ବସବାସ ପାଇଁ ଉତ୍କୃଷ୍ଟ କ୍ଷେତ୍ର। କେତେକ ସହରରେ ଲୋକ ସଂଖ୍ୟା ଅତ୍ୟଧିକ ଓ ଅନୁମାନ ବହିର୍ଭୂତ, କେତେକ କ୍ଷେତ୍ରରେ ଏହା ସ୍ୱଧର୍ମନିଷ୍ଠ ଓ ଆଳସ୍ୟପୂର୍ଣ୍ଣ ହୋଇଥିବା ବେଳେ କେତେକ କ୍ଷେତ୍ରରେ ଏହା ତତ୍‌କ୍ଷଣାତ ପ୍ରତିକ୍ରିୟାଶୀଳ ଓ ଶକ୍ତିଶାଳୀ ଏବଂ କେତେକ କ୍ଷେତ୍ରରେ ଏହା ମାନ୍ଦା ଓ ଅପରିପୁଷ୍ଟ। ଏହା ହେଉଛି ବ୍ୟକ୍ତିଗତ ଓ ପ୍ରମୁଖ ଲୋକ ସମୂହଙ୍କ ମିଶ୍ରିତ ଚରିତ୍ର ଓ ବାସ କରୁଥିବା ଲୋକଙ୍କ କାର୍ଯ୍ୟାବଳୀର ମିଶ୍ରିତ ଚିତ୍ର। ଏହି ବ୍ୟକ୍ତିଗତ ଚରିତ୍ର ପ୍ରତ୍ୟେକ ସହରକୁ ଏହାର ନିଜସ୍ୱ ଚରିତ୍ର ପ୍ରଦାନ କରିଥାଏ, ଯାହାଫଳରେ ସହରରେ ଏକ ସ୍ୱତନ୍ତ୍ର ଗୁଣ ଓ ଅବସ୍ଥା ସ୍ଥିର ହୋଇଥାଏ।

ଛୋଟ ଛୋଟ ବସତିରୁ ଗଢ଼ି ଉଠିଥିବା ସହର ବ୍ୟତୀତ ଚଣ୍ଡିଗଡ଼ ଭଳି ଅନ୍ୟ କେତେକ ସହର ରହିଛି, ଯେଉଁଗୁଡ଼ିକ ଠିକଣା ଭାବେ ଯୋଜନାବଦ୍ଧ ନକ୍ସା ଦ୍ୱାରା ଗଠିତ ହୋଇଥାଏ। ଏଠାରେ ସରକାର ହୁଏତ ଏକ ନୂଆ ରାଜଧାନୀ କିମ୍ବା କେନ୍ଦ୍ରସ୍ଥଳ ରୂପେ ଗୋଟିଏ ସ୍ୱତନ୍ତ୍ର ଅଞ୍ଚଳକୁ ସ୍ଥିର କରିଥାନ୍ତି ଏବଂ ସହର ନିର୍ମାଣକାରୀମାନଙ୍କୁ ସହରର ନିର୍ମାଣକାର୍ଯ୍ୟ ଏକ ସ୍ୱତନ୍ତ୍ର ଉଦ୍ଦେଶ୍ୟ ପାଇଁ ପ୍ରସ୍ତୁତ କରିବାକୁ ଦାୟିତ୍ୱ ଦେଇଥାନ୍ତି।

ଏକ ଯୋଜନାବଦ୍ଧ ସହରର ବିଭିନ୍ନ ଅଞ୍ଚଳ ଯତ୍ନର ସହିତ ପ୍ରସ୍ତୁତ କରାଯାଇଥାଏ। ଅର୍ଥାତ ଏଠାରେ କେତେକ ନିର୍ଦ୍ଦିଷ୍ଟ ଅଞ୍ଚଳରେ କଳ କାରଖାନା, ସ୍ୱତନ୍ତ୍ର ସ୍ଥାନରେ ଦୋକାନବଜାର, କେତେକ ସ୍ଥାନରେ ବ୍ୟବସାୟବାଣିଜ୍ୟ କେନ୍ଦ୍ର ଏବଂ କେତେକ ସ୍ୱତନ୍ତ୍ର ଅଞ୍ଚଳରେ ବାସଗୃହ ରହିଥାଏ। କୌଣସି ଲୋକ ଗୋଟିଏ ଶିଳ୍ପାଞ୍ଚଳରେ ଖଣ୍ଡିଏ ଜାଗା କିଣି ସେଠାରେ ବାସଗୃହ ନିର୍ମାଣ କରିପାରେ ନାହିଁ। ବାସ୍ତବିକ ଏକ ଯୋଜନାବଦ୍ଧ ସହରରେ ଶିଳ୍ପାଞ୍ଚଳକୁ ନିରୂପିତ କରିବା ପୂର୍ବରୁ ପବନର ଗତିକୁ ମଧ୍ୟ ନିର୍ଦ୍ଧାରିତ କରାଯାଇଥାଏ ଯଦ୍ଦ୍ୱାରା ଏଠାରୁ ବାହାରୁଥିବା ଧୂଆଁ ଓ ଗନ୍ଧ ଲୋକବସତି ଅଞ୍ଚଳକୁ ଆସିପାରେ ନାହିଁ।

ଏକ ପୁରାତନ ସହର, ଯାହାକି କ୍ରମେ ବଢ଼ି ବଢ଼ି ଏବେକାର ଅବସ୍ଥାକୁ ଆସିପାରିଛି, ସେପରି ସହର ଓ ସାଧାରଣ ସହର ଯାହାକି ସମୟକ୍ରମେ ସୃଷ୍ଟି ହୋଇଯାଇଛି ଏହା ଭିତରେ ପ୍ରଭେଦ ହେଉଛି- ପୁରାତନ ସହରର ରାସ୍ତାଘାଟ ବୁଲାଣିଆ ଓ ବାଙ୍କପୂର୍ଣ୍ଣ ଏବଂ ଏଥିମଧ୍ୟରୁ କେତେକ ଚଉଡ଼ା

ଓ ଅଣ୍ଟ କେତେକ ଅଣ ଓସାରିଆ। କାରଣ, ଏହି ରାସ୍ତାଗୁଡ଼ିକ ପୁରାତନ ଦିନରୁ ଖୋଲା ସ୍ଥାନକୁ ଲାଗି ତିଆରି ହୋଇଥିଲା। ମାତ୍ର ଯେତେବେଳେ ଏହି ସହର ବାହ୍ୟ ଭିତିରେ ବଢ଼ି ବଢ଼ି ଚାଲିଛି ଏବଂ ଏହି ସବୁ ଖୋଲା ଅଞ୍ଚଳ ଗୁଡ଼ିକ ସହର ଜମି ହିସାବରେ ବିକ୍ରୀ ହୋଇଛି, ଏହାର ଚତୁର୍ସୀମା ରାସ୍ତାରେ ରୂପାୟିତ ହୋଇଛି। ମାତ୍ର, ଏକ ନୂଆ ସହରରେ ଯେଉଁଠି ପ୍ରଥମେ ସବୁ ଜମିକୁ ଅଧିକାର କରି ନିଆଯାଇ ସହର ପ୍ରସ୍ତୁତକାରୀମାନେ ଏଠାରେ ନକ୍ସା ପ୍ରସ୍ତୁତ କରି ସିଧା ରାସ୍ତା କିମ୍ବା ସମକୋଣ ବିଶିଷ୍ଟ ପ୍ରତ୍ୟେକ ରାସ୍ତା ନିର୍ମାଣ କରନ୍ତି, ରାସ୍ତାଗୁଡ଼ିକର ନକ୍ସା ଏଠାରେ ବର୍ଗାକାର ବିଶିଷ୍ଟ ହୋଇଥାଏ। ଏହା ଯେତେବେଳେ କାର୍ଯ୍ୟକ୍ଷମ ଓ ନୀତିଭିତ୍ତିକ ହୋଇଥାଏ, ଏହା ହୁଏତ କେତେକଙ୍କର ସ୍ୱାର୍ଥ ଓ ସୁନ୍ଦରତାରେ ବାଧା ଦେଇଥାଏ। ମାତ୍ର, ସବୁ ରାସ୍ତା ଏକ ପ୍ରକାର ଦେଖାଯାଏ। କେତେକ ମନେ ରଖିବା କଥା ରହିଛି ଯାହାକୁ ତୁମେ ଭୁଲିଗଲେ ଓ ରାସ୍ତାର ନିୟମକୁ ଭଲ ଭାବରେ ନ ବୁଝିଲେ ପୁରାତନ ଶୈଳୀରେ ନିର୍ମିତ ରାସ୍ତାରେ ଗନ୍ତବ୍ୟ ସ୍ଥଳରେ ପହଁଞ୍ଚିବା କଷ୍ଟକର ହୋଇଥାଏ। ଏଠାରେ ପ୍ରତ୍ୟେକ ରାସ୍ତାର ନିଜସ୍ୱ ଚିହ୍ନ ରହିଥାଏ।

ସେଗୁଡ଼ିକ ସିଧା ବା ବଙ୍କା, ପ୍ରସ୍ଥ ବିଶିଷ୍ଟ ବା ଅଣ ଓସାରିଆ, ପୁରୁଣା ବା ନୂଆ। ସେ ଯାହା ହେଲେ ବି ଏହା ପ୍ରତ୍ୟେକ ସହରର ମୁଖ୍ୟ ଅତ୍ୟାବଶ୍ୟକ ଶିରାପ୍ରଶିରା। ଆମେ ଯାହା ପୂର୍ବରୁ କହିଛେ, ସହର ହେଉଛି ଏପରି ଏକ ସ୍ଥାନ, ଯେଉଁଠାରେ ଲୋକେ ପରସ୍ପର ଉପରେ ନିର୍ଭର ନ କରି କାର୍ଯ୍ୟ କରନ୍ତି। ଲୋକେ ନିଶ୍ଚିତ ଭାବେ ସେମାନଙ୍କ କର୍ମ ସ୍ଥଳକୁ ଯାଆନ୍ତି ଏବଂ ଫେରନ୍ତି। ପିଲାଏ ସ୍କୁଲ କଲେଜକୁ ଯାଆନ୍ତି। ସହରର ବିଭିନ୍ନ ସ୍ଥାନକୁ ଯାଇ ଭିନ୍ନ ଭିନ୍ନ ଜିନିଷ ପତ୍ର କିଣାଯାଏ ଓ ବିଭିନ୍ନ ଲୋକଙ୍କୁ ଭେଟି ଓ ଆମୋଦ ପ୍ରମୋଦରେ ଭାଗ ନେଇ କାର୍ଯ୍ୟ କରିବାକୁ ହୁଏ। ଯଦି ସହରର ରାସ୍ତାଗୁଡ଼ିକ କାର୍ଯ୍ୟକ୍ଷମ, ସୁରକ୍ଷିତ ଓ ଯିବାଆସିବା ପାଇଁ ସହଜ ହୋଇଥାଏ, ତେବେ ସହରଟି ସେ ଦୃଷ୍ଟିରୁ କୃତକାର୍ଯ୍ୟ ହୋଇଥାଏ।

ରାସ୍ତା ସାଧାରଣତଃ ସହରର ମୁଖ୍ୟ ପରିବହନ ବ୍ୟବସ୍ଥାର ସୂତ୍ର। କେତେକ ଆଧୁନିକ ସହର ଏତେ ଛୋଟ ଯେ ଲୋକେ ଏହା ମଧ୍ୟରେ ଚାଲିକରି ଯିବା ଆସିବା କରିପାରନ୍ତି। ମାତ୍ର, ସାଧାରଣତଃ ଲୋକେ ଗୋଟିଏ ସ୍ଥାନରୁ ଅନ୍ୟ ସ୍ଥାନକୁ ଯିବା ପାଇଁ ବସ୍, ଟ୍ରେନ୍, ଟ୍ରାମ୍, ଟାଙ୍ଗା, ଟ୍ୟାକ୍ସି, ଅଟୋରିକ୍ସା ବ୍ୟବହାର କରିଥାନ୍ତି। ସିଟି କର୍ପୋରେସନର ମୁଖ୍ୟ ଦାୟିତ୍ୱ ହେଉଛି

ରାସ୍ତା ନିର୍ମାଣ କରି ଏହାର ସୁରକ୍ଷା କରିବା, ଯଦ୍ୱାରା ଏହା ଅତ୍ୟଧିକ ସୁରକ୍ଷିତ ଯାନବାହାନ ଚଳାଚଳ ପାଇଁ ଉପଯୁକ୍ତ ହୋଇପାରିବ। ଯେଉଁ ସହରର ଲୋକେ ଗୋଟିଏ ସ୍ଥାନରୁ ଅନ୍ୟ ସ୍ଥାନକୁ ସହଜରେ ଯିବା ଆସିବା କରି ନ ପାରନ୍ତି, ସେଠାରେ କର୍ତ୍ତୃପକ୍ଷ ଠିକ୍ ଭାବେ ସେମାନଙ୍କ କାର୍ଯ୍ୟ କରିନଥାନ୍ତି ବୋଲି କହିବାକୁ ହେବ।

ଯଦିଓ ରାସ୍ତା ନିର୍ମାଣ ଓ ରାସ୍ତା ସଂରକ୍ଷଣ କାର୍ଯ୍ୟ ସହର ଅଧିକାରୀଙ୍କ ଉପରେ ନ୍ୟସ୍ତ ଥାଏ, ତଥାପି ସହର ବାସିନ୍ଦାମାନେ ସହରରେ ରାସ୍ତା ଓ ଯାନବାହାନ ଚଳାଚଳ ଯେପରି ସୁନିୟନ୍ତ୍ରିତ ହୋଇପାରିବ, ତାହା ଦେଖିବା ବିଧେୟ। ଏହାକୁ ଆମେ ରାସ୍ତାର "ସଫଟଓ୍ୱୟାର" ବୋଲି କହିବା। ରାସ୍ତାର ନିୟମ କାନୁନ, ଗାଡ଼ି ଚଳାଇବାର ଯାନ, ସାଇକେଲ ଚାଳକ ଓ ରିକ୍ସାଚାଳକମାନଙ୍କ ବ୍ୟବହାର ଇତ୍ୟାଦି ଏଥିରେ ଅନ୍ତର୍ଭୁକ୍ତ। ସେ ଯାହା ହେଉନା କାହିଁକି, ଯଦି ରାସ୍ତାର ଅବସ୍ଥା ଭଲ ଥାଏ ଏବଂ ଏହାର ବ୍ୟବହାରକାରୀମାନେ ଏହାକୁ ସୁମାର୍ଗରେ ବ୍ୟବହାର ନ କରନ୍ତି, ତେବେ ଏହି ରାସ୍ତା ତାର କାର୍ଯ୍ୟଦକ୍ଷତା ହରାଇଥାଏ। ଲଣ୍ଡନ ସହରରେ ପ୍ରତିଦିନ ଖୁବ ଶୀଘ୍ର ଓ ସୁନିୟନ୍ତ୍ରିତ ଭାବେ ଯିବା ଆସିବା କରୁଥିବା ବହୁ ଲୋକଙ୍କୁ ଧନ୍ୟବାଦ ଦେବାକୁ ହେବ ଏବଂ ଏମାନଙ୍କର ଏ ସବୁ କାର୍ଯ୍ୟର ବହୁ ଭାଗ ସ୍ୱତନ୍ତ୍ର ଶୃଙ୍ଖଳାଜ୍ଞାନ ଓ ଲୋକଙ୍କ ସୁବ୍ୟବହାର ଯୋଗୁ ସମ୍ଭବ ହୋଇ ପାରନ୍ଥ ବୋଲି କହିବାକୁ ହେବ।

ଅନ୍ୟ ଏକ ଯୋଗାଯୋଗ ହେଉଛି ଟେଲିଫୋନ, ରେଡ଼ିଓ, ଟେଲିଭିଜନ, ଏପରିକି ସମ୍ବାଦପତ୍ର, ପତ୍ରପତ୍ରିକା ଯାହାକି ବିଶେଷ ଭାବେ ପ୍ରଚଳିତ ଏବଂ ଯାହାକି ଘଟି ଯାଉଥିବା ଘଟଣାବଳୀ ସହିତ ସହରବାସୀଙ୍କୁ ଜଣାଇ ରଖିଥାଏ, ଯାହା ସାଧାରଣତଃ ଗ୍ରାମାଞ୍ଚଳରେ ଦେଖାଯାଏ ନାହିଁ। ଅଧିକାଂଶ ଦେଶରେ ଟେଲିଫୋନ ବ୍ୟବସ୍ଥା ପଲ୍ଲୀ ଅଞ୍ଚଳକୁ ବ୍ୟାପିଗଲାଣି। ଭାରତରେ ସହରତଳି ଅଞ୍ଚଳରେ ଏହା ସୀମାବଦ୍ଧ ହୋଇ ରହିଛି ଏବଂ ଏହାକୁ ଏକ ଜରୁରୀକାଳୀନ ବସ୍ତୁ ରୂପେ ବ୍ୟବହାର କରାଯାଉଛି। ଏପରିକି ଗ୍ରାମାଞ୍ଚଳ ପାଇଁ ଉଦ୍ଦିଷ୍ଟ ରେଡ଼ିଓ ଓ ସମ୍ବାଦପତ୍ର ମଧ୍ୟ ଗ୍ରାମାଞ୍ଚଳ ଠାରୁ ସହରରେ ଅଧିକ ଦେଖାଯାଉଛି। ଏହାର କାରଣ ହୁଏତ ସହରରେ ବଡ଼ିଭୋରୁ ସମ୍ବାଦପତ୍ର ମିଳିଯାଏ, ମାତ୍ର ଗ୍ରାମବାସୀ ଯଦି ସମ୍ବାଦପତ୍ରର କ୍ରେତା ହୁଅନ୍ତି, ତେବେ ତାଙ୍କୁ ହୁଏତ ସମ୍ବାଦପତ୍ର ପାଇବାକୁ ୨୪ ଘଣ୍ଟା ଯାଏଁ ଅପେକ୍ଷା କରିବାକୁ ହୋଇଥାଏ। ସହରବାସୀ

ସମ୍ବାଦଶୁଣି ଏହା ଉପରେ ଆଲୋଚନା କରିପାରେ ଏବଂ ନିଜର ପ୍ରତିକ୍ରିୟା ନିକଟସ୍ଥ ଲୋକଙ୍କ ମଧ୍ୟରେ ଆଲୋଚନା କରି ରାସ୍ତାଘାଟ, ବଜାର, ଦୋକାନ, ଅଫିସ, ଟ୍ରେନ ଓ ବସ୍‌ଯାତ୍ରା ବେଳେ ପ୍ରକାଶ କରିପାରେ । କେତେକ ସମୟରେ ସମ୍ବାଦ ପତ୍ରରେ ଛପା ହେବା ପୂର୍ବରୁ ସମ୍ବାଦ ଲୋକଙ୍କ କାନକୁ ଆସିଯାଏ । ସେଇଥିପାଇଁ ସହରରେ ବାସ କରୁଥିବା ଲୋକେ ଭାବନ୍ତି ଯେ, ସେମାନେ ପ୍ରତ୍ୟେକ ବିଷୟରେ ଚିନ୍ତା କରିପାରନ୍ତି । ମାତ୍ର ସହରରୁ ଦୂରରେ ଥିଲେ ଏ ସବୁ ପ୍ରକାର ଚିନ୍ତା ଧାରାରୁ ସେମାନେ ଦୂରରେ ରହିଥାନ୍ତି ।

ଗୋଟିଏ ଦୃଷ୍ଟିରୁ ଗ୍ରାମଠାରୁ ସହର ଅଧିକ ଆକର୍ଷଣୀୟ । ସହର ଲୋକେ ଭାବି ନେଇଥାନ୍ତି ଯେ ସେମାନେ ପାଣି କଳରୁ ପାଣି ପାଇବାକୁ ହକ୍‌ଦାର, ଘରେ ବିଜୁଳିଶକ୍ତି ପାଇବାକୁ ବାଧ, ଯିବା ଆସିବା କରିବାକୁ ଉତ୍ତମ ରାସ୍ତା ଓ ଦରକାର ବେଳେ ପୁଲିସଠାରୁ ସୁରକ୍ଷା ପାଇବାକୁ ଅଧିକାରୀ । ମାତ୍ର, ଗ୍ରାମବାସୀମାନେ ଏହା ପାଇବା ପାଇଁ କେବେ ଆଶା କରନ୍ତି ନାହିଁ ବା ପାଆନ୍ତି ନାହିଁ ।

ଅଧିକାଂଶ ସହରବାସୀ ସହଜରେ ହେଉଥିବା ମନୋରଞ୍ଜନ କାର୍ଯ୍ୟକ୍ରମ ଉପରେ ଅତ୍ୟଧିକ ନିର୍ଭରଶୀଳ । ସେଠାରେ ବହୁ ସିନେମା, ଥିଏଟର୍, ବାଦ୍ୟ ଦଳ, ବକ୍ତୃତା, ଗୋଷ୍ଠୀସଭା, ବହୁ ଉତ୍ସବ ଅନୁଷ୍ଠିତ ହୋଇ ସମସ୍ତଙ୍କୁ ସନ୍ଧ୍ୟାବେଳେ ବ୍ୟସ୍ତ ରଖେ । ପଇସା ଖର୍ଚ୍ଚ କରି ପାରିବା ଭଳି ଲୋକଙ୍କ ପାଇଁ ବହୁ ହୋଟେଲ ଓ ରେଷ୍ଟୁରାଣ୍ଟ ରହିଛି ଏବଂ ଯଦି ତୁମେ ପଇସା ଖର୍ଚ୍ଚ କରିବାକୁ ଚାହଁ ନାହିଁ, ତେବେ ବି ତୁମେ ଅଳ୍ପ ଖର୍ଚ୍ଚରେ ଚଳିପାର । ପ୍ରତ୍ୟେକ କ୍ଷେତ୍ରରେ ଧନୀ, ମଧ୍ୟବିତ୍ତ ଓ ଗରିବ ଲୋକଙ୍କ ମଧ୍ୟରେ ଏପରି ବ୍ୟସ୍ତତା ଭାବ ପ୍ରକାଶ ପାଉଥାଏ, ଯାହାକି ଗ୍ରାମରେ ଆଦୌ ଦେଖାଯାଏ ନାହିଁ ।

ମାତ୍ର ପ୍ରଚଳିତ ମତର ଯାହା ବିରୋଧ କରେ, ତାହା ହେଉଛି, ଏ ସବୁ ଯୋଗାଯୋଗ ଭିତରେ ସହର ମଧ୍ୟରେ ଯେ କେହି ଅନିର୍ଦ୍ଦିଷ୍ଟ କାଳଯାଏଁ ବାସ କରି ରହିପାରେ, ଯାହାକି ଗ୍ରାମରେ ସମ୍ଭବ ନୁହେଁ । ସହର ବିରାଟ ହୋଇଥିବାରୁ କାହାର ବ୍ୟକ୍ତିଗତ କାର୍ଯ୍ୟ ଉପରେ ପ୍ରଭାବ ବିସ୍ତାର କରେ ନାହିଁ । ଏବଂ ଏହା ଜଣକୁ ସ୍ୱାଧୀନତା ଦେବା ସଙ୍ଗେ ସଙ୍ଗେ ଜଣେ ଯାହା କରେ, ତାହା କରିବାକୁ ସାହାଯ୍ୟ କରିଥାଏ । ଏଠାରେ ନିଜ ସମ୍ପର୍କୀୟଙ୍କ

ବ୍ୟତୀତ ନିଜର ସାଙ୍ଗ ମଧ୍ୟ ସୃଷ୍ଟି କରାଯାଇପାରେ। ବାସ୍ତବିକ ସହର ନିଜର ଇଚ୍ଛା ପ୍ରକଟ କରିବାର ସୁଯୋଗ ପ୍ରଦାନ କରିଥାଏ। ଏଠାରେ ଜଣେ ଗୋଷ୍ଠୀଗତ ଭାବେ ବା ଏକାକୀ ରହିପାରେ। ଜଣେ ବହୁ କାର୍ଯ୍ୟକ୍ରମରେ ସମ୍ପୃକ୍ତ ହୋଇପାରେ କିମ୍ବା ବିଶେଷ ଏକାନ୍ତ ଜୀବନ ବିତାଇପାରେ। ତୁମେ ତୁମର ନିଜର ଅତି ଭଲ କାମ, ସ୍ୱାର୍ଥ ନିହିତ କାର୍ଯ୍ୟ, ସୌଖିନ କାର୍ଯ୍ୟ କରିବା ସହିତ ନିଜର କାର୍ଯ୍ୟପନ୍ଥା ଓ ଜୀବନ ଧାରଣର ଦିଗ ନିର୍ଦ୍ଧାରଣ କରିପାର। ଯେଉଁଠାରେ ବହୁ ଲୋକ ଥାଆନ୍ତି, ବହୁ ଅନୁଷ୍ଠାନ ଓ କାର୍ଯ୍ୟକ୍ଷମ ହେଉଥାଏ, ସେଠାରେ ସବୁବେଳେ ପରିଶ୍ରମୀ ଓ ଯୋଗ୍ୟତାସମ୍ପନ୍ନ ବ୍ୟକ୍ତିଙ୍କର ଆବଶ୍ୟକତା ଉପଲବ୍ଧି କରାଯାଏ, ଯଦ୍ୱାରା ସେ ମଧ୍ୟ ତାର ଜୀବିକା ନିର୍ବାହ କରିପାରେ। ସହର ହିଁ ସର୍ବଦା ସୁନାପରି ମୂଲ୍ୟବାନ ପଦାର୍ଥ ପ୍ରସ୍ତୁତ କରିପାରେ ବୋଲି କହିଲେ ହୁଏତ ଅତ୍ୟୁକ୍ତି ହେବ ନାହିଁ।

ଶେଷ ବିଶ୍ଳେଷଣରେ ନାଗରିକମାନଙ୍କ ବ୍ୟବହାର ଦ୍ୱାରା ସହର ସୁଖ ସ୍ୱାଚ୍ଛନ୍ଦ୍ୟପୂର୍ଣ୍ଣ ବା ଦୁଃଖମୟ ହୋଇଥାଏ ବୋଲି କୁହାଯାଇଥାଏ। ଲୋକେ ରାସ୍ତାରେ ଗଲାବେଳେ କଣ ପରସ୍ପର ପ୍ରତି ସମବେଦନାଶୀଳ? ସେମାନେ କଣ ବସ ରହିବା ସ୍ଥାନ, ରେଳଷ୍ଟେସନ, ସିନେମା ଟିକେଟ କିଣିବା ବେଳେ ଧାଡ଼ିରେ ରହି ଏହା କରିଥାନ୍ତି? ମଟର ଚାଳକମାନେ କଣ କଠୋରଭାବେ ରାସ୍ତାର ନିୟମକାନୁନ ମାନନ୍ତି? ତୁମକୁ ଜଣେ ଦୋକାନୀ ଗୋଟିଏ ଜିନିଷର ମୂଲ୍ୟ କହିବା ବେଳେ ତୁମେ କଣ ତା ଉପରେ ଭରସା କରିପାରିବ? ତୁମେ କଣ ମଧ୍ୟ ରାତ୍ରିରେ ଏକାକୀ ଗୋଟିଏ ରାସ୍ତାରେ ନିରାପଦ ଭାବେ ଯାଇପାରିବ? ଏ ସବୁ ପ୍ରଶ୍ନର ଉତ୍ତରରୁ ସହରର ଆଇନ ଶୃଙ୍ଖଳା ପରିସ୍ଥିତି ବିଷୟରେ ଜାଣିହେବ।

ଜଣେ ଉତ୍ତମ ନାଗରିକ ହେବା ପାଇଁ ଲୋକେ କେତେକ ବ୍ୟକ୍ତିଗତ ସ୍ୱାର୍ଥ ଓ ବୈରୀଭାବ ଅନ୍ୟମାନଙ୍କ ପାଇଁ ତ୍ୟାଗ କରିବାକୁ ଶିକ୍ଷା ଲାଭ କରିବା ଉଚିତ। ଗୋଟିଏ ଘର ତିଆରି କରିବା ବେଳେ ସବୁଠାରୁ ଉତ୍ତମ ନିର୍ମାଣ ସମ୍ପଦ ହେଉଛି ସ୍ଥାନୀୟ ଅଞ୍ଚଳର ଭଲ ଅବସ୍ଥା ଓ ସ୍ଥାନୀୟ ରାସ୍ତାଘାଟର ଉନ୍ନତ ଅବସ୍ଥା, ଯାହାକି ଘରଠାରୁ ଅଧିକ ଗୁରୁତ୍ୱପୂର୍ଣ୍ଣ। ଏହି ବାଟରେ ଭଲ ନାଗରିକ ହେଉଛି ସେହି ବ୍ୟକ୍ତି ଯେ କି କେତେକ କ୍ଷେତ୍ରରେ ସର୍ବସାଧାରଣଙ୍କ ଭଲ ପାଇଁ ନିଜ ଇଚ୍ଛାକୁ ଚାପି ରଖିବାକୁ ପଛାଏ ନାହିଁ।

ବିଚାରଗତ ଭାବେ ଏକ ଚକ୍ରର ଆଶାକାରୀ ଦନ୍ତ ଯେ କି ସବୁବେଳେ ଅନ୍ୟର ଅଧିକାର ପ୍ରତି ସଚେତନ ଥାଏ, ହୋଇ ରହିବା ଭଲ, ଯଦ୍ଵାରା ଏକ ଉତ୍ତମ ସହରୀ ବସତି ଗଠିତ ହୋଇଥାଏ। ଗ୍ରାମର ଚାପଗ୍ରସ୍ତ ଅବସ୍ଥାରୁ ମୁକୁଳି ଆସି ତୁଳନାତ୍ମକ ଭାବେ ଅଧିକ ସ୍ଵାଧୀନତା ଓ ଏକାନ୍ତତା ସହରରେ ଲାଭ କରିବା ପରେ ଏହା ଭୁଲିଯିବା ସହଜ ଯେ ବାସ୍ତବରେ ସହର ଏହାର ବାସିନ୍ଦାଙ୍କ ଠାରୁ ଅଧିକ ବ୍ୟକ୍ତିଗତ ନିୟନ୍ତ୍ରଣ ଓ ଭିନ୍ନ ଭାବଧାରା ସବୁବେଳେ ଆଶା କରେ। ଏକ ସହର ସବୁବେଳେ ଚଳିବାପରି ଅବସ୍ଥାରେ ଗତି କରିପାରିବ ଯଦି ଏହାର ବାସିନ୍ଦାମାନେ ସେମାନଙ୍କର ନିଜର ବ୍ୟବହାର ପ୍ରତି ସର୍ବଦା ସତର୍କ ଦୃଷ୍ଟି ରଖିବା ପାଇଁ ପ୍ରସ୍ତୁତ ରହିବେ। ଏପରିକି ଶକ୍ତିଶାଳୀ ପୁଲିସ ବାହିନୀ ଗୋଟିଏ ଅଞ୍ଚଳର ଲୋକଙ୍କୁ ଶାନ୍ତ ଓ ନିୟମମାନି ସଜ୍ଜିତ କରିବାରେ ସକ୍ଷମ ହୋଇପାରିବ ନାହିଁ ଯଦି ସେଠାକାର ଲୋକେ ନିଜ ନିଜ ମଧ୍ୟରେ ଏହା କରିବାକୁ ପ୍ରସ୍ତୁତ ନ ହେବେ। ମୋଟ ଉପରେ ଲୋକ ଚରିତ୍ର ସାଧାରଣତଃ ଏବେ ଏହି ଅବସ୍ଥା ମଧ୍ୟ ଦେଇ ଗତି କରୁଛି।

# ସହର

## II

### *ସହରୀ ବିଭୀଷିକା*

1945 ମସିହାଯାଏଁ ଆମ ଦେଶର ଯେ କୌଣସି ଛୋଟ ବଡ଼ ସହରରେ ଅଳ୍ପ ରୋଜଗାରୀ ଲୋକ ମଧ୍ୟ ଆରାମଦାୟକ ଜୀବନଯାପନ କରିପାରୁଥିଲା । ମାତ୍ର, ଆଜି ଜଣେ ଅଧିକ ରୋଜଗାରକ୍ଷମ ବ୍ୟକ୍ତି ପକ୍ଷରେ ଅଧିକାଂଶ ସହରରେ ବସବାସ କରିବା ସମ୍ଭବ ହେଉ ନାହିଁ । ଏହାର କାରଣ କଣ ? କଣ ପାଇଁ ଏହା ଘଟିଲା ? ଏହା ସତ୍ୟ ଯେ ଅତ୍ୟଧିକ ଉନ୍ନତି ଓ ଉନ୍ନୟନ ଦ୍ୱାରା ଜୀବନଯାପନର ପ୍ରଣାଳୀ ନ କମି ବଢ଼ିଯାଇଛି । ଆମେ ଆଜି ଅତୀତର ସେହି ସମୟର ସ୍ମୃତି - ଯେତେବେଳେ ଆମେ ଏକ ବଡ଼ ସହରର କେନ୍ଦ୍ର ସ୍ଥଳରେ ବାସ କରି ମଧ୍ୟ ଆମ ଘର ଆଗରେ ଏକ ବଗିଚା ଥିଲା, ଆମେ ଆମର ଲୁଗାପଟା ଶୁଖାଇବାକୁ ସ୍ଥାନ ରଖିଥିଲୁ । ଆମେ ପାମ୍ପଡ଼ ଓ ମସଲା ସୁବିଧାରେ ତିଆରି କରି ଶୁଖାଇ ପାରୁଥିଲୁ । ଆମେ କୌଣସି ପ୍ରକାର ଅସୁବିଧାର ସମ୍ମୁଖୀନ ନ ହୋଇ ଆମର ପଡ଼ୋଶୀଙ୍କୁ ସାହାଯ୍ୟ କରିପାରୁଥିଲୁ । ଆମେ ଯେ କୌଣସି ବେଳେ ଯେ କୌଣସି ସ୍ଥାନକୁ ଯାଇ ପାରୁଥିଲୁ ଓ ଆମେ ରାତ୍ରି ସମୟରେ ମଧ୍ୟ ଯେ କୌଣସି ଅଞ୍ଚଳରେ ନିର୍ଭୟରେ ବୁଲିପାରୁଥିଲୁ ।

ଏ ସବୁ ପ୍ରଶ୍ନର ଅତି ସଂକ୍ଷିପ୍ତ ଓ ସହଜ ଉତ୍ତର ହେଉଛି ଅତ୍ୟଧିକ ଜନସଂଖ୍ୟା ବୃଦ୍ଧି । ଭାରତର ଜନ ସଂଖ୍ୟା 1930 ମସିହାରେ ଯାହା ଥିଲା, ଅର୍ଥାତ ସେତେବେଳେ ଗୋଟିଏ ଘରେ ପ୍ରାୟ 6 ଜଣ ଲୋକ ରହୁଥିଲେ, ଏବେ ତାହା 15 ଜଣରେ ପହଁଞ୍ଚିଛି । ସେତେବେଳେ ଗୋଟିଏ ଜନପଦରେ

100 ଜଣ ଲୋକ ବାସ କରୁଥିବା ବେଳେ ଏବେ ତାହା ଦୁଇଶହ ପଚାଶ ଲୋକରୁ ଅଧିକା ହୋଇଛି। ଭାରତର ଜନ ସଂଖ୍ୟା 1930 ମସିହା ତୁଳନାରେ ପ୍ରାୟ ଅଢ଼େଇଗୁଣ ବୃଦ୍ଧି ପାଇସାରିଛି। ବାସ୍ତବିକ, ଆମ ସହର ବିଷୟରେ ଚିନ୍ତା କଲେ, ଏଠାରେ ଜନ ସଂଖ୍ୟା ଯେ ଦୁଇଗୁଣ ବଢ଼ିଛି, ତାହା ନୁହେଁ, ଏହା ଏଠାରେ ବହୁଗୁଣରେ ବୃଦ୍ଧିପାଇଛି। ଏଠାରେ ସ୍ଥାନୀୟ ଲୋକ ସଂଖ୍ୟା ବଢ଼ିବା ସହିତ କ୍ରମାଗତ ଭାବେ ମଫସଲ ଅଞ୍ଚଳରୁ ଅଧିକ ଲୋକ ସହରକୁ ଚାଲି ଆସୁଛନ୍ତି। ଅନେକ କ୍ଷେତ୍ରରେ କୃଷି ଏକ କଷ୍ଟକର ଓ କ୍ଷତିକର ବ୍ୟବସାୟରେ ପରିଣତ ହେଲାଣି ଏବଂ ଏହା ଫଳରେ ଗ୍ରାମ୍ୟଜୀବନ ସହରର ଚାକଚକ୍ୟ ପୂର୍ଣ୍ଣ ଉଜ୍ଜ୍ୱଳ ଆଲୋକପୂର୍ଣ୍ଣ ଜୀବନଠାରୁ ନୀରସ ରହିଛି। ଯଦି ଜଣେ ଲୋକର ଅତ୍ୟଧିକ ଭୂସମ୍ପତ୍ତି ଥାଏ, ତେବେ ତା'ପାଇଁ ସହର ଅତ୍ୟଧିକ ଲାଭଜନକ କ୍ଷେତ୍ର ହେବ ବୋଲି ସେ ଭାବିଲାଣି। ସେ ହୁଏତ ଅଳ୍ପ ପାଠପଢ଼ି କ୍ଲର୍କ ଚାକିରୀ ପାଇଁ ଯୋଗ୍ୟତା ହାସଲ କରିପାରେ କିମ୍ବା ଅଶିକ୍ଷିତ ହୋଇ କୌଣସି ଦକ୍ଷତାବିହୀନ ହୋଇଥାଇପାରେ, ମାତ୍ର ସେମାନଙ୍କ ପାଇଁ ସହରୀ ଜୀବନ ହିଁ ଭଲ ବୋଲି ସେମାନେ ଏବେ ହୃଦୟଙ୍ଗମ କଲେଣି। ଟଙ୍କା ପଇସା ରୋଜଗାର ବ୍ୟବସ୍ଥା ଦେଖିଲେ ସେମାନଙ୍କର ଆଶା ଯେ ସତ୍ୟ ଏହା ଜାଣିହେବ।

ତେଣୁ ସହରଗୁଡ଼ିକ ଜନ ବିସ୍ଫୋରଣର କ୍ଷେତ୍ର ହୋଇ ଯାଉଛି। ସହର ଚାରିଆଡ଼କୁ କ୍ରମେ ମାଡ଼ିଯାଇ ବାହାରୁ ଆସୁଥିବା ନୂତନ ଲୋକଙ୍କୁ ବସତି ଯୋଗାଉଛି। ଗୃହନିର୍ମାଣ ବସତିଗୁଡ଼ିକ କ୍ରମାଗତ ଭାବେ ସୀମା ଅଞ୍ଚଳରେ ନିର୍ମାଣ କରାଯାଇ ଯେଉଁମାନେ ଗୋଟିଏ ଘ'ର କିଣିପାରିବେ, ସେମାନଙ୍କୁ ଯୋଗାଇ ଦିଆଯାଉଛି। ଗୃହ ପାଇବା ଜନିତ ଆଶା ମଧ ଅନୁପ୍ରବେଶକାରୀଙ୍କ ସଂଖ୍ୟା କ୍ରମେ ବଢ଼ାଇବାରେ ଲାଗିଛି। ନିକଟସ୍ଥ ପଲ୍ଲୀ ଅଞ୍ଚଳର ଶ୍ରମିକମାନେ ଏହି ସବୁ ନିର୍ମାଣ କାର୍ଯ୍ୟ କରିବାକୁ ଆସୁଛନ୍ତି। ସାମୟିକ ଭାବେ କାମ କରିବାକୁ ଆସୁଥିବା ଏହି ଶ୍ରମିକମାନେ ଆଉ ଗାଁକୁ ଫେରୁ ନାହାଁନ୍ତି। ଏମାନେ ଅବ୍ୟବହୃତ ଯେ କୌଣସି ସ୍ଥାନରେ ଛୋଟ ଟିଣ ପକା ଛପର କୁଡ଼ିଆ କରି ରହିଯାଉଛନ୍ତି, ଯେଉଁଠି କି ପାନୀୟ ଜଳ, ଜଳ ନିଷ୍କାସନ ଓ ପାଇଖାନା ଇତ୍ୟାଦିର କୌଣସି ସୁବିଧା ନାହିଁ। ଏହି ଅଞ୍ଚଳକୁ ବସ୍ତି ଅଞ୍ଚଳ ବୋଲି କୁହାଯାଉଛି ଏବଂ ଏହା ଆମ ସହରର ଏକ ସ୍ୱୀକୃତ ଜୀବନ ଚିତ୍ର।

ଆମେ ଗୃହ ନିର୍ମାଣକାରୀଙ୍କ ଠାରୁ ଗୃହ ନିର୍ମାଣ ଜନିତ ଅନୁରୂପ

କାର୍ଯ୍ୟାବଳୀ ସମ୍ପର୍କରେ ବୁଝିପାରିବା। ଧରାଯାଉ ଦୁଇଟି ଶୟନକକ୍ଷ ଥିବା ଗୋଟିଏ ଘରେ ବାସ କରୁଥିବା ଲୋକଙ୍କ ମଧ୍ୟରେ ସାଧାରଣତଃ ସ୍ତ୍ରୀ, ପୁରୁଷ ଓ ଦୁଇଟି ପିଲା ଥାଆନ୍ତି। ଦୁଇଟି ପିଲା ଗୋଟିଏ ଘର ବ୍ୟବହାର କରୁଥିବା ବେଳେ ପିତାମାତା ଅନ୍ୟ ଘରଟିକୁ ବ୍ୟବହାର କରିଥାନ୍ତି। ଏବଂ ଗୋଟିଏ ବଡ଼ ଘର ଥାଏ, ଯାହାକି ବୈଠକୀ ଘର ଓ ଖାଇବା ଘର ସମେତ ବନ୍ଧୁମାନଙ୍କ ପରିଚର୍ଯ୍ୟାର ସ୍ଥାନ ରୂପେ ବ୍ୟବହୃତ ହୋଇଥାଏ। ଏଠାରେ ପ୍ରତ୍ୟେକ ପଦାର୍ଥ ସୁନିୟନ୍ତିତ ହୋଇଥାଏ। ପ୍ରତ୍ୟେକ ପିଲାର ଗୋଟିଏ ଶୋଇବା ଖଟ ଓ ପାଠ ପଢ଼ିବାକୁ ଏକ ଡେ୍ସ୍କ ଥାଏ। ସେମାନେ ତାଙ୍କ ବହି ପତ୍ର, ଖେଳ ଉପକରଣ ଓ ଲୁଗାପଟା ସଫାସୁତରା ଭାବେ ଆଲଣା ଓ କାଠ ଆଲମିରାରେ ରଖିଥାନ୍ତି। ଧରାଯାଉ ଛଜଣ ବନ୍ଧୁ ଲୋକ ଏହି ଘରେ ଦୀର୍ଘ ଦିନ ପାଇଁ ବାସ କରିବାକୁ ଆସିଗଲେ। ବର୍ତ୍ତମାନ ଏହିଠାରେ ସ୍ୱଚ୍ଛତା ଓ ନିୟମ ଆଶା କରାଯାଇ ପାରିବ ନାହିଁ। ସ୍ନାନାଗାର ଅତ୍ୟଧିକ ବ୍ୟବହୃତ ହେବ। ତୁମକୁ ଗାଧୋଇବା ପାଇଁ ବହୁ ସମୟ ଅପେକ୍ଷା କରିବାକୁ ହେବ। ବନ୍ଧୁ ଲୋକେ ଯେ କୌଣସି ସ୍ଥାନରେ ଶୋଇପଡ଼ନ୍ତି, ଜିନିଷପତ୍ର ରଖିବାକୁ ଅଧିକ ସ୍ଥାନ ମିଳେ ନାହିଁ। ଜିନିଷ ପତ୍ର ଗୁଡ଼ିକ ଏଣେ ତେଣେ ପଡ଼ିଥାଏ, କୌଣସି ଜିନିଷ ପରିଷ୍କାର ପରିଚ୍ଛନ୍ନ ରୁହେ ନାହିଁ ଏବଂ ଘରଟି ଠିକ ଭାବେ ସଫାସୁତୁର ହୋଇପାରେ ନାହିଁ, ଜିନିଷପତ୍ର କ୍ରମେ ଭାଙ୍ଗିଯାଏ। ଏହା ଫଳରେ ଘର ଠିକ ଭାବେ ମରାମତି କରାଯାଇପାରେ ନାହିଁ କିମ୍ବା ଦେଖାଶୁଣା କରାଯାଇପାରେ ନାହିଁ। ପ୍ରତ୍ୟେକ ଲୋକ ଏ ପ୍ରକାର ମଇଳା ଓ ଅବ୍ୟବସ୍ଥା ପାଇଁ ଅନ୍ୟ ଉପରେ ଦୋଷ ଦେଇଥାନ୍ତି। ବନ୍ଧୁବାନ୍ଧବଙ୍କ ମଧ୍ୟରେ ଏଥିପାଇଁ ଅଶାନ୍ତି ଓ କଳିଗୋଳ ଲାଗିରହେ ଏବଂ ଘରେ ସବୁବେଳେ ଅସନ୍ତୋଷ ପ୍ରକାଶ ପାଏ। ଚାରିଜଣ ବାସିନ୍ଦାଙ୍କ ପାଇଁ ଏହି ଘର ଯେତେ ସୁଖ, ସମୃଦ୍ଧିର କ୍ଷେତ୍ର ହୋଇଥାଏ, ଏହା ଏବେ ଦଶଜଣ ଲୋକଙ୍କ ଦ୍ୱାରା ଏକ ଅସନ୍ତୋଷ ଓ ସର୍ବଦା ମାନସିକ ଅଶାନ୍ତିର କ୍ଷେତ୍ର ରୂପେ ବିବେଚିତ ହୁଏ।

ଏହା ହିଁ ଆମ ସହରରେ ଘଟୁଛି। ମାତ୍ର, ଏକ ସୀମିତ ଜନ ସଂଖ୍ୟା ଯେଉଁମାନେ କି ସୁନିୟନ୍ତିତ ଓ ସୁଆଚାର ସମ୍ପନ୍ନ, ଯେଉଁମାନେ କି ଅନ୍ୟ କେତେକଙ୍କର ଦେଖାଶୁଣା କରିପାରିବେ, ସେମାନେ ଏବେ ବାଧ ହୋଇ ଅଧିକ ଲୋକଙ୍କ ଦେଖାଶୁଣା କରୁଛନ୍ତି।

• ଆବଶ୍ୟକ ସୁରକ୍ଷା ପ୍ରଦାନକାରୀ ପୁଲିସ ବ୍ୟବସ୍ଥାକୁ ବିଚାରକୁ ନେଲେ

ଆମ ଦେଶ ପରି ପୃଥିବୀର ବହୁ ସହର ଅବସ୍ଥା ଏବେ ଏ କ୍ଷେତ୍ରରେ ନିଅଣ୍ଟିଆ ଅବସ୍ଥା ମଧ୍ୟରେ ଗତି କରୁଥିବାର ଦେଖାଯାଉଛି। ମାତ୍ର, ଶକ୍ତି ସମସ୍ୟା, ଜଳ ସମସ୍ୟା ଓ ସ୍ୱାସ୍ଥ୍ୟ ସେବା ସମସ୍ୟା ହେଉଛି ସହରର କେତେକ ପ୍ରମୁଖ ସମସ୍ୟା, ଯାହାକୁ ଆମେ ଏବେ ଅନୁଭବ କରୁଛୁ। ଜଣେ ଲୋକ ସହରରେ ରହି ଯାହାସବୁ ଅନୁଭବ କରେ, ତାହା ହେଉଛି ଏ ସବୁ ପଦାର୍ଥର କମ୍ ଯୋଗାଣ ବା ଅନେକ କ୍ଷେତ୍ରରେ ଅଭାବ।

ବର୍ତ୍ତମାନ ଗୃହ ନିର୍ମାଣ ବିଷୟରେ ପ୍ରଥମେ ଆଲୋଚନା କରାଯାଉ। ଗତ କିଛି ବର୍ଷ ତଳେ ବଗିଚା ଭିତରେ, ପ୍ରାଚୀରରେ ଘର ତିଆରି କରିବା ସହର ବଜାର ଭିତରେ ଆରମ୍ଭ ହୋଇ ଯାଇଥିଲା। ଏବେ ଏହି ସବୁ ପ୍ରକାର ନିର୍ମାଣ ବନ୍ଦ ରହି ସେ ସ୍ଥାନରେ ବହୁତଳ ବିଶିଷ୍ଟ ଫ୍ଲାଟ ସବୁ ନିର୍ମିତ ହେଉଛି। ପୂର୍ବେ ଯେଉଁଠାରେ ଗୋଟିଏ ପରିବାର ରହୁଥିଲେ, ଏବେ ସେଠାରେ କୋଡ଼ିଏରୁ ପଚାଶଟି ପରିବାର ବାସ କରୁଛନ୍ତି। ଅର୍ଥାତ୍, ସେମାନେ ଯାହା ପାଣି ଆବଶ୍ୟକ କରୁଥିଲେ, ତାହାର ଅଧିକ ପଚାଶ ଗୁଣ ପାଣି, ପଚାଶ ଗୁଣ ମଇଳା ରଖିବା ସ୍ଥାନ, ଜଳ ନିଷ୍କାସନ ଓ ପାଇଖାନା ବ୍ୟବସ୍ଥା ଇତ୍ୟାଦି ଆବଶ୍ୟକ କରିବେ। ଲୋକଙ୍କ ସଂଖ୍ୟା ସହିତ କାର୍, ସ୍କୁଟର, ସାଇକେଲ ସଂଖ୍ୟା ଏବଂ ସେମାନେ ଚଳପ୍ରଚଳ କରୁଥିବା ରାସ୍ତା ସଂଖ୍ୟା ମଧ୍ୟ ବଢ଼ାଇବାକୁ ହେବ। ଏହା ହିଁ ଗୋଟିଏ ଘରର ସମସ୍ୟା। ସେହି ରାସ୍ତାରେ ଥିବା ଅନ୍ୟାନ୍ୟ ଗୃହର ଅବସ୍ଥା ମଧ୍ୟ ଏହିପରି। ତେଣୁ ଆମକୁ ଏଇଥିରୁ ସେଠାକାର ଜନ ବହୁଳତା, ଶବ୍ଦ ବୃଦ୍ଧି ଓ ମଇଳାବୃଦ୍ଧି ଇତ୍ୟାଦି ଅବସ୍ଥା ବିଷୟରେ ଅନୁମାନ କରିବାକୁ ହେବ।

ଚଣ୍ଡିଗଡ଼ ପରି ଏକ ସୁନିୟନ୍ତ୍ରିତ ସହର ଗଢ଼ି ତୋଳିବା ପାଇଁ ଏବେ ବହୁ ଅର୍ଥ ଆବଶ୍ୟକ। ଏହାର ମୂଳଦୂଆ ପାଇଁ ସବୁ ପ୍ରକାର ଆବଶ୍ୟକତା, ଯାହାକି ଏକ ନଗରକୁ ନଗରଆଖ୍ୟା ଦେଇଥାଏ, ସେଥିପାଇଁ ସରକାର ସମସ୍ତ ଖର୍ଚ୍ଚ ବହନ କରିବା ଉଚିତ। ଯେଉଁଠାରେ ବହୁ ନିୟୁତ ଲୋକ ବାସ କରିବେ, କାମ କରିବେ, ଖେଳିବେ, ପାଠ ପଢ଼ିବେ, ବ୍ୟବସାୟ ବାଣିଜ୍ୟ କରିବେ, ସେପରି ଏକ ଅଞ୍ଚଳର ନକ୍ସା ପ୍ରସ୍ତୁତ କରିବା ମଧ୍ୟ ଏକ ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟ।

ଆମେ ଜାଣୁ ଯେ, ସରକାର ଏକ ନୂତନ ସହର ଗଠନ କରିବାକୁ ସବୁବେଳେ କୁଣ୍ଠା ପ୍ରକାଶ କରିଥାନ୍ତି। ବର୍ତ୍ତମାନ ସହରରେ ରହିଥିବା ଅତ୍ୟଧିକ

ଜନସଂଖ୍ୟାକୁ ବସତି ସ୍ଥାପନ କରିବାର ସୁବିଧା ଦେବା ସହିତ ଏହି ସବୁ ସହରକୁ ସବୁ ଆଡୁ ବୃଦ୍ଧି କରିବାରେ ଲାଗିଛନ୍ତି, ନିମ୍ନ ଆୟକାରୀ ବ୍ୟକ୍ତିଙ୍କୁ ଖାଲି ପଡ଼ିଥିବା ସ୍ଥାନରେ ବସତି ସ୍ଥାପନ କରିବାକୁ ସୁବିଧା ଦେବା ମଧ୍ୟ ଅଧିକ ଶସ୍ତା। ସେମାନେ ସେମାନଙ୍କ ଗାଁରେ ଯେପରି ରହିଥାନ୍ତି, ଏଠାରେ ପ୍ରାୟ ସେହିପରି ରହନ୍ତି। ଏଠାରେ ଜଳଯୋଗାଣ, ନିଷ୍କାସନ ଓ ପାଇଖାନା ଇତ୍ୟାଦିର ବ୍ୟବସ୍ଥା ନ ଥାଏ। ଦୁର୍ଭାଗ୍ୟଜନକ ଭାବେ ଆମର ଜଳବାୟୁ ଏହିପରି ଅଧାପନ୍ତରିଆ ବାହ୍ୟଜୀବନ ଯାପନ କରିବାରେ ସହାୟକ ହୋଇଥାଏ। ମାତ୍ର ଏକ ଥଣ୍ଡା ଜଳବାୟୁରେ ଚଳିବାପାଇଁ ଆମକୁ ପ୍ରତ୍ୟେକ ବ୍ୟକ୍ତିଙ୍କ ପାଇଁ ବାସଗୃହ ନିଶ୍ଚିତ ଭାବେ ଯୋଗାଇବାକୁ ହେବ।

ବୋଧହୁଏ ଆମ ସହରୀ ଜୀବନର ମୁଖ୍ୟ ସମସ୍ୟାର ମୂଳ କାରଣ ହେଉଛି, ଲୋକେ ଗାଁରେ ଥିବାବେଳେ ଯେପରି ବସବାସ କରି ବ୍ୟବହାର ଦେଖାନ୍ତି, ସହରରେ ପ୍ରାୟ ସେହିପରି ବ୍ୟବହାର ଦେଖାଇଥାନ୍ତି। ଆମର ପାଇଖାନା ଯିବା ବ୍ୟବସ୍ଥା, ରାସ୍ତାରେ ଓ ସର୍ବସାଧାରଣ ସ୍ଥାନରେ ଆମର କର୍ତ୍ତବ୍ୟ, ଏପରିକି ଆମର ବ୍ୟକ୍ତିଗତ ଜୀବନରେ ଗହଳି ଓ ଗୋଳମାଳିଆ ଅବସ୍ଥା ସହରର ଶାନ୍ତିଶୃଙ୍ଖଳା ରକ୍ଷା ଦିଗରେ ସାହାଯ୍ୟ କରିପାରେ ନାହିଁ।

ସହରରେ ସବୁବେଳେ ଅନ୍ୟର ସୁବିଧା ଅସୁବିଧା ଦେଖିବା ଓ ଅଧିକାର ବିଷୟରେ ସଚେତନ ହେବା ପ୍ରଧାନ କର୍ତ୍ତବ୍ୟ। ଏହାର ଅର୍ଥ, ମୂଳ ପ୍ରଥାରୁ ଦୂରେଇ ଯାଇ ସ୍ୱତନ୍ତ୍ର ବ୍ୟବହାର ପ୍ରଦର୍ଶନ କରିବା, ଯାହାକି ପୂର୍ବାବସ୍ଥାରୁ ସମ୍ପୂର୍ଣ୍ଣ ଅଲଗା। ଗୋଟିଏ ଖୋଲା ପଡ଼ିଆରେ ଥିବା ଜଣେ ଲୋକ ହୁଏତ ଖୁବ ବଡ଼ ପାଟିରେ ପାଟି କରିପାରେ, କିନ୍ତୁ ସହରର ଏକ ରାସ୍ତାରେ ଯାଉଥିବା ଜଣେ ମଣିଷ ଯଥା ସମ୍ଭବ ସତର୍କତାର ସହ ଧୀରେ କଥା କହିବା ଆବଶ୍ୟକ। ମଫସଲରେ ଏକାଠି ବହୁ ଲୋକ ମିଶି କୌଣସି ସ୍ଥାନରେ ସମୟ ବିତାଇ ପାରନ୍ତି ଏବଂ ଏହା କାହାକୁ ଆକ୍ରାନ୍ତ କରେ ନାହିଁ। ମାତ୍ର ସହରରେ ଦୁଇ ଜଣ ବନ୍ଧୁ ଏକାଠି ମିଶି ବାକ୍ୟ ବିନିମୟ ଓ ଶୁଭ ବାର୍ତ୍ତା ବିନିମୟ କରିବା ଦ୍ୱାରା ମଧ୍ୟ କେତେକଙ୍କର ବ୍ୟାଘାତ ସୃଷ୍ଟି ହୋଇଥାଏ। ଗ୍ରାମାଞ୍ଚଳର କୌଣସି ଅଞ୍ଚଳରେ ତୁମେ ଛେପ ପକାଇପାର ଏବଂ ଏହା ହୁଏତ ସେ ସ୍ଥାନର ଉର୍ବରତା ବୃଦ୍ଧି କରିପାରେ, ମାତ୍ର ସହରରେ ଏହା କରିବା ଦ୍ୱାରା ଲୋକେ ଅସନ୍ତୋଷ ଓ କ୍ଷୁବ୍ଧ ହେବେ। ଗ୍ରାମର ଭୋଜି, ଉତ୍ସବ ଓ କାର୍ଯ୍ୟକ୍ରମ ଆଡ଼ମ୍ବର ସହ କୋଳାହଳ ମଧ୍ୟରେ ସମ୍ପନ୍ନ କରାଯାଇପାରେ

ଏବଂ ପ୍ରତ୍ୟେକ ତାହାକୁ ଉପଭୋଗ କରିପାରନ୍ତି, ମାତ୍ର ସହରରେ ଶବ୍ଦ ଓ କୋଳାହଳକୁ ସେ ଅଞ୍ଚଳର ଲୋକେ ପସନ୍ଦ କରନ୍ତି ନାହିଁ। ଆମକୁ ମନେ ରଖିବାକୁ ହେବ ଯେ, ଯେତେବେଳେ କୌଣସି ଗ୍ରାମର ଲୋକ ସହରକୁ ଯାଆନ୍ତି, ସେମାନେ ଗାଁ ଗହଳର ସେମାନଙ୍କ ଅଭ୍ୟାସ ପରିବର୍ତ୍ତନ କରି ନ ଥାନ୍ତି। ତେଣୁ, ଆମ ସହରରେ ବାସ କରୁଥିବା ଲୋକେ କେବେ ହେଲେ ସହରୀ ଅଭ୍ୟାସରେ ପରିବର୍ତ୍ତିତ ହୋଇ ପାରନ୍ତି ନାହିଁ, ଯାହାକି ଏକ ନଗରରେ ସେମାନଙ୍କୁ ବାସ କରିବା ଭଳି ଉପଯୁକ୍ତ କରେ ନାହିଁ।

ଯଦି ଅଧିକାଂଶ ଲୋକ ସହରରେ ବାସ କରିବା ପାଇଁ ସେମାନଙ୍କର ଚାଲିଚଳଣ ପରିବର୍ତ୍ତିତ ନ କରନ୍ତି, ତେବେ ଏକ ବଡ଼ ଫ୍ଲାଟରେ ରହିଥିବା ଅଳ୍ପ ଲୋକେ ନିଜକୁ ଏହି ଅଭ୍ୟାସରେ ପରିବର୍ତ୍ତିତ କରିବା ଦ୍ୱାରା କୌଣସି ଲାଭ ହୁଏ ନାହିଁ। ଏକ ବିରାଟକାୟ ଫ୍ଲାଟକୁ ଏକତ୍ର ରହିଥିବା ଏକ ଗୃହପୁଞ୍ଜ ବୋଲି କୁହାଯାଇପାରେ। ଏଥି ମଧ୍ୟରେ ଗୋଟିଏ ପରିବାର ଦ୍ୱାରା ସୃଷ୍ଟି ହେଉଥିବା ଗଣ୍ଡଗୋଳ ସମଗ୍ର ଅଞ୍ଚଳକୁ ଆକ୍ରାନ୍ତ କରିଥାଏ। ଖୁବ୍ ଜୋରରେ ରେଡ଼ିଓ ବଜାଇବା, ପିଲା ବଡ଼ ପାଟିରେ ପାଟିତୁଣ୍ଡ କରିବା, ବଡ଼ ଲୋକେ କଳି କରିବା ଦ୍ୱାରା ସେଠାରେ ବାସ କରୁଥିବା ଅନ୍ୟ ଲୋକେ ବିଶେଷ ଅସୁବିଧାର ସମ୍ମୁଖୀନ ହୋଇଥାନ୍ତି। ଝରକା ଦେଇ ମଇଳା ବାହାରକୁ ଫିଙ୍ଗିବା କିମ୍ବା ମଇଳା ପାଣି ଢାଳିବା ଦ୍ୱାରା ଏହା ତଳେ ଥିବା ଘରେ କିମ୍ବା ବାରଣ୍ଡାରେ ଶୁଖୁଥିବା ସଫା ଲୁଗା ଉପରେ ପଡ଼ିଥାଏ। ଏହା ଦ୍ୱାରା ଯେ କେବଳ ପଡ଼ୋଶୀ ଆକ୍ରାନ୍ତ ହୋଇଥାନ୍ତି, ତାହା ନୁହେଁ, ଗଣ୍ଡଗୋଳ ସୃଷ୍ଟି ଓ ମତାନ୍ତର ହୋଇଥାଏ। ଗୋଟିଏ ଘରେ ମଝିରେ ଏକ କାନ୍ଥ ଦ୍ୱାରା ବାହାର ଲୋକଙ୍କର ଏହି ଗଣ୍ଡଗୋଳକୁ ଆୟତ୍ତ କରାଯାଇ ପାରିବ। ଆମର ବଡ଼ ବଡ଼ କୋଠାଘର ଏହି ସବୁ ବିପତ୍ତିରୁ ସୁରକ୍ଷିତ ରହିବା ପାଇଁ ଓ ଏ ପ୍ରକାର ଘରୋଇ ବ୍ୟବସ୍ଥାର ସୁରକ୍ଷା ପାଇଁ ନିର୍ମାଣ ନ ହୋଇ ଅନେକ କ୍ଷେତ୍ରରେ ଖୋଲା ରହିଥାଏ। ଯଦ୍ଦ୍ୱାରା ବହୁ ମୂଲ୍ୟବାନ ଗୃହ ଗୁଡ଼ିକୁ ଏକ କୁଡ଼ିଆ ସହିତ ତୁଳନା କରାଯାଇପାରେ, କାରଣ କୁଡ଼ିଆ ଘରର ବହୁ ଚରିତ୍ର ଏଠାରେ ଦେଖାଯାଏ। ଏହା ଅସୁରକ୍ଷିତ, ମଇଳାପୂର୍ଣ୍ଣ ଓ ନିଜର ସ୍ୱତନ୍ତ୍ରତା ରକ୍ଷା କରି ପାରି ନଥାଏ।

ଏହି କୋଠାରେ ମଧ୍ୟ ସର୍ବସାଧାରଣ ସ୍ଥାନ, ଯଥା ପ୍ରବେଶ ପଥ, ସିଡ଼ି, ଗନ୍ତବ୍ୟ ପଥ ଇତ୍ୟାଦି କାହାରି ମାଲିକାନାଭୁକ୍ତ ହୋଇନଥାଏ ଏବଂ

ସେହିପରି ଭାବେ ବ୍ୟବହୃତ ହୋଇଥାଏ। ଏହାର ସୁରକ୍ଷା ଓ ଦେଖାଶୁଣା କରିବା ଦାୟିତ୍ୱ କାହା ଉପରେ ନ୍ୟସ୍ତ ନ ଥାଏ, ଯଦିଓ ସମସ୍ତେ ଏହାକୁ ବ୍ୟବହାର କରିଥାନ୍ତି ଏବଂ ଏହାର ସୁରକ୍ଷାପାଇଁ ସେମାନଙ୍କ ଅବହେଳା ଯୋଗୁଁ ଏହା ଭାଙ୍ଗିରୁଜି ଯାଇ ଅତି ଖରାପ ଦେଖାଯାଏ।

ଯଦି ଗୃହ ନିର୍ମାଣ ଏତେ କମ୍ ସଂଖ୍ୟାରେ ହେବାସହିତ ଏଠାରେ ବହୁ ପ୍ରକାର ସମସ୍ୟା ଦେଖାଯାଏ ଓ ଏହା ମିଳିବାରେ ମଧ୍ୟ ଅସୁବିଧା ଦେଖାଯାଏ, ତେବେ ଅନ୍ୟ ଆବଶ୍ୟକ ଅନୁଷ୍ଠାନ ସ୍କୁଲ, କଲେଜ, ଡ଼ାକ୍ତରଖାନା ଭଳି ଅତ୍ୟାବଶ୍ୟକ ସଂସ୍ଥାରେ ସେବା ମିଳିବାରେ ଆମେ କି ପ୍ରକାର ଅସୁବିଧାର ସମ୍ମୁଖୀନ ହେବା ? ଏଗୁଡ଼ିକ ସବୁ ଏପରି ଅନୁଷ୍ଠାନ, ଯେଉଁଗୁଡ଼ିକ ହୁଏତ ସମ୍ପୂର୍ଣ୍ଣ ଭାବେ କିମ୍ବା ଆଂଶିକ ଭାବେ ରାଜ୍ୟ ସରକାରଙ୍କ କର୍ତ୍ତୃତ୍ୱାଧୀନ ଥାଏ, ମାତ୍ର ଏ ଗୁଡ଼ିକର ସଂଖ୍ୟା କମ୍। ଯଦି ଆବଶ୍ୟକ ଅନୁସାରେ ଆମେ ଆମ ନଗରର ଅତି ଦରକାରୀ ପଦାର୍ଥର ତାଲିକା କରିବା, ତେବେ ଆମେ ଦେଖିବା ଯେ ଏଠାରେ ସବୁଠାରୁ ପ୍ରମୁଖ ବିଷୟ ହେଉଛି (କ) ରମଣୀୟତା ପରି ଆମେ ଆବଶ୍ୟକ କରୁଥିବା ପୁରାତନ ପ୍ରଥା, ଜଳ, ଜଳ ନିଷ୍କାସନ ବ୍ୟବସ୍ଥା, ବିଦ୍ୟୁତ ଶକ୍ତି (ଖ) ରାସ୍ତା, ବେସରକାରୀ ପରିବହନ ଓ ଯୋଗାଯୋଗ, ପୋଷ୍ଟ ଓ ଟେଲିଫୋନ ବ୍ୟବସ୍ଥା (ଗ) ଗୃହ ନିର୍ମାଣ ଓ ଦୋକାନ ଘର (ଘ) ସ୍କୁଲ, କଲେଜ, ହାସପାତାଳ (ଙ) ଖୋଲାସ୍ଥାନ ଓ ବଗିଚା (ଚ) ସିନେମା ଓ ରେଷ୍ଟୁରାଣ୍ଡ ଇତ୍ୟାଦି। ଅବଶ୍ୟ ପ୍ରତ୍ୟେକ ପଦାର୍ଥ ମଧ୍ୟରେ ସାମାନ୍ୟ ପାର୍ଥକ୍ୟ ରହିଛି। ଛୋଟ ପିଲା ଥିବା ଜଣେ ଲୋକ ତାଙ୍କ ଚିନ୍ତାରେ ସ୍କୁଲକୁ ପ୍ରଥମ ପ୍ରାଧାନ୍ୟ ଦେଉଥିବା ବେଳେ ଜଣେ ରୋଗୀ ଲୋକ ଡ଼ାକ୍ତରଖାନାର ଆବଶ୍ୟକତାକୁ ଅଧିକ ଗୁରୁତ୍ୱ ଦେଇଥାଏ। କିନ୍ତୁ ସାଧାରଣ ଆବଶ୍ୟକତାକୁ ପ୍ରଥମେ ବିଚାରକୁ ନିଆଯିବ। ଅନ୍ୟ ପଦାର୍ଥ ପରେ। ଏବଂ ଏଥିପାଇଁ କମ୍ ଆବଶ୍ୟକ ଥିବା ସିନେମା ଓ ଜଳଖିଆ ଦୋକାନ ଇତ୍ୟାଦି ବିଚାରକୁ ନିଆଯାଇ ପାରେ, ଯାହାକି ସହରରେ ଏବେ ଖୁବ ଶୀଘ୍ର ବଢ଼ି ଚାଲିଛି ଏବଂ ସ୍କୁଲ ଓ ଯାତ୍ରୀବାହୀ ବସ୍‌ର ସଂଖ୍ୟା ସୀମିତ ଅବସ୍ଥାରେ ରହିଛି। ଏହାର କାରଣ ଅତି ସାଧାରଣ। ଗୋଟିଏ ଦୋକାନ କରିବା ଅତି ସହଜ, ଏଥିରୁ ଖୁବଶୀଘ୍ର ଲାଭ ମିଳିଥାଏ ଓ ଯିଏ ଏହି ଉପାୟରେ ଟଙ୍କା ରୋଜଗାର କରିବାକୁ ଚାହେଁ, ସେ ହୁଏତ ଏହା କରିପାରେ। ଅନ୍ୟ ପକ୍ଷରେ ସ୍କୁଲ ସରକାରଙ୍କଠାରୁ ସ୍ୱୀକୃତି ପାଇବା ଆବଶ୍ୟକ। ଏବଂ ପ୍ରକୃତରେ ଭଲ ସ୍କୁଲ ଏକ ଅର୍ଥ

ଉପାର୍ଜନକାରୀ ଅନୁଷ୍ଠାନ ନୁହେଁ। ଡାକ୍ତରଖାନା ମଧ୍ୟ ଏହି ଶ୍ରେଣୀ ଅନ୍ତର୍ଭୁକ୍ତ ନୁହେଁ। ତେଣୁ ଏହି ଅତ୍ୟାବଶ୍ୟକ ଅନୁଷ୍ଠାନଗୁଡ଼ିକର ଅଭାବ ସାଧାରଣତଃ ଦେଖାଯାଏ ଯେତେବେଳେ ସିନେମାଘର ଓ ଦୋକାନବଜାର ସଂଖ୍ୟା କ୍ରମାଗତ ବଢ଼ି ଚାଲେ।

ଏହା ଏକ ସ୍ୱାଗତଯୋଗ୍ୟ ଯୁକ୍ତି ଯେ ଏକ ଛୋଟ ଘରେ ରହୁଥିବା ଲୋକେ ବା ଏକ ଛୋଟ କୋଠାଘରେ ରହୁଥିବା ଲୋକେ ଘର ବାହାରେ ସାଧାରଣତଃ ମନୋରଞ୍ଜନ କରିଥାନ୍ତି। ତାଙ୍କର କୌଣସି ପ୍ରକାର ଆମୋଦ ପ୍ରମୋଦ ଓ ମନୋରଞ୍ଜନ ନ ଥିବା ଯାଏଁ ସେମାନେ ଠିକ୍ ଭାବେ କାମ କରିପାରନ୍ତି ନାହିଁ, ଏପରିକି ସେମାନଙ୍କ ଦୈନନ୍ଦିନ କାର୍ଯ୍ୟରେ କିଛି ପରିବର୍ତ୍ତନ କରିବା ଆବଶ୍ୟକ। ସେ ଯାହା ହେଉନା କାହିଁକି, ଏହି ବିଷୟରେ ଯୁକ୍ତି କରିବାର ଫଳ ହୁଏତ ପରିବର୍ତ୍ତିତ ହୋଇପାରେ। ଭଲ ସ୍କୁଲର ଗୁରୁତ୍ୱ ଏବେ ଗୋଟିଏ ଭଲ ସିନେମାହଲ ଓ ଭଲ ଭୋଜନାଳୟ ଠାରୁ ବହୁ ଗୁଣରେ କମ୍।

ଗୋଟିଏ ବାଟରେ ସହର ବାସିନ୍ଦାଙ୍କର ଏକ ସମ୍ଭାବ୍ୟ ଆମୋଦଦାୟକ କ୍ଷେତ୍ର ହେଉଛି ଖୋଲାସ୍ଥାନ। ବର୍ତ୍ତମାନ ମନସ୍ତତ୍ତ୍ୱବିତ୍‌ମାନେ କହିଲେଣି ଯେ ଆମ ସମସ୍ତଙ୍କର ଏକ ପ୍ରାକୃତିକ ପରିବେଶ ସହିତ ମିଶିକରି ରହିବାର ଅତ୍ୟଧିକ ଆବଶ୍ୟକତା ରହିଛି। ଯଦି ତୁମେ ଏକ ଗହଳିପୂର୍ଣ୍ଣ ଅବସ୍ଥାରେ ବାସ କରୁଛ କିମ୍ବା ତୁମେ କୌଣସି ଏକ ସୁନ୍ଦର ପରିଭ୍ରମଣରେ ଯାଇ ନାହଁ, କୌଣସି ପର୍ବତ ଚଢ଼ିନାହଁ, ନଦୀରେ ସନ୍ତରଣ କରିନାହଁ କିମ୍ବା ମାଛ ଧରି ନାହଁ, କୌଣସି ହ୍ରଦରେ ନୌକାବିହାର କରିନାହଁ କିମ୍ବା କାଗଜ ଡ଼ଙ୍ଗା ଭସାଇ ନାହଁ, ତେବେ ତୁମେ ଅଶ୍ୱସ୍ତିବୋଧ କରିବ, କାରଣ ଏଗୁଡ଼ିକ ଆରାମ ଓ ମନୋରଞ୍ଜନ ପାଇଁ ଅତ୍ୟାବଶ୍ୟକ। ଏହା ସହର ବାସିନ୍ଦାଙ୍କ ପାଇଁ ମାଗଣାରେ ହୁଏତ ମିଳିଥାଏ। କିନ୍ତୁ ସହର କର୍ତ୍ତୃପକ୍ଷଙ୍କ ପାଇଁ ଏଥିପାଇଁ ଅର୍ଥ ବ୍ୟୟ କରିବାକୁ ପଡ଼େ। ଏଥିପାଇଁ ଏକ ମୂଲ୍ୟବାନ ଅଞ୍ଚଳକୁ ଖୋଲା ରଖିବାକୁ ହୁଏ।

ଏହା ସତ୍ୟ ଯେ ପ୍ରତ୍ୟେକ ସହର ପାଇଁ ଖୋଲା ସ୍ଥାନର ଗୁରୁତ୍ୱ ଅଧିକ। ବର୍ତ୍ତମାନର ଲୋକଗହଳି ଯୋଗୁଁ ଏହି ପ୍ରକାର କେନ୍ଦ୍ରର ଆବଶ୍ୟକତା ପୂର୍ବ ଠାରୁ ଅଧିକ ଅନୁଭୂତ ହେଉଛି। ଏହା କେବଳ ଉପଭୋଗ୍ୟ ସ୍ଥାନ ନୁହେଁ, ଏହା ସହରର ମଇଳା ଓ ପ୍ରଦୂଷଣକୁ କମାଇ ଦେଇଥାଏ ଓ ବାସିନ୍ଦାମାନଙ୍କର

ସ୍ୱାସ୍ଥ୍ୟର ଉନ୍ନତି କରିଥାଏ। ପୁରାତନ ସହରମାନଙ୍କରେ ନିର୍ମାଣକାରୀମାନେ ସେଇଥିପାଇଁ ସହରର କେନ୍ଦ୍ର ସ୍ଥଳରେ ବିରାଟକାୟ ପାର୍କ ପ୍ରତିଷ୍ଠା କରିବା ଉପରେ ଗୁରୁତ୍ୱ ଦେଉଥିଲେ। ଆଧୁନିକ ସହର କର୍ତ୍ତୃପକ୍ଷ କିନ୍ତୁ ଏ ଦିଗରେ ଉଚିତ ଧ୍ୟାନ ନ ଦେଇ ଖୋଲାସ୍ଥାନ ପ୍ରତି ଅବହେଳା ପ୍ରଦର୍ଶନ କଲେ। ଆମର ଅଧିକାଂଶ ସହର ବିପଦଜନକ ଭାବେ ଅତ୍ୟଧିକ ଲୋକସଂଖ୍ୟା ପୂର୍ଣ୍ଣ ହୋଇଗଲାଣି। ଏବଂ ଏହା ଚିନ୍ତା କରିବା ଅସମ୍ଭବ ଯେ ଲୋକସଂଖ୍ୟା କେବେ ହୁଏତ ଟିକେ କମିଯିବ। ଆମକୁ ଏହିପ୍ରକାର ଗହଳି ଅବସ୍ଥା ଭିତରେ ରହିବାକୁ ହେବ, କିନ୍ତୁ ଆମକୁ ଏବେ ଦେଖିବାକୁ ହେବ ଯେ ଭବିଷ୍ୟତର ସବୁ ଉନ୍ନତିମୂଳକ କାର୍ଯ୍ୟକ୍ରମ କ୍ରମାନ୍ୱୟରେ ସଠିକ୍ ନିୟମ ଅନୁସାରେ ହେଉଛି। ଆମର ସହର ନକ୍ସା ପ୍ରସ୍ତୁତକାରୀ ମାନେ ଏହା ଗ୍ରହଣ କରିବା ଉଚିତ ଯେ ସହରର ଅପରିଷ୍କାର ଅପରିଚ୍ଛନ୍ନତା ଓ ଅନିୟମିତ କାର୍ଯ୍ୟକଳାପ ସହର ବାସିନ୍ଦାଙ୍କୁ ଶାରୀରିକ ଓ ମାନସିକ ରୋଗଗ୍ରସ୍ତ କରିଦେବ। ବାସ୍ତବିକ, ଏକ କ୍ରମବିପନ୍ନ ମାନସିକ ଅବସ୍ଥା ଶାରୀରିକ ଅସୁସ୍ଥତାଠାରୁ ବହୁ ଗୁଣରେ କ୍ଷତିକାରକ, କାରଣ ଏହାକୁ ସହଜରେ ଚିହ୍ନଟ କିମ୍ୱା ଏହାର ଚିକିତ୍ସା ସହଜରେ କରାଯାଇପାରେ ନାହିଁ। ଏହା ଏକ ଅନ୍ୟାୟ କାର୍ଯ୍ୟ କରିବାକୁ ପ୍ରଶ୍ରୟ ଦିଏ ଏବଂ ଏପରି ଏକ ଅବସ୍ଥା ସୃଷ୍ଟି କରେ ଯେତେବେଳେ ଛୋଟ ଛୋଟ କାରଣରୁ ହିଂସାକାଣ୍ଡ ସୃଷ୍ଟି ହୋଇଥାଏ। କ୍ରମାଗତ ଭାବେ ବିଭିନ୍ନ ପ୍ରକାର କାର୍ଯ୍ୟ ଏହିପରି ଭାବେ ହୋଇଥାଏ। ମଇଳା ପଦାର୍ଥ ଓ ଅସ୍ୱାସ୍ଥ୍ୟକର ଅବସ୍ଥାରୁ ମାନସିକ ଅସ୍ଥିରତା ଓ ବେନିୟମ ଭାବେ ସୃଷ୍ଟି ହୋଇଥାଏ। ଆଇନ ଶୃଙ୍ଖଳାର ବିଲୋପରୁ ପରିଣାମରେ ବିଶୃଙ୍ଖଳା ସୃଷ୍ଟି ହୁଏ ଓ ଅତ୍ୟଧିକ ଖର୍ଚ୍ଚ ବହୁଳ ପୁଲିସ ଏହାକୁ ଆୟତ୍ତ କରିବା ପାଇଁ ଆବଶ୍ୟକ ହୋଇଥାନ୍ତି। ମାତ୍ର, ଏକ ଭଲ ପରିବେଶ ଅବସ୍ଥା କରିବା ପାଇଁ କମ ଖର୍ଚ୍ଚ ଆବଶ୍ୟକ ହୋଇଥାଏ।

ସେ ଯାହାହେଉ, ଏକ ନୂତନ ସହର ପରିକଳ୍ପନା କରିବା ବେଳେ ପ୍ରାଥମିକ ଅବସ୍ଥାରେ ଅଧିକ ଖର୍ଚ୍ଚ ହୋଇଥାଏ। କିନ୍ତୁ ଭବିଷ୍ୟତରେ ଏହି ଖର୍ଚ୍ଚ ମୂଳ ଖର୍ଚ୍ଚରୁ କମିଯାଏ। ଅଣଯୋଜନା ଦ୍ୱାରା ଲୋକସଂଖ୍ୟା ଅତ୍ୟଧିକ ବୃଦ୍ଧି ପାଇଥାଏ। ବାଙ୍ଗାଲୋରର, ପୁରାତନ ସହରାଞ୍ଚଳରେ କେତେକ ସୁନ୍ଦର ଯୋଜନାବଦ୍ଧ କାର୍ଯ୍ୟକ୍ରମ ଦେଖାଯାଏ ଏବଂ ଏହାକୁ ଦେଖି କେହି ଭାବିବେ ନାହିଁ ଯେ ଏହାକୁ ଆଧୁନିକ ନକ୍ସାକାରୀମାନେ ଅନୁସରଣ କଲେ ଅଧିକ ଲାଭବାନ ହେବେ। ଉଦାହରଣ ସ୍ୱରୂପ, ଗୋଟିଏ ମୁଣ୍ଡରେ ବନ୍ଦଥିବା ରାସ୍ତା

ବହୁ ସମସ୍ୟା ସୃଷ୍ଟି କରିଥାଏ । ସବୁ ଘର ମୁଖ୍ୟରାସ୍ତାକୁ ମୁହଁ କରିବା ବ୍ୟତୀତ ଅନେକ ସମୟରେ ଛୋଟ ଛୋଟ ଗଳିରାସ୍ତା ମୁଖ୍ୟରାସ୍ତାରୁ ବାହାରିଥାଏ, ଯାହାକି ପାଞ୍ଚ ଛଅଟି ଘରର ଯୋଗାଯୋଗ ରାସ୍ତାରୂପେ ପରିଗଣିତ ହୁଏ । ଏହାର ସୁବିଧା ହେଉଛି:(କ) ଏହାଦ୍ୱାରା ଘରର ଗୋପନୀୟତା ରକ୍ଷା କରାଯାଏ, (ଖ) ଏହି ଘର ଗୁଡ଼ିକ ମୁଖ୍ୟରାସ୍ତାର କୋଳାହଳ ଓ ଧୂଳିରୁ ମୁକ୍ତ ରହେ, (ଗ) ଗୋଟିଏ ପାଖ ବନ୍ଦ ଥିବା ରାସ୍ତା ଗୁଡ଼ିକ ଛୋଟ ପିଲାଙ୍କ ଖେଳିବା ପାଇଁ ସୁରକ୍ଷିତ ସ୍ଥାନ, (ଘ) ମୁଖ୍ୟ ରାସ୍ତାର ଭାର ଏହାଦ୍ୱାରା କମିଯାଏ ଏବଂ ପ୍ରକାରାନ୍ତରେ ସରକାରଙ୍କ ରାସ୍ତା ନିର୍ମାଣ ବାବଦ ଖର୍ଚ୍ଚ କମିଯାଏ । ଏହି ପ୍ରକାର କାର୍ଯ୍ୟ ବାସ୍ତବିକ ସତର୍କତାର ସହିତ ଓ ଦରକାର ପଡ଼ିଲେ ପରିବର୍ତ୍ତିତ କରାଯାଇ ସବୁବେଳେ କରାଯିବା ଉଚିତ୍ ।

କିନ୍ତୁ ସହରର ଯେଉଁସବୁ ଅଞ୍ଚଳ ତିଆରି ସରି ଯାଇଛି ଏବଂ ତାହା ଏବେ ଅଧିକ ଜନାକୀର୍ଣ୍ଣ ହେଲାଣି, ସେ ବିଷୟରେ କଣ କରାଯାଇପାରେ ? ଆମେ ଖୁବ୍ ବେଶୀରେ ଏସବୁକୁ ଭାଙ୍ଗିଦେଇ ଭଙ୍ଗା ସ୍ଥାନରେ ପୁନଃନିର୍ମାଣ କରିପାରୁ । ଆମେ ଏହିସବୁ ଜିନିଷର ଉନ୍ନତି ପାଇଁ ଅଧିକ ଖର୍ଚ୍ଚ ନ କରି କଣ କରିପାରିବା ?

ଯେପରି ଗୋଟିଏ ଘରେ ପ୍ରତ୍ୟେକ ଜିନିଷ ପୂର୍ଣ୍ଣ ହୋଇ ରହିଥିଲେ ଏହା ଆରାମଦାୟକ ବା ନିରାମୟ ହୋଇଥାଏ, ସେହିପରି ଏକ ସହରର ସୁନ୍ଦର ଅବସ୍ଥିତି, ରାସ୍ତା ଦ୍ୱାରା ଏହା ସ୍ୱାସ୍ଥ୍ୟକର ବା ଅସ୍ୱାସ୍ଥ୍ୟକର ହୋଇଥାଏ । ଏକ ସୁନ୍ଦର ରାସ୍ତା ଅସୁନ୍ଦର ହୋଇଯାଏ, ଯଦି ଏହାର ପକ୍କାରାସ୍ତାରେ ଖଣ୍ଡିଆ ଖାବରା ଅଂଶର ସୃଷ୍ଟି ହୁଏ । ଏହି ରାସ୍ତା କେତେକ ସ୍ଥାନରେ ଏପରି ଖଣ୍ଡିଆ ଖାବରା ହୋଇଥାଏ ଯେ ଲୋକେ ଏଥିରେ ଯିବା ଆସିବା କରିପାରନ୍ତି ନାହିଁ । ଯଦି ଏହିପରି ରାସ୍ତା ନିକଟରେ ବୃହତ୍‌କାୟ କୋଠଘର ସବୁ ତିଆରି ହୋଇଥାଏ, ତାହା ଫଳରେ ରାସ୍ତାର ପିଚୁ ଅଞ୍ଚଳ କମିଯାଇଥାଏ ଏବଂ ଏଠାରେ ୨୪ ଘଣ୍ଟା ଧରି ଯାନ୍‌ବାହାନ ନିୟନ୍ତ୍ରଣକାରୀ ପୁଲିସଙ୍କ ଭିଡ ଜମେ । ଉଚ୍ଛୁଳି ପଡ଼ିଥିବା ବାଜେ ପଦାର୍ଥ, ଅଦରକାରୀ ପଦାର୍ଥ ଓ କୋଠବାଡ଼ି ତିଆରି ପଦାର୍ଥ ଏଣେତେଣେ ପଡ଼ିରହି ଓ ବୁଲୁଥିବା ଗାଈଗୋରୁ ଚାରିଆଡେ ବୁଲି ଯାନବାହାନ ଚଳାଚଳରେ ବାଧା ସୃଷ୍ଟି କରିଥାନ୍ତି । ଏହା ଆମର ଅଧିକାଂଶ ସହରର ଚିତ୍ର ବୋଲି କହିଲେ ହୁଏତ ଅତ୍ୟୁକ୍ତି ହେବ ନାହିଁ । ଏଗୁଡ଼ିକ ଅଚ୍ଛ ନିରାମୟ ଦାୟକ ବୋଲିବାକୁ ହେବ । ଏହା ଏପରି

ଅଦୃଷ୍ଟିକର ଯେ କର୍ତ୍ତୃପକ୍ଷ ଏହାର ନିରାକରଣ ପାଇଁ କୌଣସି ଦୃଢ଼ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରନ୍ତି ନାହିଁ। ତେଣୁ କିପରି ଭାବେ ଗୋଟିଏ ସହରର ଜୀବନଯାତ୍ରାରେ ଉନ୍ନତି ଘଟିପାରିବ ? ଏହାର ପିଚୁରାସ୍ତାର ଉନ୍ନତି କରାଯାଇ ଲୋକେ ଚାଲିପାରିଲା ଭଳି ଅବସ୍ଥା ସୃଷ୍ଟି ହେବା ଦରକାର। କିନ୍ତୁ ଏକଥା ସତ୍ୟ ଯେ ଏସବୁ ଆମର ସହର ପରିଚାଳକଙ୍କ କ୍ଷମତା ବହିର୍ଭୂତ।

ଅନ୍ୟ ଏକ ଛୋଟ ଘଟଣା ଯାହାକି ଅତିମାତ୍ରାରେ ଆମେ ପାଶୋରି ପକାଉ, ତାହା ହେଉଛି ଆମ ସହରରେ ଗଛ ପୋତିବା ଏବଂ ଏହାକୁ ଆବଶ୍ୟକ ଅନୁସାରେ କାଟି ସୁନ୍ଦର କରିବା। ଆମ ଜଳବାୟୁ ପାଇଁ ଛାୟା ନିଶ୍ଚିତ ଭାବେ ଦରକାର। ଏବଂ ଜଣଙ୍କର ଜୀବନର ସମ୍ପୂର୍ଣ୍ଣ ଆଭିମୁଖ୍ୟ ହୁଏତ ପ୍ରଚଣ୍ଡ ଖରାରେ ବାସ କରିବା ବା ଛାୟାପୂର୍ଣ୍ଣ ସ୍ଥାନରେ ବସତି ସ୍ଥାପନ ଦ୍ୱାରା ପରିବର୍ତ୍ତିତ ହୋଇପାରେ। ଏକ ବସ୍‌କୁ ଅପେକ୍ଷା କରିବାକୁ ହେଉ ବା ନିକଟବର୍ତ୍ତୀ ଏକ ଦୋକାନରୁ ସଉଦା ଆଣିବାକୁ ଚାଲିକରି ଯିବାକୁ ହେଉ, ଏକ ବିରାଟକାୟ ଛାୟାପ୍ରଦାନକାରୀ ବୃକ୍ଷର ଉପସ୍ଥିତି ଦ୍ୱାରା ଏକ ସୁକାର୍ଯ୍ୟ ସର୍ବସମ୍ମତି ଭାବେ ସମ୍ପନ୍ନ ହୋଇଥାଏ। ବାସ୍ତବିକ, ଯଦି ଆମର ସହରର ରାସ୍ତାକଡରେ ସୁନ୍ଦର ପତ୍ରପୂର୍ଣ୍ଣ ବୃକ୍ଷଥାଏ, ତେବେ ଲୋକେ କମ୍ ବାଟ ଯିବାପାଇଁ ବସ୍‌କୁ ଧାଡିରେ ଅପେକ୍ଷା ନକରି ହୁଏତ ପାଦରେ ଚାଲିଯିବାକୁ ପସନ୍ଦ କରିବେ। ଏବଂ ଏହା ଫଳରେ ବେସରକାରୀ ପରିବହନ ଭିଡ କମିଯାଇପାରେ।

ଛାୟା ଯୋଗାଇ ଦେବା ଭଳି ଏକ ସହଜକାମ ବ୍ୟତୀତ ଗଛମାନେ ଆମର ବାସୋପଯୋଗୀ ହୋଇ ନଥିବା ଜମିକୁ ବାସୋପଯୋଗୀ କରିବାକୁ ପ୍ରାୟ ଏକ ଡଜନରୁ ଅଧିକ ପ୍ରକାର ସାହାଯ୍ୟ ଆମକୁ ଯୋଗାଇ ଦେଇଥାନ୍ତି। ଉଦାହରଣ ସ୍ୱରୂପ, ଗଛମାନେ ଅନେକ ପରିମାଣର ଅସୁନ୍ଦର ଓ ମଇଳା ପଦାର୍ଥକୁ ଘୋଡାଇ ପାରନ୍ତି, ଏମାନେ କୋଠାଘରକୁ ଧୂଳିରୁ ରକ୍ଷା କରିଥାନ୍ତି ଏବଂ ଏକ ସହରର ଧୂଳିପୂର୍ଣ୍ଣ ଅବସ୍ଥାକୁ ଅନେକ ପରିମାଣରେ କମାଇ ଦେଇପାରନ୍ତି। ବାସ୍ତବିକ ଗଛମାନେ ମଧ୍ୟ ବାୟୁ ପ୍ରଦୂଷଣକୁ ମୋଟ ଉପରେ କମାଇ ଦେଇପାରନ୍ତି। ଏଥିରେ କୌଣସି ସନ୍ଦେହ ନାହିଁ ଯେ ଏକ ଛୋଟ ଗଛପୂର୍ଣ୍ଣ ଅଞ୍ଚଳରେ ଗଛ ନ ଥିବା ଅଞ୍ଚଳର ଉତ୍ତାପଠାରୁ ବହୁତ କମ ଉତ୍ତାପ ହୋଇଥାଏ। ପୁଷ୍ପପୂର୍ଣ୍ଣ ବୃକ୍ଷରାଜି ସହରକୁ ସୌନ୍ଦର୍ଯ୍ୟଭରା କରିଥାନ୍ତି ଏବଂ ଏହାର ବାସିନ୍ଦାଙ୍କ ମନ କିଣି ନେଇଥାନ୍ତି ଓ ଶେଷରେ ଗଛ ଅନେକ

ସମୟରେ ଆଂଶିକ ଭାବେ ବା ସମ୍ପୂର୍ଣ୍ଣଭାବେ ଶବ୍ଦ ପ୍ରଦୂଷଣକୁ ଗ୍ରହଣ କରିନିଏ।

ଏହି ସବୁ ତଥ୍ୟ ସହର ରାସ୍ତାରେ ଯାଉଥିବା ବାଟୋଇଠାରୁ ସହର କର୍ତ୍ତୃପକ୍ଷକୁ ଭଲ ଭାବରେ ଜଣା। ମାତ୍ର, ଏହା ଆଶ୍ଚର୍ଯ୍ୟଜନକ ଯେ ସହରରେ ଥିବା ବହୁ ପୁରାତନ ଓ ବିରାଟକାୟ ଗଛକୁ ସାଧାରଣତଃ କାଟି ଦିଆଯାଉଛି, ହୁଏତ ରାସ୍ତାକୁ ଚଉଡା କରିବାକୁ ହେଉ କିମ୍ବା ବିଦ୍ୟୁତତାର ଟାଣିବାକୁ ବା ସାଧାରଣ ଭାବେ ଯେହେତୁ ଗଛଗୁଡିକ ରାସ୍ତା ମଝିରେ ରହିଛନ୍ତି ସେଥିପାଇଁ ହେଉ ଗୋଟିଏ ଗଛ ପରିପୁଷ୍ଟ ହେବା ପାଇଁ ସାଧାରଣତଃ ପଚାଶ ବର୍ଷ ସମୟ ଲାଗେ କିନ୍ତୁ, ଏହି ଗଛଟିକୁ କାଟିବାକୁ ମାତ୍ର ଦୁଇଘଣ୍ଟା ସମୟ ଲାଗେ। ଜଣେ ଚିନ୍ତା କରିବା ଉଚିତ ଯେ କୌଣସି ଗଛ ବା ଏହାର ଡାଳକୁ କାଟିବାକୁ ଏକ ଜଘନ୍ୟ ଅପରାଧ ବୋଲି ବିଚାର କରାଯିବା ଆବଶ୍ୟକ ଏବଂ ଏଥିପାଇଁ ଜେଲ ଦଣ୍ଡର ବ୍ୟବସ୍ଥା ହେବା ମଧ୍ୟ ଦରକାର। ସର୍ବୋପରି ଗୋଟିଏ ଟଙ୍କା ଥଳୀ ଚୋରିକରିବା ଲୋକ ହୁଏତ ଜଣକର ଅନିଷ୍ଟ କରପାରେ, ମାତ୍ର ଯେଉଁ ଲୋକ ଗଛଟିଏ କାଟିଦିଏ, ତାହା କେତେହଜାର ଲୋକଙ୍କର କ୍ଷତିସାଧନ କରିଥାଏ ବା ସମଗ୍ର ସହର ବାସିନ୍ଦାଙ୍କର କ୍ଷତି କରିଥାଏ। ସର୍ବସାଧାରଣଙ୍କ ସମ୍ପତ୍ତି ନଷ୍ଟ କରିବା ବ୍ୟକ୍ତିଗତ ସମ୍ପତ୍ତି ନଷ୍ଟ କରିବାଠାରୁ ବହୁ ଗୁଣରେ ଅଧିକ ଗର୍ହିତ କାର୍ଯ୍ୟ ବୋଲି ପୂର୍ବରୁ ପରିଗଣିତ ହୋଇଆସିଛି। ଏବଂ ଏହା ଜଣେ ଲୋକ କରିବା ଅସ୍ୱାଭାବିକ ଓ ଦୁଃଖପୂର୍ଣ୍ଣ ଯାହାକି ବହୁ ଲୋକଙ୍କ ଆରାମ ଓ ଅଧିକାରରେ ବ୍ୟାଘାତ ସୃଷ୍ଟି କରେ।

ଆମ ସହରରେ ତିଷ୍ଠି ରହିଥିବା ବୃକ୍ଷରାଜିକୁ ସୁରକ୍ଷା ପ୍ରଦାନ କରିବା ଏବଂ ନୂତନ ଗଛ ପୋତିବା ଓ ନୂତନଗଛ ସୃଷ୍ଟି କରିବାକୁ ସାହାଯ୍ୟ କରିବାରେ ଆମେ କାହିଁକି ଅବହେଳା ପ୍ରଦର୍ଶନ କରୁଛୁ? ଏହାର କାରଣ ହେଉଛି ଯେ, କୌଣସି ପଦାର୍ଥ ଯାହାକି ଶୀଘ୍ର ଅର୍ଥନୈତିକ ସୁବିଧାପ୍ରଦାନ କରେ ନାହିଁ, ତାକୁ ସାଧାରଣତଃ ଅନାବଶ୍ୟକ ରୂପେ ବିବେଚନା କରାଯାଏ। ଏହାର କାରଣ ଆମର ସୌନ୍ଦର୍ଯ୍ୟ ଓ ସମତା ରକ୍ଷା ଇତ୍ୟାଦି ବିଷୟରେ କୌଣସି ଧାରଣା ନାହିଁ। କେତେକ ବହୁତଳ ସୌନ୍ଦର୍ଯ୍ୟଭରା କୋଠାଘର ସମୂହକୁ ଆମେ ଏକ ସହରର ମାପକାଠି ବୋଲି ମାନି ନେଇଥାଉ। ଏହି ଅବସ୍ଥା ବାସ୍ତବିକ ଘଟୁଛି ଏବଂ କ୍ରମେ ବଢ଼ି ବଢ଼ି ଚାଲିଛି।

ସମୟକ୍ରମେ ରାସ୍ତାକଡରେ ଚାରାଗଛ ପୋତିବା କାର୍ଯ୍ୟ କରାଯାଉଛି ଏବଂ ପ୍ରଥମ ଚାରା ପୋତିବାକୁ ରାଜନୈତିକ ଲୋକଙ୍କୁ ନିମନ୍ତ୍ରଣ କରାଯାଉଛି।

କିଛି ମାସ ଭିତରେ ଏହି ଚାରାଗଛ ମରିଯାଉଛି ଏବଂ ବୃକ୍ଷରୋପଣ ଉତ୍ସବରେ ଏକ ଛୋଟ ସମ୍ବାଦ ସମ୍ବାଦପତ୍ରରେ ପ୍ରକାଶିତ ହେବା ବ୍ୟତୀତ ଏହାର କୌଣସି ମୂଲ୍ୟ ମିଳୁନାହିଁ। ଏକ ଦାୟିତ୍ୱପୂର୍ଣ୍ଣ ବୃକ୍ଷରୋପଣ କାର୍ଯ୍ୟକ୍ରମରେ ଏହା ନିଶ୍ଚିତଭାବେ ହେବା ଆବଶ୍ୟକ ଯେ: (କ) ବୃକ୍ଷରୋପଣ ପୂର୍ବରୁ ଚାରାଗଛର ଉଚ୍ଚତା ଖୁବ କମରେ ଛଅ ଫୁଟ ହୋଇଥିବ, (ଖ) ଗଛର ସୁରକ୍ଷାକାରୀ ଗୋଲେଇ ଗାଈଗୋରୁ ଓ ମଣିଷଙ୍କ ଠାରୁ ଚାରାକୁ ରକ୍ଷା କରିବାକୁ ଶକ୍ତିଶାଳୀ ଓ ଉଚ୍ଚ ହୋଇଥିବ ଏବଂ (ଗ) ଚାରାଗଛ ପୋତାଯିବା ପରଠାରୁ ଏକବର୍ଷ ଯାଏଁ ଏହାର ଦେଖାଶୁଣା କରିବାକୁ ହେବ। ଏକ ସହରର ପ୍ରଭୂତ ସମ୍ବଳ ଭିତରେ ଏହି କାର୍ଯ୍ୟ ପରିଚାଳନା କରିବାରେ ବିଶେଷ କିଛି ଅସୁବିଧା ନାହିଁ। କିନ୍ତୁ ଯେପରି ମୁଣ୍ଡ ବ୍ୟଥାର କାରଣ ପ୍ରକୃତରେ ମୁଣ୍ଡ ଭିତରେ ନଥାଇ ଶରୀରର ଯକୃତରେ ଥାଇପାରେ, ସେହିପରି ଆଜିର ବୃକ୍ଷହୀନତାର କାରଣ ଶସ୍ତା ଦରରେ ଜାଳେଣିକାଠ ନମିଳିବା ଓ ବୁଲାଗୋରୁଗାଈଙ୍କ ସଂଖ୍ୟା ଅତ୍ୟଧିକ ଭାବେ ବୃଦ୍ଧି ପାଇବା ବୋଲି କହିବାକୁ ହେବ। ସହରର ରାସ୍ତାକଡରେ ବୃକ୍ଷରୋପଣ କରିବା ସହିତ ଜାଳେଣି କାଠ ଯୋଗାଣ କେନ୍ଦ୍ର ଖୋଲାଯିବା ଦରକାର ଏବଂ ଗାଈଗୋରୁଙ୍କୁ ଦକ୍ଷତାର ସହ ନିୟନ୍ତ୍ରଣ କରିବା ଆବଶ୍ୟକ।

ସହରର ରାସ୍ତାକଡରେ ଧାଡିରେ ରହିଥିବା ସୁନ୍ଦର ଛାୟାପ୍ରଦ ବୃକ୍ଷରାଜି ସହର ବାସିନ୍ଦାଙ୍କର ପସନ୍ଦ। କିନ୍ତୁ ଏହାଛଡା ସହର ଲୋକେ କେତେକ ଖୋଲାସ୍ଥାନ ଆବଶ୍ୟକ କରନ୍ତି, ଯେଉଁଠାରେ ବସି ସେମାନେ ପୃଥିବୀର ବିଭିନ୍ନ ଘଟଣାବଳୀ ବିଷୟରେ ମନଖୋଲି ଆଲୋଚନା କରିପାରିବେ। ପ୍ରତ୍ୟେକ ସହରବାସୀ ଚାହେଁ ଯେ ଏକ ସିମେଣ୍ଟ ଚଟାଣ ଉପରେ ବସି ନିଜର ସ୍ୱତନ୍ତ୍ରତା ରକ୍ଷା ସହିତ ସେ ଏପରି ବସିବା ଦରକାର ଯେପରିକି ଗୋଡର ପାଦ ଭୂମିକୁ ସ୍ପର୍ଶ କରୁଥିବ ଏବଂ ଯେଉଁଠାରୁ ସେ ଫୁଲର ସୌନ୍ଦର୍ଯ୍ୟ ଦେଖିବା ସହିତ ଏହାର ସୁଗନ୍ଧକୁ ଆଘ୍ରାଣ କରିପାରୁଥିବ, କୀଟପତଙ୍ଗ ଏବଂ ପକ୍ଷିଙ୍କ କାକଳି ଶୁଣିପାରୁଥିବ ଓ ନିଜ ଶରୀର ଓ ମୁଖମଣ୍ଡଳ ଉପରେ ବହିଯାଉଥିବା ଧୀର ପବନକୁ ଉପଭୋଗ କରିପାରୁଥିବ। ପୂରାକାଳରେ ପ୍ରତ୍ୟେକ ସହରରେ ଏହିପରି ବହୁ ସ୍ଥାନ ରହିଥିଲା। ମାତ୍ର, ଏବେ ଖୁବ୍ କମ ଏହିପରି ସ୍ଥାନ ରହିଛି ଏବଂ ସହରବାସୀମାନେ ଏ ପ୍ରକାର ପ୍ରାକୃତିକ ସୌନ୍ଦର୍ଯ୍ୟ ଦେଖିବାରୁ ଓ ଅନୁଭବ କରିବାରୁ ଦିନ ଦିନ ବିତାଇ ଅପେକ୍ଷାକରି ମଧ୍ୟ ବଞ୍ଚିତ ହେଉଛନ୍ତି।

ଆମେ ଜାଣୁ ଯେ ଗୃହ ଇତ୍ୟାଦି ତିଆରି ହୋଇନଥିବା ଯେ କୌଣସି ଜମି ହେଉଛି ଅବ୍ୟବହୃତ ଜମି। ଆମେ ଏହାର ବର୍ଗୟାର୍ଡକୁ ଟଙ୍କାରେ ହିସାବ କରି ଏହି ଜମିରେ ଗଛପୋତି ସହରକୁ ବିଶୁଦ୍ଧ ବାୟୁ ଯୋଗାଇ ଦେଇପାରିବା। ଏହା ଆମକୁ ଏହିପରି ଭାବେ ପ୍ରକୃତ ମୂଲ୍ୟଦେଇପାରିବ। ବିଶୁଦ୍ଧ ବାୟୁଗ୍ରହଣ କରିବା କୌଣସି ଏକ କୋଠବାଡିରେ ବାସକରିବା ଠାରୁ ହଜାରେ ଗୁଣ ଲାଭ ଦାୟକ। ବାସ୍ତବିକ ଗଛକୁ କାଟି ନଷ୍ଟ କରିନଦେଇ ଅଧିକ ସଂଖ୍ୟକ ପାର୍କ ଓ ଖୋଲାସ୍ଥାନ ସହର ଭିତରେ ସୃଷ୍ଟି କରିବା ଆମର ପ୍ରଥମ କାର୍ଯ୍ୟକ୍ରମ ହେବା ଉଚିତ।

ବହୁ ସହରରେ କେତେକ ପାର୍କ ଆଜିଯାଏଁ ତିଷ୍ଠି ରହିଛି। ମାତ୍ର ଏମାନଙ୍କ ପାଇଁ ସହର ବିଶେଷ ଭାବେ ପ୍ରଭାବିତ ନୁହେଁ, ବରଂ ଏହା ମାଡି ରହିଥିବା ସ୍ଥାନ ଛାଡିବାକୁ କୁଣ୍ଠା ପ୍ରକାଶ ପାଉଛି। ପାର୍କର କଣକୁ ଅନ୍ୟ କାର୍ଯ୍ୟ ପାଇଁ ବ୍ୟବହାର କରିବା ବ୍ୟବସ୍ଥା ପ୍ରାୟ ଚଳିଆସୁଛି। ବାଙ୍ଗାଲୋରର ସୁନ୍ଦର କ୍ୟୁବନ ପାର୍କରେ ଏକ ଷ୍ଟାଡିୟମ ନିର୍ମିତ ହୋଇଛି। ଏକ ବଡ ବଗିଚା ଭିତରେ ବମ୍ବେରେ ଗୋଟିଏ ମ୍ୟୁନିସିପାଲଟି ସ୍କୁଲ ଚାଲିଛି।

ସହରରେ ବାସ କରୁଥିବା ବହୁ ଲୋକଙ୍କ ପାଇଁ ପୌର ପାର୍କ ହେଉଛି ଏକମାତ୍ର ସ୍ଥାନ, ଯାହାକି ପ୍ରାକୃତିକ ପରିବେଶ ସହିତ ସଂଶ୍ଲିଷ୍ଟ ହୋଇ ରହିଥାଏ। ସହର କର୍ତ୍ତୃପକ୍ଷ ଏହି ପାର୍କକୁ ସରସ ସୁନ୍ଦର କରିବା ପାଇଁ ମୁକ୍ତ ହସ୍ତରେ ଟଙ୍କା ଖର୍ଚ୍ଚ କରିବା ଉଚିତ। ଯାହା ଫଳରେ କି ଯିଏ ଥରେ ସେଠାକୁ ଆସିବ, ସେ ପ୍ରକୃତରେ ଏକ ଆନନ୍ଦଦାୟକ ଓ ଭଲ ସ୍ମୃତି ବହନ କରିଯିବ। ଏଠାରେ ସ୍ଥାୟୀଭାବେ ଘାସ ରହିବା ଆବଶ୍ୟକ। ଏହା ବ୍ୟତୀତ, ଛାୟାପ୍ରଦ ଗଛ ଏବଂ ପାଣି ତଥା ଅସ୍ଥାୟୀ ଜିନିଷ ମଧ୍ୟରେ ରଙ୍ଗ ବଦଳାଉଥିବା ବିଭିନ୍ନ ଋତୁର ଫୁଲ ରହିବା ଉଚିତ।

ବଡ ବଡ ପାର୍କ ବ୍ୟତୀତ ଛୋଟ ଛୋଟ ଘାସପୂର୍ଣ୍ଣ ସ୍ଥାନ ମଧ୍ୟ ସହର ବାସିନ୍ଦାଙ୍କ ପାଇଁ ଅନ୍ୟ ଏକ ଆକର୍ଷଣୀୟ କ୍ଷେତ୍ର ରୂପେ ଉପଯୋଗୀ ହୋଇପାରେ। କେତେକ ସହରରେ ପରୀକ୍ଷାମୂଳକ ଭାବେ କେତେକ ଶିଳ୍ପ କାରଖାନା ପ୍ରତିଷ୍ଠା କରାଯାଇ ସେମାନଙ୍କୁ କେତେକ ଛୋଟ ସ୍ଥାନ ଓ ବଗିଚାକୁ ନିୟନ୍ତ୍ରଣ କରିବା ଦାୟିତ୍ୱ ଦିଆଯାଇଛି। ଏହା ଏକ ଭଲ ଯୋଜନା। ଏହା ଜନସାଧାରଣଙ୍କ ଅର୍ଥ ସଞ୍ଚୟ କରିବା ସହିତ ଶିଳ୍ପକୁ ନିଜ ବିଷୟରେ ପ୍ରଚାର କରିବାକୁ ସୁଯୋଗ ଦେଇଥାଏ। ଏବଂ ଏହା ବ୍ୟତୀତ ଛୋଟ ହେଲେ ମଧ୍ୟ

ଏହା ସହରକୁ ସୁନ୍ଦର କରିଥାଏ। ସେ ଯାହା ହେଉ, ପ୍ରତ୍ୟେକ ସହରରେ ଶହ ଶହ ଛୋଟ ଅବ୍ୟବହୃତ ଖୋଲାସ୍ଥାନ ରହିଛି ଯାହାକି ଖାଲି ମଇଳାପୂର୍ଣ୍ଣ ସ୍ଥାନ ଭାବେ କିମ୍ବା ଯେଉଁଠାରେ ଲୋକେ ଅଦରକାରୀ ଜଳକିଲଗା ଟିଣ, ବୋତଲ ଇତ୍ୟାଦି ଫିଙ୍ଗିଥାନ୍ତି। ଏହିପରି ସ୍ଥାନ ସହଜରେ ସଫା କରାଯାଇ ଏଠାରେ ବୃକ୍ଷରୋପଣ କରାଯାଇ ସହରକୁ ସର୍ବୋତ୍ତମଭାବେ ସୁନ୍ଦର କରାଯାଇ ପାରିବ। ଗୋଟିଏ ସହର ଯାହାକି ବହୁ ଛୋଟ ବଡ ପାର୍କ ଓ ଗଛ ଦ୍ୱାରା ପୂର୍ଣ୍ଣ, ଯାହାର ରାସ୍ତା ସଫା ସୁତୁରା, ସେଠାରେ ଆପେ ଆପେ ସ୍ୱାଭାବିକ ଭାବେ ସୁନ୍ଦର ସହର ରୂପେ ଏହା ପରିଗଣିତ ହୋଇଥାଏ।

ଅଳିଆ ବ୍ୟତୀତ ସହରର ଦ୍ୱିତୀୟ ବଡ ସମସ୍ୟା ହେଉଛି କୋଳାହଳ। ବହୁ ବିଶେଷଜ୍ଞ ବିଶ୍ୱାସ କରୁଛନ୍ତି ଯେ ଭାରତରେ ଆଗାମୀ ବଂଶଧର ମାନଙ୍କ ମଧ୍ୟରୁ ଅନେକ କାଲ ହୋଇଯିବେ। ଆମର ଶବ୍ଦ ପ୍ରୟୋଗ ଏତେ ବୃଦ୍ଧି ପାଇଲାଣି ଯେ ମଣିଷର କାନ ଏହାକୁ ସହିପାରିବା ଭଳି ତିଆରି ହୋଇନାହିଁ। ଆମେ ଏବେ ସୁଦ୍ଧା ବଡ ପାଟିରେ କଥାବାର୍ତ୍ତା କରି ଆମ କାନକୁ ଏଥିସହିତ ଖାପଖୁଆଇ ସାରିଲୁଣି। ଆମେ ଏବେ ବଡ ପାଟିରେ ଚିତ୍କାର କରୁଛୁ। ରେଡିଓକୁ ଖୁବ ଜୋରରେ ବଜାଉଛୁ, ଆମ ସିନେମା ସଂଳାପ ଏବେ ଖୁବ୍ ଜୋରରେ ପ୍ରଚାରିତ ହେଉଛି, ଆମ ଲାଉଡସ୍ପିକର ଏବେ ବିରାଟକାୟ ଶବ୍ଦ ସୃଷ୍ଟି କରୁଛି, ଆମ କାରର ହର୍ଣ୍ଣ ଏବେ ଖୁବ୍ ଜୋରରେ ବାରମ୍ବାର ବାଜୁଛି।

ଶବ୍ଦକୁ ସମ୍ଭାଳି ନେବା ଶକ୍ତି ଓ ଅନିଚ୍ଛାକୃତ ଚିନ୍ତା ଭିତରେ କେତେ ତଫାତ୍ ରହିଛି, ଏହା ଅନୁମାନ କରିବା ଅଧିକ କୌତୁହଳପ୍ରଦ। ଆମେ ଜାଣୁ ଯେ, ଯେତେବେଳେ ଜଣେ ଧର୍ମପ୍ରାଣ ବ୍ୟକ୍ତି ଧ୍ୟାନରେ ବସନ୍ତି, ସେ ଉଚ୍ଚ ପର୍ବତର ନିରୋଳାସ୍ଥାନ ବାଛି ନେଇଥାନ୍ତି, କାରଣ କୌଣସି ଲୋକ ଏକ ଗଣ୍ଡଗୋଳିଆ, କୋଳାହଳପୂର୍ଣ୍ଣ ସ୍ଥାନରେ କୌଣସି ବିଷୟରେ ମନୋନିବେଶ କରିପାରେ ନାହିଁ କିମ୍ବା ଧ୍ୟାନରେ ବସିପାରେ ନାହିଁ। ଆମ ଭିତରୁ ଅନେକ ଚିନ୍ତାଶୀଳ ବୋଲି ନ ଭାବି ଏହା ମଧ୍ୟ ଉପଲବ୍ଧି କରିପାରିବା ଯେ ଆମର ଦୈନନ୍ଦିନ ଜୀବନରେ ଆମେ ଯେତେବେଳେ ଲାଉଡସ୍ପିକର ବାଜିବା, କାର ହର୍ଣ୍ଣ ଓ ସହର ଶିଳ୍ପ ଯୋଗୁଁ ସୃଷ୍ଟି ହେଉଥିବା ଗଣ୍ଡଗୋଳରେ ଠିକ୍ ରୂପେ ମନୋନିବେଶ କରିପାରିବା ନାହିଁ, ପାଠପଢ଼ିପାରିବା ନାହିଁ ବା ଚିନ୍ତା ମଧ୍ୟ କରିପାରିବା ନାହିଁ। ଅନ୍ୟ ଦେଶ ତୁଳନାରେ ଆମ ଦେଶରେ ଟ୍ରାଫିକରୁ ସୃଷ୍ଟ ଶବ୍ଦ ଅଧିକ। ଆମର ଯାନବାହାନ ମଟରଗାଡି, ଦୁଇଚକିଆ ଗାଡି

ଓ ଅଟୋରିକ୍ସା ପୃଥିବୀର ଅନ୍ୟ ଦେଶର ଯାନବାହାନଠାରୁ ଅଧିକ ପରିମାଣରେ ଶବ୍ଦ ସୃଷ୍ଟି କରିଥାଏ। ସେଗୁଡିକର ଆକାର ଦୋହଲି ଉଠେ, ଇଞ୍ଜିନରୁ ମଧ୍ୟ ଅଧିକ ବିକଟ ଶବ୍ଦ ସୃଷ୍ଟି ହୋଇଥାଏ। ଆମ ଟ୍ରକରେ ଏକ ପ୍ରକାର ବାୟୁଦ୍ୱାରା ଚାଳିତ ହର୍ଣ୍ଣ ଲାଗିଥାଏ, ଯାହାକି ସିଧା ସଳଖ ଶୁଣିବା ଲୋକର କାନ ପରଦାରେ ବାଡେଇ ହୁଏ। ଅନ୍ୟାନ୍ୟ ଦେଶପରି ଆମ ଦେଶରେ ବାୟୁ ହର୍ଣ୍ଣ ବଜାଇବା ନେଇ କୌଣସି କଟକଣା ନାହିଁ।

ସାଧାରଣ ଭାବେ ବିଶୃଙ୍ଖଳିତ ଶବ୍ଦ ସୃଷ୍ଟି ଗୋଟିଏ ଦିଗ, କିନ୍ତୁ ବୋଧହୁଏ ବିକଟ ଶବ୍ଦ ସୃଷ୍ଟି କରି ଆମର ଅର୍ଥହୀନ ସିନେମା ସଙ୍ଗୀତ ବୋଲୁଥିବା ଲାଉଡ୍‌ସ୍ପିକର ଶବ୍ଦ ସବୁଠାରୁ ଆକସ୍ମିକ କ୍ଷତିକାରକ। ଭାରତୀୟ ଅନ୍ୟ କୌଣସି ସଙ୍ଗୀତ ଏତେ ଖୋଲା, ଅର୍ଥହୀନ ଓ ଅଣସାଙ୍ଗୀତିକ ହୋଇନଥାଏ ଯାହାକି ଆମର ସିନେମା ପ୍ରସ୍ତୁତକାରକ ମାନେ ସୃଷ୍ଟି କରିଥାନ୍ତି ଏବଂ ଏହାକୁ ଯେ କେହି ଭାବିବେ ଯେ ଏହା ବିବେକଶୂନ୍ୟ ଭାବେ ଶୁଣୁଥିବା ବ୍ୟକ୍ତିକୁ ଆକ୍ରାନ୍ତ କରିଥାଏ। ଏକ ମଣିଷ ହିସାବରେ ଆମେ ଅନ୍ତର୍ଦୃଷ୍ଟି ସହ ଆମର ସିନେମା ସଙ୍ଗୀତକୁ ବିଶ୍ଳେଷଣ କଲେ ଏହା ଆମକୁ କିପରି ଚିନ୍ତା ଶୂନ୍ୟ କରିଦେଇପାରେ, ତାହା ଜାଣିପାରିବା। ଏଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ ଯେ ଆମେ ଦୈନନ୍ଦିନ ସମ୍ମୁଖୀନ ହେଉଥିବା ବହୁ ସମସ୍ୟା ବିଷୟରେ ନୀତିଗତ ଭାବେ ଚିନ୍ତାକରୁନାହୁଁ।

ସେଥିପାଇଁ ଆମର ସହରୀ ଜୀବନ କୌଣସି ବିଷୟରେ ଅତିମାତ୍ରାରେ ଚିନ୍ତା ବା ବିଶ୍ଳେଷଣ ଦରକାର କରେ ନାହିଁ। ଶ୍ରେଣୀ ଓ ଅଫିସ ଇତ୍ୟାଦି ଏପରି ଏକ ପରିବେଶରେ କ୍ରମାଗତ ଚାଲିଆସିଛି, ଯାହାର କିଛି ପରିବର୍ତ୍ତନ ନାହିଁ। ଆମର ଚେତନା ବର୍ତ୍ତମାନ ମଧ୍ୟରାତ୍ରି ଓ ଶୋଇବା ବେଳ ବ୍ୟତୀତ ଗୁରୁତର ଭାବେ ଆକ୍ରାନ୍ତ, ଏପରିକି କୌଣସି ଦର୍ଶନୀୟ ପଦାର୍ଥ ଆମ ନିକଟରେ ଅନ୍ଧକାର ପୂର୍ଣ୍ଣ ହୋଇ ରହେ ଏବଂ ଶୋଇବାବେଳେ ମଧ୍ୟ ଆମେ ଶବ୍ଦ ସମସ୍ୟା ଯୋଗୁଁ ଆକ୍ରାନ୍ତ ହେଉ। ଏଥିରେ ସନ୍ଦେହ କରିବାର କିଛି ନାହିଁ ଯେ ସାମାନ୍ୟ କେତେକ ଘଟଣାରୁ ବାରମ୍ବାର ଯେଉଁସବୁ ଗଣ୍ଡଗୋଳ ଘଟୁଛି, ଯଥା : ସିନେମା ହଲ ଧାଡିରେ, ବସଷ୍ଟାଣ୍ଡରେ କିମ୍ବା ବଜାରରେ ବ୍ୟବସାୟୀଙ୍କ ସହିତ, ଏହା କେବଳ ଏ ପ୍ରକାର ଚିନ୍ତା, ଚାପ ଓ ବିଶୃଙ୍ଖଳା ଯୋଗୁଁ ଘଟୁଛି। ପ୍ରତ୍ୟେକ ଲୋକଙ୍କର ସ୍ନାୟୁ ବର୍ତ୍ତମାନ ଭାରାକ୍ରାନ୍ତ। ସହରୀ ଜୀବନର ଅଶୋଭନୀୟ ଅବସ୍ଥା ନିଜସ୍ୱ ନିୟନ୍ତ୍ରଣ ଦରକାର କରୁଛି, ଯାହାକି

ବର୍ତ୍ତମାନ ଭଗ୍ନ ଅବସ୍ଥାରେ ପହଁଞ୍ଚିସାରିଛି ଏବଂ ଯାହାକି ଭବିଷ୍ୟତରେ ପ୍ରତିଦିନ ସୃଷ୍ଟି ହେଉଥିବା ନୂଆ ନୂଆ ସମସ୍ୟାର ସମ୍ମୁଖୀନ ହେଉଛି ।

ଆମେ ଯେତେବେଳେ ଆଜିର ଭାରତୀୟ ସହରୀ ଜୀବନକୁ ଦେଖୁ, ସେତେବେଳେ ମୁଖ୍ୟତଃ ତିନୋଟି ବିଷୟ ଆମ ଆଗରେ ପ୍ରତୀୟମାନ ହୋଇଥାଏ, (୧) ବଡ ଧରଣର ପରିବର୍ତ୍ତନ ନକରି ସାଧାରଣ ସଫାସୁତୁରା ଓ ସମତା ସହରୀ ଜୀବନ ମଧ୍ୟରେ ସୃଷ୍ଟି ହୋଇପାରିଛି, (୨) ସହର କର୍ତ୍ତୃପକ୍ଷ ଏ ପ୍ରକାର ସଫାସୁତୁରା ଓ ସମତା ରକ୍ଷା ପାଇଁ କିଛି କରିନାହାଁନ୍ତି ବା କରିବାକୁ ଆଜିଯାଏଁ ଚେଷ୍ଟା କରିନାହାଁନ୍ତି, (୩) ସହରବାସୀ ବା ସର୍ବସାଧାରଣ ଏହାକୁ ସେମାନଙ୍କର ଦାୟିତ୍ୱ ବୋଲି ଭାବୁନାହାନ୍ତି ଏବଂ କର୍ତ୍ତୃପକ୍ଷଙ୍କୁ ସାହାଯ୍ୟ କରିବାକୁ ଚେଷ୍ଟାକରି ନିଜ ନିଜ ମଧ୍ୟରେ ବିଭେଦ ସୃଷ୍ଟି କରୁଛନ୍ତି ।

ମୁଖ୍ୟତଃ ଦୁଇଟି ବାଟ ସ୍ପଷ୍ଟ ରହିଛି, ଯେଉଁବାଟେ ଆମେ ସର୍ବସାଧାରଣ କର୍ତ୍ତୃପକ୍ଷଙ୍କୁ ସାହାଯ୍ୟ କରିବା ସହିତ ଆମ ସହର ଉପରେ ଉଚିତ ଲକ୍ଷ୍ୟ ଦେଇପାରିବୁ । ଆମେ ବିରୋଧୀଭାବେ ଏହି କାମ କରିପାରିବୁ ଏବଂ କିଛି ସମସ୍ୟା ନିଜ ଉପରକୁ ନେଇ ଏହାର ସମାଧାନ କରିବାକୁ ଚେଷ୍ଟା କରିବା ସହିତ ଏହାଦ୍ୱାରା କୌଣସି ଗଣ୍ଡଗୋଳିଆ ପରିସ୍ଥିତି ସୃଷ୍ଟି କରିବୁ ନାହିଁ । ଆମେ ଏହାକୁ କାର୍ଯ୍ୟକ୍ଷମ କରିପାରିବୁ ଯଦି ଆମେ ଏହାକୁ ଭଲ ବାଟରେ କରି ଅନ୍ୟମାନଙ୍କୁ ସହରର କ୍ଷତି କରିବାରୁ ନିବୃତ୍ତ କରିପାରିବୁ ।

ବର୍ତ୍ତମାନ ଆମକୁ ଆକ୍ରାନ୍ତ କରୁନଥିବା କେତେକ ବିଷୟରେ ଆଲୋଚନା କରିବା, ଯାହାଦ୍ୱାରା ସହରର ବିଭିନ୍ନ ସମସ୍ୟା ଗୁଡିକରୁ ଆମେ ହୁଏତ ନିବୃତ୍ତ ରହିପାରିବା । ରାସ୍ତାରେ ଆମର ଚାଲିଚଳଣ ବିଷୟରେ ଆଲୋଚନା କରାଯାଉ । ଆମେ ରାସ୍ତାକୁ ଅଳିଆ ପିଙ୍ଗିବାଠାରୁ ନିବୃତ୍ତ ରହିବା ଆବଶ୍ୟକ । ଏହା ବ୍ୟତୀତ ଚିହ୍ନିତ ସ୍ଥାନବ୍ୟତୀତ ଅନ୍ୟ କୌଣସି ସ୍ଥାନରେ ରାସ୍ତା ଏପାଖରୁ ସେପାଖକୁ ଯିବା ଉଚିତ ନୁହେଁ । ଆମେ ରାସ୍ତା ମଝିରେ ବା ପିଚୁରାସ୍ତାରେ ଠିଆ ହୋଇ ସାଙ୍ଗଙ୍କ ସହିତ ଗପିବାଠାରୁ ଯଥାସମ୍ଭବ ଦୂରେଇ ରହିବା ଆବଶ୍ୟକ ଏବଂ ସମସ୍ତଙ୍କୁ ରାସ୍ତାରେ ଯିବା ଆସିବା କରିବାର ସୁଯୋଗ ଦେବା ଉଚିତ । ଆମେ ବସଷ୍ଟାଣ୍ଡ କିମ୍ବା ଟିକେଟ ସଂଗ୍ରହ କେନ୍ଦ୍ରରୁ ସବୁବେଳେ ଧାଡିରେ ରହି ଟିକେଟ ସଂଗ୍ରହ କରିବା ଉଚିତ । ସାଇକେଲରେ ଯିବାବେଳେ ରାସ୍ତାର ଭୁଲ ପାର୍ଶ୍ୱରେ ଯିବାକୁ ସବୁବେଳେ ପରିହାର କରିବା ଉଚିତ; ରାସ୍ତା ମଝିରେ ବଙ୍କେଇ ବଙ୍କେଇ ଯିବା ଅନୁଚିତ, ଏବଂ ପାର୍ଶ୍ୱରାସ୍ତାକୁ

ଗଲାବେଳେ ହଠାତ ପଶିଯିବା ଅନୁଚିତ, ଅନ୍ଧାରରେ ଗଲାବେଳେ ସତର୍କତା ଅବଲମ୍ବନ କରିବା ଉଚିତ। ମୋଟର ସାଇକେଲ ଚଳାଳିମାନେ ଦ୍ରୁତଗତିରେ ଯିବା ଅନୁଚିତ ଏବଂ ଇଞ୍ଜିନରେ ଗୋଟିଏ ସାଇଲେନ୍ସର ଲଗାଇବା ଉଚିତ। ମଟର ସାଇକେଲ ଚଳାଳିମାନେ ଟ୍ରାଫିକ ନିୟମ ମାନିବା ସହିତ ଅତି ଦରକାର ନ ପଡିଲେ ହର୍ଣ୍ଣ ବଜାଇବା ଉଚିତ ନୁହେଁ। ଯଦି ସମସ୍ତେ ଏତିକି କାମ କରନ୍ତେ, ତେବେ ସହର ଜୀବନ କେତେ ଶୃଙ୍ଖଳିତ ହୋଇଯାଆନ୍ତା।

ଅନ୍ୟ ସର୍ବସାଧାରଣ ସ୍ଥାନ ପରି ଆମେ ଏହାକୁ ଏକ ନିୟମରେ ପରିଣତ କରିପାରିବା ଯେ ରେଳଷ୍ଟେସନ ବା ଜାହାଜଘାଟୀକୁ ଜଣେ ଯାତ୍ରୀ ସହିତ ମାତ୍ର ଜଣେ ବା ଦୁଇଜଣ ପରିଦର୍ଶନକାରୀ ଲୋକ ଯାଇପାରିବେ। ଏହି ସବୁ ସ୍ଥାନ ଗୁଡିକ ଯାତ୍ରୀମାନଙ୍କ ବ୍ୟବହାର ପାଇଁ ନିର୍ମିତ ହୋଇଛି ଏବଂ ଏହା ଅସୁନ୍ଦର ଯେ ଏହି ସବୁ ସ୍ଥାନ ଯାତ୍ରୀମାନଙ୍କ ବନ୍ଧୁଙ୍କ ଦ୍ୱାରା କୋଳାହଳମୟ ଓ ଗଣ୍ଡଗୋଳିଆ ହେବ। ଏହି ସବୁ ସ୍ଥାନରେ ଆମେ ଆମର ବଂଶ ପରମ୍ପରାଗତ ଅଭ୍ୟାସକୁ କ୍ରମେ ପରିବର୍ତ୍ତନ କରିବା ଆବଶ୍ୟକ। ଅତୀତରେ ଯେତେବେଳେ ଲୋକେ ବଳଦଗାଡିରେ ଯାତାୟତ କରୁଥିଲେ, ସେତେବେଳେ ଯାତ୍ରା ପୂର୍ବରୁ ଘର ଦୁଆର ମୁହଁରେ ବନ୍ଧୁବାନ୍ଧବ ଏକାଠି ହୋଇ ସେମାନଙ୍କୁ ଫୁଲମାଳ ପିନ୍ଧାଇ ସେମାନଙ୍କର ଯାତ୍ରାର ଶୁଭକାମନା କରୁଥିଲେ। ସେହି ଏକ ପ୍ରଥା ଏବେ ଜନଗହଳି ପୂର୍ଣ୍ଣ ଜାହାଜଘାଟୀ ଓ ରେଳଷ୍ଟେସନରେ ଚାଲୁରହି ଏକ ଅସାମାଜିକ ପ୍ରଥାରେ ପରିଣତ ହୋଇଛି। ତୁମେ ଜଣଙ୍କର ସୁଖ ସ୍ୱାଚ୍ଛନ୍ଦ୍ୟ ଉପରେ ହସ୍ତକ୍ଷେପ କରିବା ସହିତ ଶହ ଶହ ଅନ୍ୟ ଲୋକଙ୍କ କାର୍ଯ୍ୟକଳାପ ଉପରେ ବାଧା ସୃଷ୍ଟି କରୁଛ। ଅନ୍ୟ ଏକ ଦିଗରୁ ଦେଖିଲେ ତୁମେ ଜଣେ ଯାତ୍ରୀ ପାଇଁ ରହିଥିବା ସୁଖ ସୁବିଧା ଉପରେ ଅଧିକ ଚାପ ସୃଷ୍ଟି କରୁଛ। ଏହା ହୁଏତ ଏକ ରେଳବାଇ ଭୋଜନାଳୟ ହୋଇପାରେ କିମ୍ବା ଏକ ପାଇଖାନା ଘର ହୋଇପାରେ।

ଏହି ସବୁ କାର୍ଯ୍ୟପ୍ରତି ଆମେ ଅବହେଳା ପ୍ରଦର୍ଶନ କରିବା ଦ୍ୱାରା ଆମେ ଭାବୁଛୁ ଯେ ସେମାନେ ଠିକ୍ ଭାବେ କାମ କରୁଛନ୍ତି। ଗୃହର ଏକାନ୍ତତା ରକ୍ଷା ଏହାଠାରୁ ଅଧିକ ସହଜ। ସଂକ୍ଷେପରେ, ଆମର ନିଜର କାର୍ଯ୍ୟଦ୍ୱାରା ଆମେ ନିଜର ପ୍ରଦୂଷଣ ସୃଷ୍ଟି କରିଥାଉ। ସହଜ ଭାଷାରେ ଆମ ଆଖି, କାନ ଓ ନାକ ଦ୍ୱାରା ସୃଷ୍ଟି ହେଉଥିବା କାର୍ଯ୍ୟ ଘର ପାଖ ଦେଇ ଯାଉଥିବା ପଥିକକୁ ଯେ ଆକ୍ରାନ୍ତ ନ କରେ, ତାହା କିଏ କହିବ?

ଏହା ଅର୍ଥ, ଆମେ ସର୍ବସାଧାରଣ ସ୍ଥାନକୁ ମଇଳା ଫିଙ୍ଗିବା ଅନୁଚିତ, କେବଳ ଏହା ଡଷ୍ଟବିନ୍‌ରେ ରଖାଯିବା ଉଚିତ। ଆମର ଘରୋଇ କଥାବାର୍ତ୍ତା ମଧ୍ୟ ଘର ବାହାରକୁ ଯିବା ଉଚିତ ନୁହେଁ। ଏହା ହୁଏତ ଏକ ପିଲାର ପାଟି ହୋଇପାରେ କିମ୍ବା ରେଡିଓରୁ ସୃଷ୍ଟି ହେଉଥିବା ଶବ୍ଦ ହୋଇପାରେ ବା ପିଲା କାନ୍ଦିବା ଶବ୍ଦ ହୋଇପାର, ଯାହାକି ଆମ ଘର ବାହାରକୁ ଚାଲିଯାଇପାରେ ଏବଂ ଆମେ ଏହା ମଧ୍ୟ ଦେଖିବା ଉଚିତ ଯେ ରାସ୍ତା ଦ୍ୱାରା ଆମ ଘରର ଦୃଶ୍ୟ କୌଣସି ପ୍ରକାରରେ ଆକ୍ରାନ୍ତ ହେବା ଉଚିତ ନୁହେଁ। ଏକ ଅସୁନ୍ଦର ରଙ୍ଗ ଦିଆଯାଇଥିବା ଯେ କୌଣସି ଘର ଏକ ଅସୁନ୍ଦର ଓ ମଇଳା ବା କୁତ୍ସିତ ଘର ରୂପେ ବିବେଚିତ ହୋଇଥାଏ। ଜୋର ଭାବରେ ଏହାକୁ ଧୋଇଦେବା ଦ୍ୱାରା ଏହା ଦେହରେ ଦିଆଯାଇଥିବା ସମସ୍ତ ରଙ୍ଗ ନଷ୍ଟ ହୋଇଯାଏ। ମାଲିକାନା ଓ ପ୍ରଭାବ ବ୍ୟତୀତ ଜଣେ ଲୋକ ଏକ ସହରକୁ କିପରି ଅଧିକ ଭାବେ ବାସୋପଯୋଗୀ କରିପାରିବ? ଆମେ କର୍ତ୍ତୃପକ୍ଷଙ୍କୁ ଜଣାଇଦେବା ଉଚିତ ଯେ ଆମର ମଧ୍ୟ ସହରକୁ ସଫାସୁତରା ଓ ପରିଷ୍କାର ପରିଚ୍ଛନ୍ନ ପରିବେଶ ମଧ୍ୟରେ ରଖିବାର ଦାୟିତ୍ୱ ରହିଛି। ଆମେ ପ୍ରକୃତରେ କର୍ତ୍ତୃପକ୍ଷଙ୍କଠାରେ ଅଭିଯୋଗ କରି ମଧ୍ୟ ଏକ ଅଞ୍ଚଳକୁ ବାସୋପଯୋଗୀ କରିପାରିବା। ଭାରତ ସମେତ ଅଧିକାଂଶ ଦେଶର ସହରରେ ଶବ୍ଦ ପ୍ରତିରୋଧକ ଓ ପ୍ରଦୂଷଣ ପ୍ରତିରୋଧକ ପାଇଁ କେତେକ ନିୟମ ରହିଛି। ତେଣୁ ଯେତେବେଳେ ତୁମ ପଡୋଶୀ ଗୋଟିଏ ଲାଉଡସ୍ପିକର ବଜାଉଛନ୍ତି, ତୁମେ ସ୍ଥାନୀୟ ପୁଲିସ ଷ୍ଟେସନକୁ ଟେଲିଫୋନ୍ କରି ଏହାକୁ ବନ୍ଦ କରିବାକୁ ଅନୁରୋଧ କରିପାରିବ। ଯଦି ଏହା ବନ୍ଦ ନ ହୁଏ, ତେବେ ତୁମେ ହୁଏତ ଆଉଥରେ ଟେଲିଫୋନ କରିପାର, ଯେପର୍ଯ୍ୟନ୍ତ ଏହା ନ ହୋଇଛି। ତୁମେ ମଧ୍ୟ ଲରୀ ଓ ବସ ଇଞ୍ଜିନରୁ ବାହାରୁଥିବା କଳାଧୂଆଁ ବିରୋଧରେ ଅଭିଯୋଗ କରିପାର, ଉଚ୍ଚ ଶବ୍ଦ, ମଇଳା, ବୃକ୍ଷର କ୍ଷତି କିମ୍ବା ଅନ୍ୟ କୌଣସି ସହର ଜୀବନକୁ ଦୁର୍ବିସହ କରୁଥିବା ଜିନିଷ ବିଷୟରେ ତୁମେ ଅଭିଯୋଗ କରିପାର। ଯାହା ଭୁଲ ସେ ବିଷୟରେ ତୁମେ ନିଶ୍ଚିତ ଭାବେ ପ୍ରତିରୋଧ କରିବା ଉଚିତ, ଏହା ତୁମର ବା ଅନ୍ୟ କାହାର କ୍ଷତିସାଧନ କରୁଥାଉ ନା କାହିଁକି।

ଏହି ସବୁ ଅବସ୍ଥାରେ ଅଭିଯୋଗ କରିବା ଏକ ପରଂତୋଷ ନୁହେଁ, ବରଂ ଏକ କର୍ତ୍ତବ୍ୟ। ଯେପର୍ଯ୍ୟନ୍ତ ଲୋକେ ସେମାନଙ୍କର ଅସନ୍ତୋଷ ବିଷୟରେ ନିଜର ପ୍ରତିକ୍ରିୟା ପ୍ରକାଶ କରିନାହାଁନ୍ତି, ସେପର୍ଯ୍ୟନ୍ତ କର୍ତ୍ତୃପକ୍ଷଙ୍କୁ ଦାୟୀ

କରାଯାଇପାରିବ ନାହିଁ ଏବଂ କର୍ତ୍ତୃପକ୍ଷ ଭାବିବେ ଯେ ଲୋକେ ପାଉଥିବା ସୁବିଧା ସୁଯୋଗରେ ସନ୍ତୁଷ୍ଟ। ଅଭିଯୋଗ ହୁଏତ ଟେଲିଫୋନ୍, ଚିଠି କିମ୍ବା ନିଜେ ଯାଇ ସ୍ଥାନୀୟ ସମ୍ବାଦପତ୍ରରେ ପ୍ରକାଶ କରି କରାଯାଇପାରେ, ମାତ୍ର ଏସବୁ ସବୁବେଳେ ଦରକାର ଏବଂ ଅନେକ ସମୟରେ କାର୍ଯ୍ୟକ୍ଷମ ହୋଇଥାଏ। ଆମେ ମଧ୍ୟ ଏହିପରି ଛୋଟ ଛୋଟ ସ୍ୱେଚ୍ଛାସେବାମୂଳକ କାର୍ଯ୍ୟ କରିବା ଉଚିତ, ଯାହା କି କର୍ମଚାରୀମାନଙ୍କୁ ଅବସ୍ଥାର ଉନ୍ନତି ଦିଗରେ ସାହାଯ୍ୟ କରିପାରିବ। ଶେଷ ଉପାୟ ହେଉଛି, ସ୍ଥାନୀୟ ଅଫିସର ମାନଙ୍କର କାର୍ଯ୍ୟ। ଏମାନଙ୍କର ସହର ଅବସ୍ଥାର ଉନ୍ନତି ପାଇଁ ଦାୟିତ୍ୱ ରହିଛି ଏବଂ ସେମାନେ ଯତ୍ନର ସହ ସିଧାସଳଖ ଭାବେ ସ୍ଥାନୀୟ ଲୋକଙ୍କ ସେବା ପାଇଁ କାର୍ଯ୍ୟ କରିପାରିବେ।

Printed at I M H Press (P) Ltd., Okhla Industrial Area, Phase I, New Delhi - 20

ଏହି ପୁସ୍ତକରେ ଲେଖିକା ଆମ ପରିବେଶ ଅପରିଣାମଦର୍ଶୀ ଭାବେ କିପରି କ୍ଷତିଗ୍ରସ୍ତ ହେଉଛି, ସେ ସମ୍ପର୍କରେ ଆଲୋକପାତ କରିଛନ୍ତି। ପ୍ରାକୃତିକ ଉପାଦାନ ମାନଙ୍କର ପାରସ୍ପରିକ ସମ୍ବନ୍ଧର କାରଣ ଓ ଫଳାଫଳ ସମ୍ପର୍କରେ ଆଲୋଚନା କରିବା ସହ ପର୍ବତ, ଜଙ୍ଗଲ, ନଦୀ, ସମୁଦ୍ର, ଗ୍ରାମ ଓ ସହରର ଅବସ୍ଥା ଅନୁଧାନ ପୂର୍ବକ ସେ ସଫଳ ଭାବେ ଭାରତର ପରିବେଶ ସଂରକ୍ଷଣର ଔଚିତ୍ୟ ଏବଂ ପରିବେଶ ନଷ୍ଟ ଜନିତ କୁଫଳ ସମ୍ପର୍କରେ ଆମକୁ ସଚେତନ କରାଇ ଦେଇଛନ୍ତି।

ଲଈକ ଫତେହଲୀ 'କ୍ୱେଷ୍ଟ' ପତ୍ରିକାର ସାହିତ୍ୟ ବିଭାଗୀୟ ସମ୍ପାଦିକା ଦୀର୍ଘ କୋଡ଼ିଏ ବର୍ଷ ଧରି ରହିଥିଲେ (1956-76)। ସୁନ୍ଦର ପ୍ରାକୃତିକ ଶୋଭାର ଚିତ୍ର ଅଙ୍କନ ତାଙ୍କର ରୁଚି ଏବଂ ସେ ଉଦ୍ୟାନ ଏବଂ ଉଦ୍ୟାନ ତତ୍ତ୍ୱ ସମ୍ପର୍କରେ ପ୍ରଚୁର ଲେଖିଛନ୍ତି। ତାଙ୍କର ପ୍ରମୁଖ କୃତି ମାନଙ୍କ ମଧ୍ୟରେ ନ୍ୟାସନାଲ ବୁକ୍ ଟ୍ରଷ୍ଟ ପ୍ରକାଶିତ ଦୁଇଟି ପୁସ୍ତକ, 'ଗାର୍ଡ଼େନ୍ସ' ଏବଂ ଡ: ସଲୀମ ଅଲୀଙ୍କ ସହ ଯୁଗ୍ମଭାବେ ଲିଖିତ 'କମନ୍ ବାର୍ଡ଼ସ' ଅନ୍ୟତମ।



ଟ 34.00

ନ୍ୟାସନାଲ୍ ବୁକ୍ ଟ୍ରଷ୍ଟ, ଇଣ୍ଡିଆ